ଅନନ୍ୟ ପ୍ରକାଶକ ବିଜୁ ପଟ୍ଟନାୟକ ଜୟନ୍ତୀ କମିଟି, ନିମ ସାହି, କଟକ -୧ ମୁଦ୍ରକ ଶ୍ରୀ ଜଗନ୍ନାଥ ଲାମିନେଟର, ବାଦାମ ବାଡ଼ି, କଟକ-୧୨ ପ୍ରକାଶନ କାଳ ୧୯୯୦ ମୂଲ୍ୟ:ଟ୬୫.୦୦

ANANYA : PUBLISHED BY BIJU PATNAIK JAYANTI COMMITTEE, NIMA SAHI, CUTTACK-1 : PRINTED BY SRI JAGANNATH LAMINATOR, BADAMBADI, CUTTACK-12 EDITION-1990 : PRICE : Rs.65.00

'ଭୂମିପୁତ୍ର'ଙ୍କ
ସୁଯୋଗ୍ୟ ପିତା
ସ୍ୱର୍ଗୀୟ ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କ
ସ୍ମୃତିରେ .........

ସଂକଳନ ସଂପର୍କରେ ପଦେ :

ଆଜି ଏକ ଭିନ୍ନ ପରିସ୍ଥିତି । ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକଙ୍କ ସଂପର୍କରେ ତାଙ୍କ ଜୟନ୍ତୀର ଅବସରରେ ତାଙ୍କର ସମସାମୟିକ ତଥା ନିକଟତମ ବଂଧୁ ମାନଙ୍କ ଠାରୁ ଲେଖାଟିଏମାନ ସଂଗ୍ରହ କରି , ଏକ ସ୍ମରଣିକା ପ୍ରକାଶ କରିବା ଏବଂ ସେ ସମସ୍ତ ସ୍ମରଣିକାରେ ପ୍ରକାଶିତ ଲେଖାମାନଙ୍କ ଭିତରୁ ବିଭିନ୍ନ ଦୃଷ୍ଟି କୋଣରୁ ତଥା ତାଙ୍କ ବ୍ୟକ୍ତିତ୍ୱର ବିଭିନ୍ନ ବିଭାବ ଉପରେ ଆଧାରିତ ଲେଖା କେତେକକୁ ଏକତ୍ରିତ କରି , ଆଉ ଏକ ସଂକଳନ ପ୍ରକାଶ କରିବାର ସମୟ ଓ ତାର ବ୍ୟବଧାନ । ଆମେ ଆପାତତଃ ଇତିହାସ ଗଢ଼ାର ଭିତ୍ତିଭୂମିର ଦ୍ୱିତୀୟ ପାହାଚରେ ଛିଡା ହେବାର ଶକ୍ତି ଏହା ଭିତରେ ସଂଚୟ କରି ସାରିଛୁ ।

ଏ କଥା କହିବାର ତାତ୍ପର୍ଯ୍ୟ ଏହି ଯେ ଶ୍ରୀଯୁକ୍ତ ପଟ୍ଟନାୟକଙ୍କ ପରି ଜଣେ କରିତ୍ କର୍ମା ବିଶ୍ୱ ବିଖ୍ୟାତ ଓଡିଆ ପୁଅର ଜନ୍ମତିଥି ପାଳନ ପାଇଁ ବହୁମତ ସେ ଦିନ ପ୍ରକାଶ ପାଇ ଆଜି ଏକ ଦାବିରେ ତାହା ପରିଣତ ହୋଇଥିଲେ ହେଁ, ୧୯୮୭ ମସିହାର ପ୍ରଥମ ସ୍ମରଣିକା ପ୍ରକାଶ ସମୟରେ , ସ୍ମରଣିକା ସଂକଳନ ନେଇ, ଆମ ଭିତରେ ସାମାନ୍ୟ ଗୁଂଜରଣ ସୃଷ୍ଟି ହୋଇଥିଲା । କୃତିତ୍ୱ ସଂପନ୍ନ ମଣିଷର ବିଭିନ୍ନ ବିଭାଗର ଅନୁଶୀଳନ ନ କରି, କେବଳ ତାର କୃତିତ୍ୱ ସମସ୍ତଙ୍କୁ ଲିପିବଦ୍ଧ କରି ଭବିଷ୍ୟତରେ ତାର ଏକ ମୂଲ୍ୟାୟନ ପାଇଁ ଭିତ୍ତିଭୂମି ଗଢ଼ିବାର ଅଙ୍ଗୀକାର ମୋତେ ତଥା ଜୟନ୍ତୀ କମିଟିର ସମସ୍ତ ସଭ୍ୟଙ୍କୁ ଅନୁପ୍ରାଣିତ କରିଥିଲା । ସେଥିପାଇଁ ପ୍ରଥମ ସ୍ମରଣିକା ଗ୍ରନ୍ଥରେ ମୁଁ ତା'ର ସୂଚନା ଦେଇଥିଲି । ସେଥିପାଇଁ ଓ ବ୍ୟକ୍ତିତ୍ୱର ସମ୍ମାନକୁ ଆଖି ଆଗରେ ରଖି ,ମୋର ବଂଧୁ ମାନଙ୍କ ସହାୟତା ତଥା ସହାନୁଭୂତି ଯୋଗୁଁ ବହୁ ପ୍ରଲୋଭନ ଓ ଆକାଂକ୍ଷାଂକୁ ଏଡାଇ ଏକ ନିରପେକ୍ଷ ସର୍ବସମ୍ମତ ଇତିହାସ ସୃଷ୍ଟି କରିବା ନିମିତ୍ତ , ଲେଖାମାନ ବିଚାରକୁ ନେଇ ପ୍ରକାଶ କରିବାର ସୁଯୋଗ ପାଇଛୁ ଏବଂ ସେ ସମସ୍ତ ଭିତରୁ ବହୁ ଆଲୋଚନା ଓ ତର୍ଜମା ପରେ ଆଉ କେତେକକୁ ଏକତ୍ରିତ କରି ଆଉ ଏକ ସଂକଳନ ପ୍ରକାଶ କରିବାର ସୁଯୋଗ ଲାଭ କରୁଛୁ । ସେଥିପାଇଁ ମଧ୍ୟ ୧୯୮୭ ବର୍ଷ ପାରାଦ୍ୱୀପରୁ ପ୍ରକାଶିତ ଅନ୍ୟ ଏକ ସ୍ମରଣିକା ଗ୍ରନ୍ଥରୁ କେତେକ ଲେଖା

ଆମେ ନିର୍ବାଚନ କରି ଏଥିରେ ପ୍ରକାଶ କରିବାକୁ ଉଚିତ୍ ମନେ କରୁଛୁ ।

ଗତ ଜନ୍ମ ଜୟନ୍ତୀ ତିଥିରେ ନିର୍ବାଚନର ଜଂଜାଳ ଭିତରେ ବ୍ୟସ୍ତ ରହିବାରୁ ଓ ଆମକୁ ବିଶେଷ ଭାବରେ ସହାୟତା ଦେଉଥିବା ବିଶିଷ୍ଟ ବନ୍ଧୁ ମାନଙ୍କ ଭିତରୁ ସର୍ବଶ୍ରୀ ମୁସ୍ତାଫିଜ୍ ଅହମଦ୍ , ରାଜେନ୍ଦ୍ର ସିଂ, ଡ଼ାଃ ଦାମୋଦର ରାଉତ ନିର୍ବାଚନ ପ୍ରତିଦ୍ୱନ୍ଦିତାରେ ଭାଗ ନେଇଥିବାରୁ ସମସ୍ତ କାର୍ଯ୍ୟକ୍ରମ ସହ ଜୟନ୍ତୀ ଉତ୍ସବ ପାଳନ କରିବାର ସୌଭାଗ୍ୟ ଆମେ ଲାଭ କରିଥିଲେ ହେଁ , ସ୍ମରଣିକା ପ୍ରକାଶ ନକରି ପାରି ଥିବାରୁ ବହୁ ଆପତ୍ତି ଆମର ଅଦ୍ୟାବଧି ହସ୍ତଗତ ହେଉଛି । ବିଶେଷ କରି ସେଥିପାଇଁ ଆଜିର ଏଇ ସଂକଳନର ସୃଷ୍ଟି ।

ଏତଦ୍‌ବ୍ୟତୀତ କିଛି ଅର୍ଥ ସଂଗ୍ରହ କରି ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକଙ୍କ ନାମରେ ଏକ ଟ୍ରଷ୍ଟ ଗଢ଼ି , ଆଗାମୀ ପିଢ଼ୀର ମେଧାବୀ ଓ ଗରିବ ଛାତ୍ର-ଛାତ୍ରୀଙ୍କ ଜ୍ଞାନାର୍ଜନରେ ସମ୍ୟକ୍ ସହାୟତା ଦେବାର ପରିକଳ୍ପନା କାର୍ଯ୍ୟକାରୀ କରି ନ ପାରିବାରୁ ଓ ସ୍ମରଣିକାଟିଏ କେବଳ ପ୍ରକାଶ କରି ଆମେ ବିଜୁପଟ୍ଟନାୟକଙ୍କୁ ସମସ୍ତ ଓଡ଼ିଆ ନିକଟରେ ପହଞ୍ଚାଇ ପାରି ନ ଥିବାରୁ, ଉକ୍ତ ସଂକଳନ ଦ୍ୱାରା ଦୁଇଟି କାର୍ଯ୍ୟ ସାଧନ କରିବାର ଉପାୟ ଚିନ୍ତାକରି, ଏ ପ୍ରକାର ଏକ ଯୋଜନାରେ ଅଗ୍ରସର ହେବାକୁ ଉଚିତ୍ ମନେ କଲୁ ।

ଆର୍ଥିକ ଅସ୍ୱଚ୍ଛଳତା ସତ୍ତ୍ୱେ ବି ଏ କାର୍ଯ୍ୟକ୍ରମକୁ ଆଗେଇ ନେବାରେ ଆଉ ଯେଉଁ ବନ୍ଧୁମାନେ ସହାୟତା ଦେଇଛନ୍ତି ଓ ଦେଉଛନ୍ତି, ସେମାନଙ୍କ ମଧ୍ୟରୁ ସତ୍ୟବ୍ରତ ପ୍ରେସର ସତ୍ୱାଧିକାରୀ ଶ୍ରୀ କୃଷ୍ଣ ଚନ୍ଦ୍ର ନାୟକ ଏବଂ ଅଧ୍ୟାପକ ଡଃ.ଗିରୀଶ ଚନ୍ଦ୍ର ମିଶ୍ର ତଥା ସଂକଳନର ପ୍ରଚ୍ଛଦପଟ ଶିଳ୍ପୀ ଶ୍ରୀ ଅସୀତ୍ ମୁଖାର୍ଜୀଙ୍କ ନିକଟରେ ଆମେ ବିଶେଷ ଭାବରେ କୃତଜ୍ଞ ।

ଆମର ଏଇ ସାମାନ୍ୟତମ ତଥା କ୍ଷୁଦ୍ରତମ ପ୍ରଚେଷ୍ଟା ଯଦି ବୃହତ ଇତିହାସ ରଚନାରେ ସହାୟ ହେବ ଓ ପ୍ରତ୍ୟେକ ଓଡ଼ିଆ ମଧ୍ୟ ଏହାର ଉପାଦେୟତା ଉପଲବ୍ଧି କରିବେ, ଆମର ଶ୍ରମ ସାର୍ଥକ ହେବ ବୋଲି ଆଶା ରଖୁଛୁ ।

ଗୁରୁ ମହାନ୍ତି
ସମ୍ପାଦକ

# ସୂଚୀପତ୍ର



Chief Minister Sri Biju Patnaik alongwith tribal students of Sundargarh District, in 1961



A moment of deep interaction : Sri Biju Patnaik with Mr. V.P.Singh, Dr. Radhanath Rath and Sri Mustafeez Ahmed, M.L.A., Cuttack.

# ଝଡ଼ଝଞ୍ଜାର..............ଅବଦମିତ

## ସୁରେନ୍ଦ୍ର ମହାନ୍ତି

ସ୍ୱାଧୀନତା ପ୍ରାପ୍ତିର ପରବର୍ତ୍ତୀ କାଳରେ ବିଜୁବାବୁ ଜାତୀୟ ତଥା ପ୍ରାଦେଶିକ ରାଜନୀତିରେ ନିଜକୁ ସୁ-ପ୍ରତିଷ୍ଠିତ କରାଇ ପାରିଛନ୍ତି । ଯେଉଁମାନେ ଆରମ୍ଭରୁ ତାଙ୍କର ରାଜନୈତିକ ଜୀବନ ପ୍ରତି ଦୃଷ୍ଟି ରଖିଛନ୍ତି, ସେମାନେ ଲକ୍ଷ୍ୟ କରିଥିବେ, ବହୁ ଉତ୍‌ଥାନ ଓ ପତନ, ଜୟ ଓ ପରାଜୟ, ସୁଦିନ ଓ ଦୁର୍ଦ୍ଦିନ ମଧ୍ୟରେ ସେ ଅବଦମିତ ଓ ଅଦମ୍ୟ ରହି ଆସିଅଛନ୍ତି। ମୋର ମନେ ପଡୁଛି, ବୋଧହୁଏ, ଷଷ୍ଠ ଦଶକର ଶେଷ ଆଡ଼କୁ ସ୍ୱର୍ଗତ ଚକ୍ରବର୍ତ୍ତୀ ରାଜଗୋପାଳଚାରୀ ବିଜୁବାବୁଙ୍କୁ ଗ୍ରୀକ୍ ଉପକଥାର ଫିଙ୍କସ୍ ସହିତ ତୁଳନା କରିଥିଲେ । ଫିଙ୍କସ୍ ଯେପରି ଧ୍ୱଂସର ଭସ୍ମଶଯ୍ୟା ଭିତରୁ ଉଠି ପୁଣି ଆକାଶକୁ ଲମ୍ଫ ଦେଇଥାଏ, ବିଜୁବାବୁ ସେହିପରି ବହୁ ପରାଜୟର ଧୂଳିଶଯ୍ୟାରୁ ନବଜନ୍ମ ଲାଭକରି ପୁଣି ଉତ୍‌ଥାନର ଚୂଡ଼ା ଆଡ଼େ ଡ଼େଣା ମେଲିଥାଆନ୍ତି ! ତାଙ୍କ କଥା ମନରେ ଉଠିଲେ, ଗୋଟିଏ ପ୍ରତୀକ ଚିତ୍ର ମୋ ଆଖି ଆଗରେ ଭାସି ଉଠେ-ଯୁଦ୍ଧ ସୀମାନ୍ତର ଗୁଳି ଗୁଳାରେ ଏଠି ସେଠି ଚେପା ହୋଇଯାଇଥିବା ଧୂଳି ଧୂସରିତ ଗୋଟିଏ ଜିପ୍ ! ଅନେକ ଜଖମ୍‌ର ଚିହ୍ନ ! ସେ ଜିପ୍ ଏସବୁକୁ ଅଗ୍ରାହ୍ୟ କରି ତଥାପି ଚାଲିଛି ! ସେ ଅକ୍ଲାନ୍ତ । ଅବାରିତ । ବସ୍ତୁତଃ ତାଙ୍କ ବ୍ୟକ୍ତିତ୍ୱର ଏହି ଦିଗଟି ମୋତେ ଖୁବ୍ ଆକୃଷ୍ଟ କରିଛି ।

ରାଜନୀତିରେ ଅନେକ ଜୟଧର୍ମକୁ ଏବେ ରାଜଧର୍ମ ରୂପେ ବିଚାର କରୁଅଛନ୍ତି । କ୍ଷମତା ରାଜନୀତିରେ ଜିତାପଟ ମାରିନେବା ପାଇଁ, ଯେ କୌଣସି ମୂଲ୍ୟ ଦେବା ପାଇଁ ସେମାନଙ୍କର ଆପତ୍ତି ନାହିଁ । କିନ୍ତୁ ବିଜୁବାବୁ ଏକଦା

ସେପରି ନଥିଲେ । ଜୟଧର୍ମ ତାଙ୍କ ପକ୍ଷରେ ସର୍ବଦା ରାଜଧର୍ମ ନଥିଲା । ମନେ ପଡୁଛି, ଚତୁର୍ଥ ସାଧାରଣ ନିର୍ବାଚନରେ, ଲୋକ ସଭାପାଇଁ ମୁଁ ପୁଣି କେନ୍ଦ୍ରାପଡ଼ା ନିର୍ବାଚନ ମଣ୍ଡଳୀରୁ ଠିଆ ହେବି ବୋଲି ସ୍ଥିର କରିବା ପରେ, ମୋର ଜିତିବାକୁ ସହଜ କରିବା ପାଇଁ ବିଜୁବାବୁଙ୍କୁ ପାଟକୁରା ବିଧାନସଭା ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ଟିକଟରେ ପ୍ରତିଦ୍ୱନ୍ଦିତା କରିବାପାଇଁ ଅନୁରୋଧ କରିଥିଲି । ସେତେବେଳେ ସେ ପାଟକୁରାରୁ ଠିଆ ହେବେ ବୋଲି ମୋତେ ପ୍ରତିଶ୍ରୁତି ଦେଇଥିଲେ । କିନ୍ତୁ ନିର୍ବାଚନର ସମୟ ପାଖେଇ ଆସିବା ମାତ୍ରେ ଗଞ୍ଜାମର ଭଂଞ୍ଜନଗର ଓ ଅନ୍ୟ କେତେକ ସ୍ଥାନରୁ ପ୍ରତିଦ୍ୱନ୍ଦିତା କରିବା ପାଇଁ ସେସବୁ ଅଞ୍ଚଳର କର୍ମୀମାନେ ତାଙ୍କୁ ଅନୁରୋଧ ଜଣାଇଥିଲେ । ଗଞ୍ଜାମ ଜିଲ୍ଲାରେ ବିଜୁବାବୁ ଜନ୍ମଗ୍ରହଣ କରିଥିବାରୁ, ତାଙ୍କୁ ଭଞ୍ଜନଗରରୁ ଠିଆହେବାପାଇଁ ଗଞ୍ଜାମର କଂଗ୍ରେସ କର୍ମୀମାନେ ପ୍ରବଳ ଜିଦ୍ ଧରିଲେ । ସେତେବେଳେ ପାଟକୁରାରୁ ନିର୍ବାଚିତ କଂଗ୍ରେସ ସଭ୍ୟ ଥିଲେ, ବର୍ଷିୟାନ୍ ପଣ୍ଡିତ ଲୋକନାଥ ମିଶ୍ର । ସେ ପୁଣି ସେତେବେଳେ ଥିଲେ ବିଧାନ ସଭାର ଉପ-ବାଚସ୍ପତି। ବିଜୁବାବୁ କ୍ରମେ ·ଦେଖିଲେ, ପରିସ୍ଥିତି ସହଜ ନୁହେଁ । ପାଟକୁରା ଆସନ ଛାଡ଼ିବା ପାଇଁ ଲୋକନାଥ ବାବୁଙ୍କର ଅନିଚ୍ଛା । ଏହା ଘେନି ପାଟକୁରାରେ କଂଗ୍ରେସ କର୍ମୀମାନଙ୍କ ମଧ୍ୟରେ ଅନୈକ୍ୟ । ମୁଁ କୌଣସି ପ୍ରକାରରେ ପଣ୍ଡିତ ଲୋକନାଥ ମିଶ୍ରଙ୍କୁ ରାଜନଗର ନିର୍ବାଚନ ମଣ୍ଡଳୀରୁ ଠିଆହେବାପାଇଁ ପ୍ରସ୍ତାବ ଦେଲି । ମାତ୍ର ଶେଷ ମୁହୂର୍ତ୍ତରେ ସେ ହଠାତ୍ ମନା କରିଦେଲେ । ରାଜନଗରରୁ ଭଗବାନ ମିଶ୍ର ପ୍ରାର୍ଥୀ ହେଲେ । ସେ ପରିସ୍ଥିତିରେ, ପୁଣି ୧୯୬୭ ସାଲରେ କଂଗ୍ରେସ-ହଟାଓ ହାୱାରେ ପାଟକୁରାରୁ ବିଜୁବାବୁ ଜିତିପାରିବେ ବୋଲି ତାଙ୍କ ମନରେ ସନ୍ଦେହ ଜାତ ହେଲା । ସେ ନିର୍ବାଚନରେ ଜିତିଲେ ଅକ୍ଳେଶରେ ମୁଖ୍ୟମନ୍ତ୍ରୀ ହୋଇପାରନ୍ତି ।କିନ୍ତୁ ମୁଁ କାହିଁକି କେନ୍ଦ୍ରାପଡ଼ା ଲୋକସଭା ଆସନରୁ ଠିଆହେଉଛି ବୋଲି ବୁଝିବା ପରେ, ସେ ପାଟକୁରାରୁ ଠିଆ ହେବେ ବୋଲି ମୋତେ ଯେଉଁ ପ୍ରତିଶ୍ରୁତି ଦେଇଥିଲେ, ସେଥିରୁ ଆଉ ଓହରିଲେ ନାହିଁ । କିନ୍ତୁ ଭଞ୍ଜନଗର ନିର୍ବାଚନ ମଣ୍ଡଳୀରେ ତାଙ୍କପାଇଁ ଯେଉଁ ଆବେଗିକ ସମର୍ଥନ

ରହିଥିଲା, ସେଥିରେ ବରଂ ଭଞ୍ଜନଗରରୁ ତାଙ୍କର ଜିତିବାର ଆଶା ଉଜ୍ଜ୍ୱଳତର ଥିଲା। ମୁଁ ନିଶ୍ଚିତ ଭାବରେ କହିପାରେ, ଜୟଲାଭ ସନ୍ଦେହ ଜନକବୋଲି ଶେଷ ମୁହୂର୍ତ୍ତରେ ଜାଣିଥିଲେ ସୁଦ୍ଧା, ସେ ନିଜ ସିଦ୍ଧାନ୍ତରୁ ଟଳି ଯାଇ ନଥିଲେ। ମୁଁ ଏହିପରି ଚରିତ୍ରମାନଙ୍କୁ ଶ୍ରଦ୍ଧା ଓ ସମ୍ମାନ କରେ । ଜୟ ପରାଜୟ ସମସ୍ତଙ୍କ ଆଗରେ ଅତି ମାମୁଲି କଥା । ଆଜି କେଜାଣି ଜୟଧର୍ମ, ରାଜଧର୍ମ ହେବଣି; କିନ୍ତୁ ସେଦିନ ପ୍ରଭାତ ସବୁଥିଲା ନବୀନ ଓ ଦୁଃସାହସୀ ।

ବିଜୁବାବୁଙ୍କର କଳିଙ୍ଗ ଫାଉଣ୍ଡେସନ୍-ଟ୍ରଷ୍ଟଦ୍ୱାରା ପ୍ରକାଶିତ ଦୈନିକ 'କଳିଙ୍ଗ'ରେ ୧୯୬୨ ସାଲରୁ ୧୯୭୧ ସାଲ ପର୍ଯ୍ୟନ୍ତ ଦୀର୍ଘ ନଅ ବର୍ଷ କାଳ ମୁଁ ସମ୍ପାଦକ ରହିଥିଲି ।ଓଡ଼ିଶାରେ ଖବର କାଗଜ ମାଲିକ ମାନେ ଅନେକ ସମୟରେ, ନିଜ ସ୍ୱାର୍ଥ ଦୃଷ୍ଟିରୁ ସଂପାଦକ ମାନଙ୍କୁ ପ୍ରଚ୍ଛନ୍ନ ଭାବରେ ଅଥବା ପ୍ରକାଶ୍ୟରେ କେତେକ ଇଙ୍ଗିତ ବା ପରାମର୍ଶ ଦେଇଥାଆନ୍ତି । କିନ୍ତୁ ଏହି ନଅ ବର୍ଷ ମଧ୍ୟରେ ତାଙ୍କ ରାଜନୈତିକ ସ୍ୱାର୍ଥ ଉପରେ ଆଞ୍ଚ ଆଣିବା ପରି କେତେକ ବିଷୟ 'କଳିଙ୍ଗ'ରେ ବେଳେ ବେଳେ ପ୍ରକାଶ ପାଇଥିଲେହେଁ, ଦିନକ ପାଇଁ ସେ ପ୍ରକାଶ୍ୟରେ ଅଥବା ପ୍ରଚ୍ଛନ୍ନରେ ଏ ସମ୍ପର୍କରେ ଅସନ୍ତୋଷ ପ୍ରକାଶ କରି ନଥିଲେ ।

୧୯୬୪ ସାଲରେ ପ୍ରବଳ ଛାତ୍ର ଆନ୍ଦୋଳନ ରେଭେନ୍‌ସା କଲେଜରୁ ଆରମ୍ଭ ହୋଇ ଦାବାଗ୍ନି ପରି ସବୁଆଡ଼େ ବ୍ୟାପିଗଲା । ଅନ୍ୟ ଦୈନିକ ସମ୍ବାଦ ପତ୍ରମାନେ ଅତିରଞ୍ଜିତ ସମ୍ବାଦ ଛାପି, ଛାତ୍ରମାନଙ୍କୁ ବେଶ୍ ଉସ୍‌କାଉ ଥାଆନ୍ତି । ମୁଁ ଅନୁସନ୍ଧାନ କରି ବୁଝିଲି, ଷ୍ଟେସନ୍ ବଜାର ଅଞ୍ଚଳରେ ଜଣେ ଛାତ୍ରର ଗୋଟିଏ ଟ୍ରାନ୍‌ଜିଷ୍ଟର୍ ରେଡ଼ିଓର ମରାମତି ଚାର୍ଜ ମାତ୍ର ବାରଅଣା ପଇସା ଘେନି, ଦୋକାନୀ ଓ ଛାତ୍ରଙ୍କ ମଧ୍ୟରେ ବଚସା ଭିତରୁ ଏ ଆନ୍ଦୋଳନର ସୂତ୍ରପାତ ହୋଇଛି । ଏହା ମୁଁ ବୁଝିଲା ପରେ, ଛାତ୍ର ଆନ୍ଦୋଳନ ବିରୁଦ୍ଧରେ 'କଳିଙ୍ଗ'ରେ ଲେଖାଲେଖି କରିବା ପାଇଁ ଆରମ୍ଭ କରିଦେଲି । କଟକର ଛାତ୍ରନେତାମାନେ ମୋତେ ଟେଲିଫୋନ୍‌ରେ ଗାଳି ଗୁଲଜ ଦେଲେ, ଧମକ୍ ବି ଦେଲେ । ମାତ୍ର ଫଳ କିଛି ହେଲାନାହିଁ । ମୋତେ ନୀରବ କରି

ନପାରିବାରୁ ଅବଶେଷରେ ଖବରକାଗଜକୁ ନୀରବ କରିଦେବା ପାଇଁ ସେମାନେ ଚେଷ୍ଟିତ ହେଲେ । ପ୍ରତି ସନ୍ଧ୍ୟାରେ ହକର୍ ମାନେ ବଣ୍ଡଲ୍ ବଣ୍ଡଲ୍ କାଗଜ ଧରି ରାସ୍ତାକୁ ବାହାରିବା ମାତ୍ରେ ଛାତ୍ରମାନେ ସେ ବଣ୍ଡଲ୍ ସବୁ ସେମାନଙ୍କ ଠାରୁ ଛଡ଼ାଇ ନେଇ ବିଚ୍ ରାସ୍ତା ଉପରେ ପୋଡ଼ିଲେ । ଇଏ ମାସାଧିକ କାଳ ଚାଲିଲା । ଛାତ୍ର ଆନ୍ଦୋଳନ ବିରୁଦ୍ଧରେ ଲେଖା ପ୍ରକାଶ ପାଇବା ଦ୍ୱାରା କଂଗେସ ସରକାର ପରୋକ୍ଷରେ ଉପକୃତ ହେଉଥିଲେ ହେଁ ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ବିରେନ୍ ମିତ୍ର ମୋତେ କୌଣସି ପ୍ରକାର ଅଭୟ ଦେଇ ପାରିଲେ ନାହିଁ । ମୋତେ କୁହାଗଲା, ତମେ ଚୁପ୍‌ଚାପ୍ ରହିଯାଅ । ହଲିଲା ପାଣିରେ ଗୋଡ଼ଦେବା ପାଇଁ କିଏ ବା ପ୍ରସ୍ତୁତ ଅଛି ? ଦିନେ ବିଜୁ ବାବୁଙ୍କ ପାଖରେ ମୋର କେତେକ ଶୁଭାକାଂକ୍ଷୀ ବନ୍ଧୁ ଅଭିଯୋଗ କଲେ, ମୋ ଯୋଗୁ କଳିଙ୍ଗ ଧ୍ୱଂସ ପାଇଗଲା ! ପ୍ରକୃତରେ 'କଳିଙ୍ଗ'ର ପ୍ରସାର ସେତେବେଳକୁ ପ୍ରାୟ ସାତ ହଜାରରୁ ଅଧେ ଖସି ଆସିଥିଲା । ବିଜୁବାବୁ ମୋତେ ଡକାଇ ପଠାଇଲେ । ମୁଁ ତାଙ୍କୁ କହିଲି, 'ସମ୍ପାଦକ ଭାବରେ ମୁଁ ଆପଣଙ୍କୁ କୈଫିୟତ୍ ଦେଲେ ବୃତ୍ତିଗତ ଆଚରଣବିଧିର ଅବମାନନା କରିବି । ତଥାପି କହୁଚି, ମୁଁ ଅନୁସନ୍ଧାନ କରି ବୁଝିଛି, ସାମାନ୍ୟ ବାରଅଣା ପଇସା ପାଇଁ ଝଗଡ଼ାରୁ ଏ ଆନ୍ଦୋଳନ ଆରମ୍ଭ ହୋଇଛି ଓ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତି ମାନେ ଏଥିରୁ ବେଶ୍ ଫାଇଦା ଉଠାଉ ଅଛନ୍ତି । ତେଣୁ ସତ୍ୟ ଓ ନ୍ୟାୟ ଦୃଷ୍ଟିରୁ ମୋତେ ଏହାର ପ୍ରତିରୋଧ କରିବା ପାଇଁ ପଡ଼ିବ' । ବିଜୁବାବୁ ସବୁକଥା ନୀରବରେ ଶୁଣିବା ପରେ, ମୋତେ କହିଲେ,'ତୁମେ ଯାହା ଉଚିତ୍ ଭାବୁଛ କର' ।

ସ୍ୱତନ୍ତ୍ର ଜନ କଂଗେସ ମନ୍ତ୍ରିମଣ୍ଡଳ ବେଳେ 'କଳିଙ୍ଗ'କୁ ସରକାରୀ ବିଜ୍ଞାପନ ପୂରାପୂରି ବନ୍ଦ କରିଦିଆଗଲା । ମୋର ବନ୍ଧୁମାନେ ମୋତେ ତାଗିଦ୍ କରିଦେବା ପାଇଁ ବିଜୁବାବୁଙ୍କୁ କହିଲେ । ମାତ୍ର ବିଜୁବାବୁ ଦିନକ ପାଇଁ ମୋତେ ତାଗିଦ୍ କରି ନଥିଲେ । ଜଣେ ସମ୍ପାଦକର ମର୍ଯ୍ୟାଦା ଓ ସ୍ୱାଧିକାର ପ୍ରତି ବିଜୁବାବୁଙ୍କର ଯେତେଟା ସମ୍ମାନ ଥିଲା, ତାହା ପ୍ରକୃତରେ ମୋତେ ସେଦିନ ଖୁବ୍ ଅନୁପ୍ରାଣିତ କରିଥିଲା । ଏହିପରି ତ ଆହୁରି ନା ନା ଘଟଣା ଏ

ଲେଖା ଲେଖିବାବେଳେ ମୋ ସ୍ମୃତିରେ ଚେଇଁ ଉଠୁଛି। ସେ ସବୁ ଏଠାରେ ଲେଖି ବସିଲେ, ଏହାର କଳେବର ଅନେକ ବଢ଼ିଯିବ । ମୋ 'ଜୀବନ ସ୍ମୃତି'ରେ ମଧ୍ୟ ବିଜୁବାବୁଙ୍କ ସମ୍ପର୍କରେ ଅନେକ କଥା ଲେଖିଛି।

ମନୁଷ୍ୟ ହୋଇ ଏ ପୃଥିବୀରେ ଜନ୍ମିଲେ ପ୍ରଶସ୍ତି ଆଉ ସମାଲୋଚନା ସମାନ ପରିମାଣରେ ମିଳିଥାଏ। ଇଏ ଛାଇ ଆଲୁଅ ପରି। ନିନ୍ଦା, ସମାଲୋଚନାରୁ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ, ଗୌତମ ବୁଦ୍ଧ,ଶ୍ରୀଚୈତନ୍ୟ ଓ ମାହାତ୍ମା ଗାନ୍ଧୀ ସୁଦ୍ଧା ଛାଡ଼ ପାଇ ନାହାନ୍ତି। ଗୀତାର ନବମ ଅଧ୍ୟାୟ ଏକାଦଶ ଶ୍ଳୋକରେ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଛନ୍ତି -'ଅଭି ଜାନନ୍ତି ମାଂ ମୁଢ଼ା ମାନୁଷୀ ତନୁମାଶ୍ରିତଂ।' ଅର୍ଥାତ୍, ' ମୁଁ ମନୁଷ୍ୟ ରୂପରେ ଜନ୍ମ ଗ୍ରହଣ କରିଥିବାରୁ,କେହି କେହି ମୋତେ ନ ଜାଣି, ନିନ୍ଦା କରିଥାନ୍ତି ।'ଗୌତମ ବୁଦ୍ଧଙ୍କ ଜୀବଦ୍ଦଶାରେ ଅଜୀବକମାନେ କିପରି ତାଙ୍କର ଚରିତ୍ର ସଂହାର କରିଥିଲେ, ଦେବଦତ୍ତ ଗୌତମ ବୁଦ୍ଧଙ୍କ ଖ୍ୟାତି ଓ ପ୍ରତିଷ୍ଠାରେ ଈର୍ଷାନ୍ୱିତ ହୋଇ, ତାଙ୍କୁ କିପରି ହତ୍ୟା କରିବା ପାଇଁ ଉଦ୍ୟମ କରିଥିଲେ, ବୌଦ୍ଧ ଗ୍ରନ୍ଥମାନଙ୍କରେ ତାହାର ଉଲ୍ଲେଖ ରହିଛି। ଶ୍ରୀ ଚୈତନ୍ୟଙ୍କ ସମ୍ପର୍କରେ ମଧ୍ୟ କମ୍ ଚରିତ୍ରସଂହାର କରାଯାଇନାହିଁ। ମହାତ୍ମା ଗାନ୍ଧୀଙ୍କର ମଧ୍ୟ ତୀବ୍ର ସମାଲୋଚକ ଓ ନିନ୍ଦୁକମାନଙ୍କର ଅଭାବ ନଥିଲା। ଅଜାତଶତ୍ରୁ କେବଳ ଗୋଟିଏ ନାମମାତ୍ର ! ନୋହିଲେ ଅଜାତଶତ୍ରୁ ହୋଇ କେହି କେବେ ଜନ୍ମି ନାହିଁ । ଏହା ମଧ୍ୟ ସମ୍ଭବ ନୁହେଁ। ପୁଣି ଯିଏ ଯେତେ ଦୁଃସାହସିକ ଭାବରେ କାର୍ଯ୍ୟକରେ, ସିଏ ତାର ସେତେ ସମାଲୋଚକ ସୃଷ୍ଟି କରିଥାଏ। ବିଜୁବାବୁଙ୍କର ସମାଲୋଚକ ମାନଙ୍କର ସଂଖ୍ୟା ସେଥିପାଇଁ ମଧ୍ୟ କମ୍ ନୁହେଁ । ମୁଁ ମଧ୍ୟ ନୀତିଗତ କାରଣରୁ ଆଜି ତାଙ୍କର ଜଣେ ସମାଲୋଚକ। କିନ୍ତୁ ପ୍ରଶସ୍ତି ଓ ନିନ୍ଦା ମଧ୍ୟରେ, ପ୍ରତ୍ୟେକ ବ୍ୟକ୍ତିର ଯଥାର୍ଥ ମୂଲ୍ୟାଙ୍କନ ସମ୍ଭବ ହୋଇଥାଏ । ପ୍ରଶସ୍ତି ଯେପରି ବ୍ୟକ୍ତିର ଯଥାର୍ଥ ମୂଲ୍ୟାଙ୍କନ ନୁହେଁ, ସମାଲୋଚକମାନଙ୍କର ସମାଲୋଚନା ମଧ୍ୟରେ ସେହିପରି ବ୍ୟକ୍ତିର ପ୍ରକୃତ ପରିଚୟ ନାହିଁ। ପ୍ରଶସ୍ତି ଓ ସମାଲୋଚନା ମଧ୍ୟରେ, ବିଜୁବାବୁଙ୍କ ସମ୍ପର୍କରେ ଯାହା ପ୍ରତିବାଦର ଆଶଙ୍କା ନରଖି କୁହାଯାଇ ପାରେ,ତାହାହେଲା

ତାଙ୍କର ଅସୀମ ସାହସିକତା । ବସ୍ତୁତଃ ହଲିଲା ପାଣି ଭିତରକୁ ଗୋଡ଼ ନବଢ଼ାଇ, ନିଜେ ନିରାପଦରେ ରହିବା ନେତୃତ୍ୱ ନୁହେଁ । ଚଲାବାଟର ଶଗଡ଼ ଗୁଳାରେ ପହଲି ଦେଇ, ଦଳେ ଲୋକଙ୍କୁ ପଛରେ ଭେଳାଇ ଚାଲିବା ମଧ୍ୟ ନେତୃତ୍ୱ ନୁହେଁ । ଯୁଦ୍ଧ କ୍ଷେତ୍ରରେ ହେଉ ବା ରାଜନୀତିରେ ହେଉ, ଅମଡ଼ା ବାଟରେ ନୂଆବାଟ ଫିଟାଇ ଚାଲିବା ମୋ ବିଚାରରେ ନେତୃତ୍ୱର ପ୍ରକୃତ ପରିଚୟ। ବିଜୁବାବୁଙ୍କଠାରେ ମୁଁ ଲକ୍ଷ୍ୟ କରଛି ଏହିପରି ଦୁର୍ବାର ଦୁଃସାହସ, ଅମଡ଼ା ବାଟରେ ଚାଲିବାର ନିଶା ! ଶଗଡ଼ଗୁଳା କୌଣସି ଦିନ ତାଙ୍କୁ ଆକୃଷ୍ଟ କରିନାହିଁ।

୧୯୬୧ ମସିହାରେ କେନ୍ଦ୍ରର ଅନୁମୋଦନ ନଲୋଡ଼ି, କେନ୍ଦ୍ରର ଆପତ୍ତି ସତ୍ତ୍ୱେ ସେ ଯେପରି ଭାବରେ ଗୋଟାଏ ମାଇନର୍ ପୋର୍ଟ ନାଁରେ ପାରାଦ୍ୱୀପ ପରି ଗୋଟାଏ ମେଜର ପୋର୍ଟ ତିଆରି କରି ପାରିଲେ, ତାହା ନିଶ୍ଚୟ ସ୍ମରଣ ରଖିବାର କଥା । ଓଡ଼ିଶା ସରକାରଙ୍କର କଣ୍ଟିଜେନ୍‌ସୀରୁ ୧୯ କୋଟି ଟଙ୍କା ଖର୍ଚ୍ଚ କରି ସେ ଏହି ବନ୍ଦରର ପ୍ରଥମ ପର୍ଯ୍ୟାୟ କାର୍ଯ୍ୟ ଶେଷ କରିଦେଲେ ।୧୯୬୬ ମସିହାରୁ କେନ୍ଦ୍ର ସରକାର ଏହାକୁ ଏକ ମେଜର-ପୋର୍ଟ ରୂପେ ଘୋଷଣା କରି ଏହାର ପରିଚାଳନା ନିଜ ହାତକୁ ନେଲେଣି । ମାତ୍ର ଏ ପର୍ଯ୍ୟନ୍ତ ଓଡ଼ିଶା ସରକାର ଯେଉଁ ୧୯ କୋଟି ଟଙ୍କା ଏ ବାବଦରେ ଖର୍ଚ୍ଚ କରିଥିଲେ, ତାହା ଓଡ଼ିଶା ସରକାର ଫେରି ପାଇଲେଣି କି ନାହିଁ ସନ୍ଦେହ । କେନ୍ଦ୍ରରେ ଜନତା ମନ୍ତ୍ରିମଣ୍ଡଳ ବେଳେ ସୁଦ୍ଧା ଏହା ସମ୍ଭବ ହୋଇପାରିଲା ନାହିଁ। ମହାନଦୀରେ ୧୯୬୧ ମସିହାରେ ପ୍ରଳୟଙ୍କରୀ ବନ୍ୟାବେଳେ ଇଞ୍ଜିନିୟର ମାନଙ୍କର ନିଷେଧ ଓ ପ୍ରତିବାଦକୁ ଉପେକ୍ଷା କରି ହିରାକୁଦ ବନ୍ଧରେ ବନ୍ୟାର ପାଣିକୁ ଚୂଡ଼ାନ୍ତ ସୀମା ପର୍ଯ୍ୟନ୍ତ ଅଟକାଇ, ତଳ ଅଞ୍ଚଳର ଲୋକଙ୍କୁ ସେ ଯେପରି ସେତେବେଳେ ବନ୍ୟାର ପ୍ରକୋପରୁ ରକ୍ଷା କରିଥିଲେ, ତାହା ବ୍ୟକ୍ତିଗତ ଭାବରେ ମୁଁ ଜାଣିଛି ଓ ଦେଖିଛି । କିନ୍ତୁ ଏଥିପାଇଁ ଓଡ଼ିଶାର ସମ୍ବାଦପତ୍ରମାନଙ୍କରେ ତାଙ୍କୁ ତୀବ୍ର ସମାଲୋଚନା କରାଯାଇଛି ।

ବିଜୁବାବୁଙ୍କର ଏହି ଦୁର୍ବାରତା ମୋତେ ସେଦିନ ଖୁବ୍ ପ୍ରଭାବିତ କରିଥିଲା। ଇଏ ମୋର ଅନେକ ଦିନର ବିଶ୍ୱାସ; ହୀନମନ୍ୟତା ପରିହାର କରି

ଦୁର୍ବାର ଦୁଃସାହସ ମଧ୍ୟରେ କେବଳ ଓଡ଼ିଆ ଜାତିର ଅଭ୍ୟୁଦୟ ସମ୍ଭବ। ମୁସ୍କିଲ ହେଉଛି, ବଶମ୍ୱଦତା ଓ ବିନୟକୁ ଅନେକ ଏବେ ବଟସ୍କରତା ବୋଲି ଜ୍ଞାନ କରି ହେୟ କରିବା ଆରମ୍ଭ କଲେଣି । ମୁଁ ସେଥିପାଇଁ ଏ ପୀଢ଼ିର ତରୁଣମାନଙ୍କୁ ସବୁବେଳେ ନିଜ ନିଜ କ୍ଷେତ୍ରରେ ଦୁର୍ବାରିତା ଓ ପ୍ରତିବଦ୍ଧତା ପାଇଁ କହି ଆସୁଅଛି । ମୋ ଦୃଷ୍ଟିରେ ବିଜୁବାବୁ ସେଇ ଦୁର୍ବାରିତାର ପ୍ରତୀକ, ଯଦ୍ୟପି କେଉଁ ପରିମାଣରେ ସେ ପ୍ରତିବଦ୍ଧ ତାହା ମୁଁ ଜାଣେ ନାହିଁ । ଏକ ସମୟରେ ସେ ଥିଲେ, ବନ୍ଧୁବତ୍ସଳ । ତାଙ୍କ ଉପରେ ନିର୍ଭର କରି ହେଉଥିଲା । ଆଜି ମଧ୍ୟ ସେ ବୋଧହୁଏ ସେହିପରି ଅଛନ୍ତି । ସେ ଶତାୟୁ ହୁଅନ୍ତୁ, ଆଜି ଏହି ଶୁଭ ଅବସରରେ ମୋର ଏକାନ୍ତ ପ୍ରାର୍ଥନା।

# ବିଜୁ ଭାଇଙ୍କ ପରି ପିଲାଦିନୁ

## ✓ ଡା: ଜର୍ଜ ପଟ୍ଟନାୟକ

ମୋ ସାନଭାଇ ବିଜୁର ୭୧ତମ ଜୟନ୍ତୀ ଆସନ୍ତା ମାର୍ଚ୍ଚ ପାଞ୍ଚ ତାରିଖରେ ହେବ । ମୁଁ ବଡ଼ଭାଇ ହିସାବରେ ସାନଭାଇର ଜନ୍ମଦିନକୁ ସ୍ୱାଗତ ଜଣାଉଛି ଏବଂ ଭଗବାନଙ୍କ ନିକଟରେ ମୋର ଏତିକି ପ୍ରାର୍ଥନା ଯେ, ସେ ତାଙ୍କୁ ଦୀର୍ଘଦିନ ସୁସ୍ଥ ଅବସ୍ଥାରେ ରଖି ଓଡ଼ିଶା ଲୋକଙ୍କୁ ଆଗେଇନେବା ପାଇଁ ତାଙ୍କର ଯେଉଁ ଅଦମ୍ୟ ଉତ୍ସାହ, ତାକୁ ପୂର୍ଣ୍ଣ କରନ୍ତୁ । ତାଙ୍କର ଦୂରଦର୍ଶିତା, ଗରୀବ ଲୋକଙ୍କ ପ୍ରତି ତାଙ୍କର ଅକୁଣ୍ଠ ସାହାଯ୍ୟ, ସହାନୁଭୂତି ଓ ସ୍ନେହ, ମମତା; ଦୁଃଖୀ ସହିତ ଦୁଃଖୀ ହୋଇ ତାଙ୍କୁ ସାହାଯ୍ୟ କରିବା ହେଉଛି ତାଙ୍କ ମନର ସବୁଠାରୁ ଶ୍ରେଷ୍ଠ ଆକାଙ୍କ୍ଷା। ସାରା ଭାରତବର୍ଷରେ ଏବଂ ଭାରତ ବାହାରେ ତାଙ୍କୁ ସମସ୍ତେ ଅତି ଘନିଷ୍ଠତାର ସହ ଚିହ୍ନନ୍ତି ଓ ଜାଣନ୍ତି। ମୁଁ ବଡ଼ ଭାଇ ହୋଇ ମଧ୍ୟ ସାନଭାଇର ଯେଉଁ ବୃହତ୍ତର ଜୀବନ, ସେଥିପାଇଁ ଗର୍ବ କରୁଛି । ତାଙ୍କର ଅସୀମ ସାହାସ, ଧୈର୍ଯ୍ୟ, ଆତ୍ମବିଶ୍ୱାସ ଓ ନିର୍ଭିକତା ତାଙ୍କୁ ସବୁ କ୍ଷେତ୍ରରେ ଆଗେଇ ନେଇଛି । ସେ କେବଳ ଭାରତର ସ୍ୱାଧୀନତା ସଂଗ୍ରାମୀ ନୁହନ୍ତି; ସେ ସ୍ୱର୍ଗତ ପ୍ରଧାନମନ୍ତ୍ରୀ ଶ୍ରୀ ପଣ୍ଡିତ ଜବାହାରଲାଲ ନେହେରୁଙ୍କ ସହିତ ମଧ କାର୍ଯ୍ୟ କରିଥିଲେ । ତାଙ୍କ ସମୟରେ ସେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହିସାବରେ ଓଡ଼ିଶାର ବହୁତ ଉନ୍ନତି କରିଯାଇଛନ୍ତି । ଦେଶର ସମ୍ମାନ ପାଇଁ ସେ ଧରାରୁ ଆକାଶ ପର୍ଯ୍ୟନ୍ତ ଉଭୟ କ୍ଷେତ୍ରରେ ତାଙ୍କର ସୁଦକ୍ଷତା ପ୍ରମାଣ କରିଛନ୍ତି ଏବଂ ଦେଶର ବହୁ ଶ୍ରେଷ୍ଠ ନେତୃସ୍ଥାନୀୟ ବ୍ୟକ୍ତିଙ୍କ ସହିତ କାର୍ଯ୍ୟ କରିଛନ୍ତି ଓ ତାଙ୍କର ଆଜି ସୁଦ୍ଧା ବିଦେଶରେ ମଧ୍ୟ ଜନପ୍ରିୟତା ବଜାୟ ରହିଛି ।

ଓଡ଼ିଶାର ଶିଳ୍ପପତି ଭାବରେ ସେ ଦେଶ ବାହାରେ ମଧ୍ୟ ପରିଚିତ । ସେ ଶିଳ୍ପ ଗଢ଼ିଥିଲେ ସତ; କିନ୍ତୁ ସେ ମୋତେ କହିଥିଲେ,

'ମୁଁ ଏ ଶିଳ୍ପ ଗଢ଼ିଛି ମୋର ପଇସା ପାଇଁ ନୁହେଁ, ଦେଶର ଅଗଣିତ ଜନସାଧାରଣଙ୍କ ଉନ୍ନତି ସାଧନ ପାଇଁ। ପ୍ରଥମେ ସେ ମିଶନ୍ ସ୍କୁଲର ନିମ୍ନ ପ୍ରାଥମିକ ଶ୍ରେଣୀରୁ ପଢ଼ା ଆରମ୍ଭ କରନ୍ତି । ଆମେ ତିନିଭାଇ; ମୁଁ,ବିଜୁ ଓ ସିଜୁ ତିନି ଜଣଯାକ ମିଶନ୍ ସ୍କୁଲରେ ପାଠ ପଢୁଥାଉ । ସେତେବେଳେ ମିଶନ୍ ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ଜଣେ ଗୋରାସାହେବ ଲୋକ । ତାଙ୍କ ନାମ ହେଉଛି **O.J. Millman.** ୧୯୨୬ ମସିହାରେ ସେ ମିଶନ୍ ସ୍କୁଲ ଛାଡ଼ି ବିଲାତ ଚାଲିଗଲେ । ସେ ଯିବାପରେ ବାପା ମୋତେ ଓ ବିଜୁକୁ ଆଣି ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ପାଠ ପଢ଼ାଇଲେ । ୧୯୨୬ ମସିହାରେ ଗାନ୍ଧିଜୀ ସ୍ୱରାଜ୍ୟ ଆଶ୍ରମକୁ ଆସିଥିଲେ । ସ୍ୱରାଜ୍ୟ ଆଶ୍ରମ ରେଭେନ୍‌ସା କଲିଜିଏଟ୍ ସ୍କୁଲର ପାଖାପାଖି ହୋଇଥିବା ଯୋଗୁଁ ମୁଁ ଏବଂ ବିଜୁ ତାଙ୍କୁ ଦେଖିବାକୁ ଯାଇଥିଲୁ । ବିଜୁ ଆମ ସମସ୍ତ ପିଲାମାନଙ୍କ ମଧ୍ୟରେ ତେଙ୍ଗା ଥିଲେ । ସେତେବେଳର ଗୋରା ଏସ୍.ପି ସାହେବ **(Mr. Hargrieve)** ତାଙ୍କର ପିତଳମୁଣ୍ଡିଆ ରୁଲ୍‌ବାଡ଼ିରେ ବିଜୁ ମୁଣ୍ଡରେ ବାଡ଼େଇ ଦେଇଥିଲେ। ବିଜୁ ମୁଣ୍ଡ କଣାହୋଇ ରକ୍ତ ବୋହୁଥିଲା । ସେହି ଘଟଣାରୁ ତା ମନରେ ପ୍ରତିଶୋଧର ବହ୍ନି ଜଳିଉଠିଥିଲା । ମୋର ମନେହୁଏ, ସେହିଦିନଠାରୁ ତାଙ୍କର ମନ ଭିତରେ ନୂତନ ଜାଗରଣ ସୃଷ୍ଟି ହୋଇଥିଲା ଓ ସେ ମନେ ମନେ ଗୋରାସାହେବଙ୍କ ଶାସନରୁ ଦେଶକୁ ମୁକ୍ତ କରିବା ପାଇଁ ସ୍ଥିର କରିଥିଲେ। ୧୯୨୮ ମସିହାରେ ମୁଁ ସ୍କୁଲରୁ ଉତ୍ତୀର୍ଣ୍ଣ ହୋଇ ରେଭେନ୍‌ସା କଲେଜରେ ଆଇ.ଏସ୍.ସି ରେ ନାମ ଲେଖାଇଲି ଓ ସେ ୧୯୩୨ ରେ ରେଭେନ୍‌ସା କଲେଜରେ ନାମ ଲେଖାଇଲେ ।

ଆମେ ତିନି ଭାଇ ବହୁତ ଖେଳପ୍ରେମୀ ଥିବାରୁ ବାପା ସବୁବେଳେ ସେଥିପାଇଁ ଆମକୁ ବହୁତ ସମର୍ଥନ କରୁଥିଲେ ଏବଂ ସବୁବେଳେ ପଚାରୁଥିଲେ, କଣ ହେଲା ଖେଳରେ । ତମେ ଜିତୁଛ ନା ହାରୁଛ ? ଖେଳରେ ହାରିଗଲେ

ସମସ୍ତଙ୍କୁ ଗାଳି ଦେଉଥିଲେ । ସନ୍ଧ୍ୟାରେ ଘରକୁ ଫେରିଲେ ମାଡଖାଇ କେହି ଫେରିଥିଲେ ବାପା ତାଙ୍କୁ ଘରୁ ତଡିଦେଉଥିଲେ । ବାପାଙ୍କର ବିଜୁଙ୍କ ରାଜନୈତିକ ଜୀବନ ପ୍ରତି ଆକୁଣ୍ଠ ସମର୍ଥନ ଥିଲା । ୧୯୩୨ ମସିହାରେ ସେ କଟକରୁ ପେଶଓ୍ୱାର ସାଇକେଲରେ ଯାଇଥିଲେ । ତାଙ୍କ ସହିତ ତାଙ୍କର ଦୁଇବନ୍ଧୁ ଶ୍ରୀ ଅମର ଦେଓ ଭ୍ରମରବର ସାହୁ ମଧ୍ୟ ଯାଇଥିଲେ । କିନ୍ତୁ ସେ ଦୁଇବନ୍ଧୁ ଆଉ ଇହଜଗତରେ ନାହାନ୍ତି । ରେଭେନ୍‌ସା କଲେଜରେ ସେ ପ୍ରଥମ ଏକାଦଶ ଫୁଟବଲ ଖେଳି ତିନିବର୍ଷ ଲଗାତର ଭାବରେ ଆଥଲେଟିକ ଚମ୍ପିଆନ୍ ଥିଲେ। ଆଜି ପର୍ଯ୍ୟନ୍ତ ମଧ୍ୟ ରେଭେନ୍‌ସା କଲେଜରେ ସେ ନାମ ରହିଛି ।

ପୋଲଭୋଲ୍‌ଟ ଖେଳ ସେ ପ୍ରଥମେ ଓଡିଶାରେ ଆରମ୍ଭ କରିଥିଲେ ଓ ସେଥିରେ ପ୍ରଥମ ସ୍ଥାନ ଅଧିକାର କରିଥିଲେ । ଖେଳ ଛାଡିବାର ବହୁବର୍ଷପରେ ସେ ପୁଲିସ ପଡିଆରେ ଖେଳ ଦେଖିବାକୁ ଯାଇଥିବା ସମୟରେ ପୋଲଭୋଲ୍‌ଟ ଖେଳରେ ଯିଏ ତାଙ୍କର ରେକର୍ଡ ଭାଙ୍ଗିବ ସେ ତାକୁ ୧୦୦ ଟଙ୍କା ପୁରସ୍କାର ଦେବେ ବୋଲି କହିଥିଲେ ଓ ସାଙ୍ଗେ ସାଙ୍ଗେ ନନ୍ଦକିଶୋର ଦାସ ତାର ଉଚ୍ଚ ରେକର୍ଡ ଭାଙ୍ଗିବାରୁ ସେ ୧୦୦ ଟଙ୍କିଆ ନୋଟଟି ବଢାଇଦେଇ ତାଙ୍କର କୃତିତ୍ୱ ଯୋଗୁଁ ତାଙ୍କୁ ଧନ୍ୟବାଦ ଦେଇଥିଲେ । ରେଭେନ୍‌ସା କଲେଜରେ ପାଠ ପଢିଲାବେଳେ ସେ ଉତ୍କଳମଣି ଗୋପବନ୍ଧୁଙ୍କ ସହିତ ବନ୍ୟାଗ୍ରସ୍ତ ଲୋକଙ୍କୁ ସାହାଯ୍ୟ କରିବା ପାଇଁ ଯାଇଥିଲେ । କାଠଯୋଡି ନଈ ଭୀଷଣ ଭାବରେ ବଢ଼ିଥାଏ । କାଠଡଙ୍ଗାରେ ସମସ୍ତେ ବସିଥାନ୍ତି । ହଠାତ୍ ଉତ୍କଳମଣିଙ୍କ ଛତା ନଈରେ ପଡି ଭାସିଯାଉଥିଲା । ସେ ତତ୍‌କ୍ଷଣାତ୍ ଡେଇଁପଡି ଛତା ଉଠାଇଆଣି ଡଙ୍ଗାକୁ ଫେରିଆସିଥିଲେ । ଉତ୍କଳମଣି ତାଙ୍କୁ ପଚାରିଥିଲେ "ନଈକୁ ଡେଇଁପଡିଲ ଯଦି ମରିଯାଇଥାନ୍ତ, ଜୀବନଠାରୁ କ'ଣ ଛତାଟା ବଡ ?" ସେ ହସି ହସି କହିଥିଲେ, ସଂସାରରେ ଆଜି ନୁହେଁ ତ କାଲି ମରିବି; ଆଉ ମରିବା ପାଇଁ କ'ଣ ଭୟ କରିବି ? ଗୋପବନ୍ଧୁ ତାଙ୍କ ସାହାସ ଦେଖି ତାଙ୍କୁ

ଆଶୀର୍ବାଦ କରିବା ସଙ୍ଗେ ସଙ୍ଗେ କହିଥିଲେ କି ତୁମେ ଦୁନିଆରେ ଦିନେ ନା ଦିନେ ବଡ଼ ମଣିଷ ହେବ ଓ ନାମ ରଖିବ । ୧୯୩୪ ରେ ବି. ଏସ୍. ସି. ରେ ନାମ ଲେଖାଇବା ପରେ ସେ ପାଇଲଟ ଟ୍ରେନିଂପାଇଁ ଚାଲିଯାଇଥିଲେ । ସ୍କୁଲରେ ପାଠ ପଢ଼ିଲାବେଳେ କଟକର କିଲ୍ଲାକୁ ପ୍ରଥମ କରି ଉଡାଜାହାଜ ଆସିଥାଏ । ଗୋରାପୋଲିସ ତାକୁ ଘେରି ରହିଥାନ୍ତି । ବିଜୁ ଦେଖିବାକୁ ଯାଇ ଛୁଇଁଦେଇଥିଲେ ବୋଲି ତାଙ୍କୁ ପୋଲିସ ଚାବୁକରେ ମାରିଥିଲେ ଓ ସେହିଦିନଠାରୁ ସେ ଦୃଢ଼ପ୍ରତିଜ୍ଞ ଥିଲେ ଯେ ସେ ଦିନେ ପାଇଲଟ୍ ହେବେ ଓ ବାପାଙ୍କୁ କହି ସେ ପାଇଲଟ୍ ଟ୍ରେନିଂ ପାଇଁ ଚାଲିଗଲେ । ନିଃସନ୍ଦେହରେ କୁହାଯାଇପାରେ; ସେ ଜଣେ ଭାରତର ସୁଦକ୍ଷ ପାଇଲଟ ଭାରତର ସୁଦକ୍ଷ ପାଇଲଟ ଭାବରେ ଖ୍ୟାତି ଅର୍ଜନ କରିପାରିଛନ୍ତି ଓ ସେତେବେଳର ଗୋରା ଗଭର୍ଣ୍ଣର ସାହେବ(Vice -Roy -Lord Wavell)ଙ୍କୁ ମଧ୍ୟ ସେ ବର୍ମାଙ୍କୁ ପାଇଲଟ୍ ହିସାବରେ ଉଡାଯାହାଜରେ ନେଇକରି ଯାଇଛନ୍ତି ।

୧୯୪୩ ମସିହା ଜାନୁଆରୀ ୧୩ ତାରିଖ ଦିନ ଦିଲ୍ଲୀରେ ସେ ୧୯୪୨ ଭାରତଛାଡ ଆନ୍ଦୋଳନ ପାଇଁ ଗିରଫ ହେଲେ । କିନ୍ତୁ ସେ ଜେଲ ଭିତରେ ଦେଶପାଇଁ ବହୁତ କାମ କରିଛନ୍ତି ଯାହା ବ୍ରିଟିଶ ସରକାର ଜାଣିପାରି ନଥିଲେ ।ସେ ଉଡାଜାହାଜରେ ଗଲାବେଳେ ଅନେକ ବଡ ବଡ ନେତାଙ୍କୁ ନେଇ ବିଲ, ଜଙ୍ଗଲ, ନଈକୂଳରେ ଓହ୍ଲାଇ ପୁଣି ଉଠି ଚାଲିଯାଇଛନ୍ତି ।
ସେ ଦେଶର ବହୁ ଘଟଣା ସହିତ ସଂପୃକ୍ତ ଥିବାଯୋଗୁଁ ସଂପୂର୍ଣ୍ଣ ଜୀବନର ସ୍ୱାଦ ଚାଖିପାରିଛନ୍ତି ।

ମୋରାରଜୀ ଭାଇ ଦେଶାଇ ତାଙ୍କ ଜୀବନୀପୁସ୍ତକରେ ଏହିପରି ଲେଖି ତାଙ୍କ ଦୂରଦର୍ଶିତାର ସୂଚନା ଦେଇଛନ୍ତି ।

Jawaharlal went to Kashmir in May or june 1963, after the Loksabha had been adjourned. Sri Biju Pattanayak met him there. Sri Pattanayak later told to Morarji about the

talks he had with Nehru, Prime Minister that yet suggested to him a plan which was very much like what was later known as "Kamraj Plan". In fact, the Kamraj plan was started by Biju Pattanayak. It was not known to public.

Kamraj suggested this plan at end of June or beginning of July 1963.(Morarji admits this in Autobiography.)

Many times he creates problems unnecessarily and try to slove them again. He always believes in very hard work. He is not sentimental. While he takes up matter very seriously, does not leave without solving that.

He always advices that faint hearts never won battle for their country.

ଏହି ଶୁଭ ଅବସରରେ ସେ ଦେଶର ଅଗଣିତ ଜନସାଧାରଣ ତଥା ଗରିବ ହରିଜନ ଆଦିବାସୀମାନଙ୍କ ମୁଁହରେ ସଦାସର୍ବଦା ହସ ଫୁଟାନ୍ତୁ ଓ ଜନସମାଜ ସେବାରେ ନିଜ ଜୀବନ ବିତାନ୍ତୁ, ଓଡ଼ିଶାକୁ ଆଗେଇବାରେ ଅବଶିଷ୍ଟ ସମୟତକ କରନ୍ତୁ, ଏହାହିଁ ମୋର ଭଗବାନଙ୍କ ନିକଟରେ ପ୍ରଣତି ।



# ଷାଠିଏ ବର୍ଷ ତଳର...

## ଉଦୟନାଥ ଷଡ଼ଙ୍ଗୀ

୧୯୨୭ କି ୨୮ ମସିହା ।

ଉଚ୍ଚ ସରକାରୀ ପଦବୀରୁ ଅବସର ଗ୍ରହଣ କରି ସ୍ୱର୍ଗତ ଲକ୍ଷ୍ମୀନାରାୟଣ ପଟ୍ଟନାୟକ କଟକରେ ଅବସ୍ଥାନ କରୁଥାନ୍ତି । ସେ କେବଳ ଦକ୍ଷ ଉଚ୍ଚ ବିଚାରକ ନ ଥିଲେ ଉତ୍କଳ ସମ୍ମିଳନୀର ଜଣେ ବଡ଼ପଣ୍ଡା, ଦେଶ ମିଶ୍ରଣ ଆନ୍ଦୋଳନର ଅନ୍ୟତମ କର୍ଣ୍ଣଧାର ଏବଂ ସଂସ୍କାରକ, ସମାଜସେବୀ, ଓଡ଼ିଆ ସାହିତ୍ୟପ୍ରେମୀ ଥିଲେ । ତାଙ୍କ ଓଡ଼ିଆ ପ୍ରାଣତାର ଗୋଟିଏ ସୁନ୍ଦର ଦୃଷ୍ଟାନ୍ତ ମନେ ପଡ଼ୁଛି ।

ସେ ସମୟରେ ଉଚ୍ଚ ଶିକ୍ଷିତ ବ୍ରାହ୍ମ ସମାଜ ଗୋଷ୍ଠୀର ଯୁବକମାନେ ବଙ୍ଗୀୟ ବ୍ରାହ୍ମ ସମାଜ ପରିବାରର କନ୍ୟାମାନଙ୍କୁ ବିବାହ କରୁଥିଲେ । କନ୍ୟା ପ୍ରଭାବରେ ସେ ପରିବାରରେ ସାଧାରଣତଃ ବଙ୍ଗୀୟ ଭାଷା ପ୍ରଚଳିତ ହୋଇଯାଉଥିଲା; ମାତ୍ର ଲକ୍ଷ୍ମୀନାରାୟଣ ବାବୁ ବଙ୍ଗୀୟ ମହିଳାଙ୍କୁ ବିବାହ କରିଥିଲେ ମଧ୍ୟ ତାଙ୍କ ପରିବାରର ଭାଷା ଥିଲା ଖାଣ୍ଟି ଓଡ଼ିଆ ।

ଅବସର ଗ୍ରହଣ ପରେ ସେ ଯେପରି ସୁସ୍ଥ ସବଳ ଥିଲେ, ସେହିପରି କର୍ମଠ ଥିଲେ ଓ ସର୍ବଦା କୌଣସି ନା କୌଣସି କାର୍ଯ୍ୟରେ ଲାଗିପଡ଼ୁଥିଲେ ।

ବର୍ଷୀୟାନ ସାହିତ୍ୟିକ ଶ୍ରୀଯୁକ୍ତ କାଳିନ୍ଦୀଚରଣ ପାଣିଗ୍ରାହୀ ତାଙ୍କ ସଂପର୍କରେ ଲେଖିଛନ୍ତି --

''କେବଳ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ ଭାବରେ ନୁହନ୍ତି, ସମାଜ ସଂସ୍କାରକ ରୂପେ ଏବଂ ଜଣେ କର୍ମଠ ପୁରୁଷ ରୂପେ ଲକ୍ଷ୍ମୀନାରାୟଣ ବାବୁ ଖ୍ୟାତି ଅର୍ଜନ କରିଥାନ୍ତି । ଓଡ଼ିଆମାନଙ୍କ ମଧ୍ୟରେ ଜଣେ ସୁସ୍ପଷ୍ଟ ବଳିଷ୍ଠ

ନିରଳସ କର୍ମଠ ପୁରୁଷ ରୂପେ ସ୍ନେହ ଓ ଶ୍ରଦ୍ଧା ସେ ଆକର୍ଷଣ କରୁଥିଲେ, ସେଥି ସଙ୍ଗେ ତାଙ୍କର ସାଧୁତା ଓ ବ୍ୟାବାହାରିକ ସୌଜନ୍ୟ ମଧ୍ୟ ଲକ୍ଷ କରିବାର ବିଷୟ ।"

ଲକ୍ଷ୍ମୀନାରାୟଣ ବାବୁ ବସି ରହିବାର ଲୋକ ନଥିଲେ । ଅବସର ଗ୍ରହଣ ପରେ ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି ପାଇଁ ଗଢ଼ିଲେ "ଓଡ଼ିଆ ସାହିତ୍ୟ ପ୍ରଚାର ସଂଘ" । ସେତେବେଳେ କେବଳ କଟକ ଟ୍ରେଡ଼ିଂ କମ୍ପାନୀ ବ୍ୟତୀତ ଆଉ କୌଣସି ସାହିତ୍ୟ ପ୍ରକାଶନ ସଂସ୍ଥା ନଥିଲା । ଟ୍ରେଡ଼ିଂ କମ୍ପାନୀ ମଧ୍ୟ ଅର୍ଥାଭାବରୁ କୌଣସ ବଡ଼ ବହି ପ୍ରକାଶ କରିବାକୁ ସମର୍ଥ ନ ଥିଲା । କଟକରେ ଆଉ ଯେ କେତୋଟି ପ୍ରକାଶନ ସଂସ୍ଥା ଥିଲା, ସେମାନେ କେବଳ ପୁରାଣ, ଭାଗବତ ଓ ରୀତି ଯୁଗୀୟ କାବ୍ୟ, ଛାନ୍ଦ ପୁସ୍ତକ ଖଣ୍ଡେ ଖଣ୍ଡେ ପ୍ରକାଶ କରୁଥିଲେ ।

ଯୁଗୋପଯୋଗୀ ସାହିତ୍ୟ ପ୍ରସାର ଓ ନବଯୁଗର ଲେଖକମାନଙ୍କୁ ଉତ୍ସାହିତ କରିବା ହିଁ ଥିଲା ଓଡ଼ିଆ ସାହିତ୍ୟ ପ୍ରଚାର ସଂସ୍ଥାର ଏକମାତ୍ର ଉଦ୍ଦେଶ୍ୟ। ସେ ଯୁଗର ପ୍ରଖ୍ୟାତ ସାହିତ୍ୟିକ, ବାଗ୍ମୀ 'ଉତ୍କଳ ସାହିତ୍ୟ' ପତ୍ରିକାର ପ୍ରତିଷ୍ଠାତା ସମ୍ପାଦକ ସ୍ୱର୍ଗତ ବିଶ୍ୱନାଥ କର ଲକ୍ଷ୍ମୀନାରାୟଣ ବାବୁଙ୍କର ପରାମର୍ଶଦାତା। ପ୍ରକାଶ ପାଉଥିବା ପୁସ୍ତକଗୁଡ଼ିକର ପ୍ରୁଫ୍ ସଂଶୋଧନ କରିବା ପାଇଁ ବିଶ୍ୱନାଥ ବାବୁଙ୍କ ନିର୍ଦ୍ଦେଶରେ ଏହି ଲେଖକ ଉପରେ ଦାୟିତ୍ୱ ଦିଆଗଲା।

ମୁଁ ଆଉ ଗୋଟିଏ ପ୍ରେସର କର୍ମଚାରୀ, ତେଣୁ ସ୍ଥିର ହେଲା, ରବିବାର କିମ୍ବା ଛୁଟି ଦିନମାନଙ୍କରେ ତୁଳସୀପୁରସ୍ଥ ଲକ୍ଷ୍ମୀନାରାୟଣ ବାବୁଙ୍କ ବାସଭବନକୁ ଯାଇ କାର୍ଯ୍ୟ କରିବାକୁ ହେବ । ବହୁତ ଗୁଡ଼ିଏ ଫର୍ମାରିପ୍ରୁଫ୍ ଆସିଗଲେ ଅପରାହ୍ନ ୫ଟା ପରେ ଯାଇ କିଛି ସମୟ କାମ ଚାଲିବ।

ମୁଁ ଯେଉଁ ସମୟରେ ଯାଏ ନା କାହିଁକି, ଅଧିକାଂଶ ସମୟରେ ଦେଖେ ଦୁଇଜଣ ସୌମ୍ୟଦର୍ଶନ କିଶୋର ହତା ଭିତରେ ଥିବା ବଡ଼ ବାମ୍ପୀରୁ ପାଣି

ଉଠାଇ ବଗିଚାରେ ଢ଼ାଳୁଛନ୍ତି । ଘରକୁ ଲାଗି ପ୍ରସସ୍ତ ବଗିଚା । ନାନା ପ୍ରକାର ଫଲ ଓ ଫଳ ଗଛରେ ପରିପୂର୍ଣ୍ଣ । ପିଲା ଦୁହେଁ ବଡ଼ ବାଲ୍‌ଟିରେ ପାଣି ଉଠାଇବାରେ ବ୍ୟସ୍ତ । ଚାରି ପାଞ୍ଚଘଣ୍ଟା ଧରି ଅନବରତ କାର୍ଯ୍ୟ ଲାଗିରହିଥାଏ । ପ୍ରୁଫ୍ ଦେଖିବା ଛାଡ଼ି ମୁଁ ବାରମ୍ବାର ଅଫିସ୍ ଘରର ଝରକା ବାଟେ ସେହି ଦିଗକୁ ଅନାଇ ପିଲା ଦୁହିଁଙ୍କର କାର୍ଯ୍ୟକଳାପ ଦେଖେ ।

ଗ୍ରୀଷ୍ମ ଋତୁରେ କଟକରେ ପ୍ରବଳ ତାତି । ଖଣ୍ଡିଏ ହାପ୍ ପ୍ୟାଣ୍ଟ ଓ ଗଞ୍ଜି ପିନ୍ଧିଥିବା ପିଲା ଦୁଇଟିଙ୍କର ଅବିଶ୍ରାମ କଠିନ ପରିଶ୍ରମ । ଝାଳ ବୋହି ପିଠି ପାଖ ଗଞ୍ଜି ଦେହରେ ମିଶି ଯାଇଥାଏ । ପିଲା ଦୁଇଟି ଯେ ଘରର ଚାକର ନୁହଁନ୍ତି, ତା ଅନୁମାନ କରିବା ଖୁବ୍ ସହଜ ।

ଲକ୍ଷ୍ମୀନାରାୟଣବାବୁଙ୍କ କଥାଗୁଡ଼ାକ ଶ୍ରୋତାଙ୍କ କାନକୁ ଟିକିଏ କଟୁ ଶୁଣାଯାଏ, ମନକୁ ଦବାଇ ଦିଏ । ସ୍ୱର ରୁକ୍ଷ, ସବୁ ସମୟରେ କ୍ରୋଧାନ୍ୱିତ ବୋଲି ଯେ କେହି ମନେକରିବ, ସେଥିପାଇଁ ଆଳାପ କରିବାକୁ ସଂକୋଚ ଲାଗେ ।

ପିଲାଦୁଇଟିଙ୍କର ଅବସ୍ଥା ଦେଖି ମନରେ ଦୁଃଖ ହେଉଥାଏ । ଦିନେ ଆଉ ସମ୍ଭାଳି ପାରିଲି ନାହିଁ । ଡ଼ରିହରି ପଚାରି ଦେଲି, ଏ କୋମଳ ପିଲାଦୁଇଟିଙ୍କୁ ଏତେ କଷ୍ଟ ଦିଆଯାଉଛି କାହିଁକି ?

ସଙ୍ଗେ ସଙ୍ଗେ ତୀକ୍ଷଣ୍ ସ୍ୱରରେ ଉତ୍ତର ମିଳିଲା, କାମ କରିବେ ନାହିଁ ତ, ଖାଇବେ କାହିଁକି ? ରଜାରାଜୁଡ଼ା ଘରର ପିଲା ନୁହନ୍ତି ଯେ ଏଇଦିନୁ ଅଏସରେ ବଢ଼ି, କୁସଙ୍ଗରେ ପଡ଼ି,ମଦ ମାଇକିନିଆରେ ବୁଡ଼ି ଜୀବନ କଟାଇବେ ? ତାଗଦା କରିଦେଇଛି, କାମ ବନ୍ଦ ତ ଖାଇବା ବନ୍ଦ ।''

ଚୁପ୍ ହୋଇ ମୁହଁ ତଳକୁ ପୋତି ବସି ରହିଲି । ଭାବୁଥାଏ କି ନିଷ୍ଠୁର ହୃଦୟ ।

ଅପେକ୍ଷାକୃତ ନରମ ଗଳାରେ ପୁଣି କହିଲେ, ''ଜାଣିଶୁଣି ତାଙ୍କୁ

ଏ କାମ ଦେଇଛି ମୁଁ । କାମ କଲେ ଖାଇବେ । ଏଠାରେ ବସି ଗତିବିଧି ନିରୀକ୍ଷଣ କରୁଛି । ଏହି ସମୟରୁ ଶୃଙ୍ଖଳା ନ ଶିଖିଲେ, ଶାରୀରିକ ଶ୍ରମ ନ କଲେ, ଭବିଷ୍ୟତ ଜୀବନ ମାଟି ହୋଇଯିବ ସିନା! ସେ କ'ଣ ଆଉ ମଣିଷ ହେବେ ?''

ମନରେ ଖେଳିଗଲା, ମହାତ୍ମାଗାନ୍ଧିଙ୍କ ସାବରମତୀ ଆଶ୍ରମର କଡ଼ା କଟକଣା । ଯେଉଁଦିନ ଯେ କିଛି କାମ ନ କରିବ, ସେ ଦିନ ତାର ପଡ଼ି ବନ୍ଦ, ସେ ଯେତେ ଆତ୍ମୀୟ କି ସ୍ନେହ-ଶ୍ରଦ୍ଧାଭାଜନ ହୋଇଥାଉ ପଛକେ ।

ସେତେବେଳେ ପିଲା ଦୁଇଟିର ନାମ ଜାଣି ନ ଥିଲି । ଜାଣିଲି ବହୁତ ଦିନ ପରେ ।

କଟକ ସହରକୁ ପ୍ରଥମ ହୋଇ ଗୋଟିଏ ଉଡ଼ାଜାହାଜ ଆସିଲା । ବାଲିଯାତ୍ରା ପଡ଼ିଆରେ ଅଦିନିଆ ବାଲିଯାତ୍ରାର ଭିଡ଼ । ସହରର ଆବାଳ-ବୃଦ୍ଧ-ବନିତା ବିଶେଷତଃ ସ୍କୁଲ କଲେଜ ଛାତ୍ରମାନଙ୍କର ସମାବେଶ । ସମସ୍ତଙ୍କର ବ୍ୟାକୁଳ ଆଗ୍ରହ ଟିକିଏ ଏହି ଅଦ୍‌ଭୁତ ଯନ୍ତ୍ରରେ ହାତମାରି ନିଜକୁ କୃତାର୍ଥ ମନେକରିବେ । ମାତ୍ର ଚାରିକଡ଼ରେ ପ୍ରାୟ ଦଶହାତ ଦୂରରେ ପୋଲିସ୍ ଘେରାଉ । ହାତରେ ପିତ୍ତଳ ଗୋବ ବସା ଠେଙ୍ଗୁଣି । କିଏ ବା ଘେରାଉ ଭିତରକୁ ପଶିବାକୁ ସମର୍ଥ ହେବ ? ସାହସ କରିବ ?

ଜଣେ ପିଲା କିନ୍ତୁ ଅସୀମ ସାହସ ଦେଖାଇଲା, ପୁଲିସ୍ ଆଖିରେ ଧୂଳି ଦେଇ ଯାଇ ଇଞ୍ଜିନ୍ ପାଖରେ ହାଜର । ଦୀର୍ଘ ଡ଼େଣା ଧରିବାକୁ ହାତ ବଢ଼ାଉଛି । ଗୋଟିଏ ସ୍କୁଲ ଛାତ୍ରର ଏତେ ଦିମାକ୍ !

ପୁଲିସ୍ ସେଠାରୁ ଟାଣି ଆଣିଲେ ।

ଶୁଣାଗଲା, ପିଲାଟି ସହପାଠୀଙ୍କ ଗହଣରେ ପ୍ରତିଜ୍ଞା କରୁଛି, ବଡ଼ପାଟିରେ, ବୋଧହୁଏ ପୋଲିସ୍ ଲୋକଙ୍କୁ ଶୁଣାଇବା ପାଇଁ, ''ମୁଁ ନିଶ୍ଚୟ ଉଡ଼ାଜାହାଜ

ଚଲାଇଁ ଏହି ପଡ଼ିଆକୁ ଆସିବି । ଦେଖିବି, କେଉଁ ପୋଲିସ୍ ମୋତେ ଅଟକାଇ ପାରିବ ?''

ସେ ଦିନର ସେହି ପିଲା ଦୁହେଁ ହେଉଛନ୍ତି, ଓଡ଼ିଶା ପ୍ରସିଦ୍ଧ ଖେଳଓ୍ୟାର୍ଡ଼ ଶ୍ରୀ ଜର୍ଜ ପଟ୍ଟନାୟକ ଓ ଭାରତ ପ୍ରସିଦ୍ଧ ରାଜନୀତିଜ୍ଞ ଶ୍ରୀ ବିଜୟାନନ୍ଦ ପଟ୍ଟନାୟକ ବା ବିଜୁ ପଟ୍ଟନାୟକ ।

ପିଲାଙ୍କ ଭବିଷ୍ୟତ ମନ୍ତ 'ମାଟି ହେବେ କି ମଣିଷ ହେବେ'-ତାହା ବର୍ତ୍ତମାନ ସ୍ୱର୍ଗରେ ରହି ବୁଝିପାରୁଥିବେ ।

ପରେ ଜାତୀୟ କବି ବୀରକିଶୋର ଦାସଙ୍କଠାରୁ ଗୋଟିଏ ଗପ ଶୁଣିଲି ।

ପଣ୍ଡିତ ଗୋପବନ୍ଧୁ ଦାସ ବନ୍ୟାବିପନ୍ନ ଅଞ୍ଚଳକୁ ଚୂଡ଼ା ଚାଉଳ ଧରି ଡଙ୍ଗାରେ ଯାଉଥିଲେ, ସଙ୍ଗରେ କେତେଜଣ ତରୁଣ ଛାତ୍ର-ସ୍ୱେଚ୍ଛାସେବକ ।ପୂର୍ଣ୍ଣଗର୍ଭା ନଦୀ, ସ୍ରୋତର ବେଗ ପ୍ରବଳ, ଉପରେ ଜୋର ପବନ ଓ ତୁହାକୁ ତୁହା ବର୍ଷା । ପରମୁହୂର୍ତ୍ତରେ ଅସହ୍ୟ ଟାଣ ପାଣିଖରା ।

ଗୋପବନ୍ଧୁଙ୍କ ମୁଣ୍ଡକୁ ଖରା, ବର୍ଷାରୁ ରକ୍ଷାକରିବାପାଇଁ ଜଣେ ସ୍ୱେଚ୍ଛାସେବକ ପଛରେ ବସି ଛତାଟିଏ ଧରିଥାଏ । ପବନ ଜୋରରେ ଖୋଲାଛତାଟି ନିମିଷକ ମଧ୍ୟରେ ଉଡ଼ିଯାଇ ପାଣିରେ ପଡ଼ିଲା । ସ୍ରୋତ ମୁହଁରେ ଭାସି ଭାସି ଦୂରକୁ ଚାଲିଗଲା । ଡ଼ଙ୍ଗା ଆରୋହୀମାନଙ୍କର ଏହା ହୃଦ୍‌ବୋଧ ହେବା ପୂର୍ବରୁ ଜଣେ ତରୁଣ ପାଣିକୁ ଡେ଼ଇଁ ପଡ଼ିବାର ଦେଖାଗଲା । ସେ ବେଗରେ ପହଁରି ପହଁରି ଯାଇ ଛତାଟି ଧରିଲା ଏବଂ ସ୍ରୋତ କାଟି ଡ଼ଙ୍ଗା ପାଖକୁ ଆସିଲା । ସମସ୍ତ ଆରୋହୀଙ୍କର ଚକ୍ଷୁ ଅପଲକ, ଜିଭ ଅସ୍ଥିର, ଚିନ୍ତା କମ୍ପମାନ । ଡ଼ଙ୍ଗା ପାଖ ହୋଇଯିବାରୁ ସ୍ୱେଚ୍ଛାସେବକମାନେ ତାକୁ ଧରି ଉପରକୁ ଉଠାଇ ଆଣିଲେ । ପଣ୍ଡିତ ଗୋପବନ୍ଧୁଙ୍କ ଚକ୍ଷୁର ଲୋତକଧାର ଅମାନିଆ ହୋଇ ଉଠୁଥାଏ ।

ସ୍ୱେଚ୍ଛାସେବକମାନେ ଧରାଧରି କରି ଉପରକୁ ଟେକି ଆଣିଲେ । ପିଲାଟିର ମୁହଁରେ ତୃପ୍ତିର ହସ, ମାତ୍ର ପଣ୍ଡିତ ଗୋପବନ୍ଧୁଙ୍କ ମୁହଁ କ୍ରୋଧରେ ଜରଜର । ରାଗ ତମ ତମ ସ୍ୱରରେ ନାମ ପଚାରିଲେ ।

''ବିଜୟାନନ୍ଦ ପଟ୍ଟନାୟକ''

ପୁଣି ପ୍ରଶ୍ନ- ''କାହା ପୁଅ ?''

''ଲକ୍ଷ୍ମୀନାରାୟଣ ପଟ୍ଟନାୟକ ।''

ବନ୍ଧୁଙ୍କ ପୁଅ ଜାଣି ମୁହୂର୍ତ୍ତେ ଥକ୍କା ମାରି ଚାହିଁ ରହିଲେ ପଣ୍ଡିତ ମହାଶୟ ।

ଶାନ୍ତ କଣ୍ଠରେ ଅଥଚ ରାଗତମ ସ୍ୱରରେ ପଚାରିଲେ, ''ମୋ ସାଙ୍ଗରେ ଆସିଛ, ମୋ ଦାୟିତ୍ୱରେ ବାପା ଛାଡ଼ି ଦେଇଛନ୍ତି । ଏ ଯେଉଁ ସାହସ କଲ, ଯଦି କିଛି ଦୁର୍ଘଟଣା ଘଟିଯାଇଥାନ୍ତା, ମୁଁ ବାପାଙ୍କୁ କିପରି ମୁହଁ ଦେଖାଇଥାନ୍ତି ? କି କୈଫିୟତ ଦେଇଥାନ୍ତି ? ସାମାନ୍ୟ ଛତାଟା ପାଇଁ ।''

ସଙ୍ଗେ ସଙ୍ଗେ ଉତ୍ତର ମିଳିଲା ସେହି ହସ ହସ ମୁହଁରେ, ସାମାନ୍ୟ ଛତା ନ ହୋଇ ଯଦି ଆମ ଭିତରୁ କେହି ଖସି ପଡ଼ିଥାନ୍ତା ? ଯଦି ଆପଣ ?'

ସବୁ କ୍ରୋଧ ପାଣିଫାଟି ଗଲା । ସମସ୍ତେ ନିର୍ବାକ ।

ବାମ୍ଫୀରୁ ପାଣି ବାଲ୍‌ଟି ଉଠାଉଥିବା ସେହି ଅକ୍ଲାନ୍ତ ପରିଶ୍ରମୀ ପିଲାର ସାହସ ତାଙ୍କୁ ଆଉଥରେ ଦେଖିବା ପାଇଁ ମନକୁ ଉତ୍ତଳ କଲା । ସେତେବେଳକୁ ଲକ୍ଷ୍ମୀନାରାୟଣ ବାବୁ ପାରଳାଖେମୁଣ୍ଡିର ଦେୱାନ । ଆନନ୍ଦ ଭବନରେ ଆଉ କେହି ପରିଚିତ ନାହାନ୍ତି । କି ଉଦ୍ଦେଶ୍ୟରେ ଯିବି, କଅଣ ବା ପରିଚୟ ଦେବି ?

ତଥାପି ତୁଳସୀପୁର ଗଲି । ଆନନ୍ଦଭବନ ହତା ଭିତରେ ପଶିଲି । ଆଉ ସାହସ ହେଲାନାହିଁ - ଫେରି ଆସିଲି ।

ଡ଼ାକ୍ତର ଜର୍ଜ ପଟ୍ଟନାୟକ ମୋର ଏଇ ଅନୁଭୂତି କାହାଠାରୁ ଶୁଣି ଥରେ ଫୋନ୍ କରିଥିଲେ । କହିଲେ, ''ସେତେବେଳେ ବାପା ଆମକୁ ଏଭଳି କଡ଼ା ଶାସନରେ ପାଳି ନ ଥିଲେ ଆଜି କଅଣ ଆମେ ଏ ସ୍ତରକୁ ଆସିଥାନ୍ତୁ ?''

ପଣ୍ଡିତ ଗୋପବନ୍ଧୁଙ୍କ ପ୍ରତିମୂର୍ତ୍ତି ସ୍ଥାପନ ପାଇଁ ଚାନ୍ଦା ସଂଗ୍ରହ କରାଯାଉଥାଏ । ସେ୍ ପର୍ଯ୍ୟନ୍ତ କେବଳ ଦୁଇଜଣ ବିଶିଷ୍ଟ ବଦାନ୍ୟ ବ୍ୟକ୍ତି ପ୍ରତ୍ୟେକେ ଏକ ହଜାର ଟଙ୍କା ଦାନର ପ୍ରତିଶ୍ରୁତି ଦେଇଥାନ୍ତି । ବାକି ପାଞ୍ଚ ଦଶ ଟଙ୍କାରୁ ଆରମ୍ଭ କରି ଶହେଟଙ୍କା ପର୍ଯ୍ୟନ୍ତ ପନ୍ଦର ହଜାର ଟଙ୍କା ସଂଗ୍ରହ ହୋଇଥାଏ । ପରିକଳ୍ପନାଥାଏ, ଯେକୌଣସି ମତେ ପଚିଶ ହଜାର ଟଙ୍କା ସଂଗ୍ରହ କରି

କଟକରେ ଗୋଟିଏ ମାର୍ବଲ ପ୍ରତିମୂର୍ତ୍ତି ରଖାଯିବ ।

କଲିକତା ଯାଇ ବିଜୁବାବୁଙ୍କୁ ତାଙ୍କ ଅଫିସ୍‌ରେ ଦେଖାକଲୁ । ଖୁସି ହେଲେ, ଉତ୍ସାହ ଦେଲେ । ଚାନ୍ଦାଖାତା ମୂଳରୁ ଶେଷପର୍ଯ୍ୟନ୍ତ ଦେଖିନେଲା ପରେ ଖାତାରେ କଅଣ ଲେଖିଲେ । ତା'ପରେ ଖାତାଟି ବଢ଼ାଇ ଦେଉ ଦେଉ ପରାମର୍ଶଦେଲେ,ପ୍ରତିମୂର୍ତ୍ତିଟି ଯେପରି ଦୁର୍ଭିକ୍ଷ ପ୍ରପୀଡ଼ିତ ଜରାଜୀର୍ଣ୍ଣ ନ ହୁଏ ।

ଖାତାରେ ତାଙ୍କର ଦାନର ପରିମାଣ ଦେଖିନେଇ ଉତ୍ତର ଦେଲି, ଆମର କଳ୍ପନା ଥିଲା, ଗୋଟିଏ ମାର୍ବଲ ମୂର୍ତ୍ତି; କିନ୍ତୁ ବ୍ରୋଞ୍ଜ ମୂର୍ତ୍ତି ତିଆରି କରାଯିବ ।

ତାଙ୍କର ଦାନଥିଲା ପାଞ୍ଚହଜାର ।

ତାହାପରେ ହିନ୍ଦୁସ୍ଥାନ ମଟରସ୍‌ର କଲିକତା ଅଫିସ୍‌କୁ ଯାଇଥିଲୁ । ଖାତାର ସମସ୍ତ ପୃଷ୍ଠା ଦେଖିସାରି କର୍ମକର୍ତ୍ତା କହିଲେ ''ଓଡ଼ିଶାର ବିରଳାତ ପାଞ୍ଚହଜାର ଟଙ୍କା ଦେଲେଣି । ଆମେ ଆଉ କେତେ ଦେବୁ ?''

'ଓଡ଼ିଶାର ବିରଳା' କଥାଟା ଶୁଣି ଗର୍ବରେ ଅନ୍ତର ଫୁଲି ଉଠିଲା। ଉତ୍ତର ଦିଆଗଲା, ''ଭାରତର ବିରଳାଙ୍କଠାରୁ ନିଶ୍ଚୟ ତାଂଠାରୁ ଅଧିକ ଆଶାକରିବୁ ।''

ହସି ହସି ସେ ସେହି ପାଞ୍ଚହଜାର ଟଙ୍କା ଲେଖିଥିଲେ ।

ପରିକଳ୍ପନା ପଚିଶ ହଜାର ଟଙ୍କା ସ୍ଥାନରେ ମୋଟ ପଇଁଚାଳିଶ ହଜାର ସଂଗ୍ରହ କରିବାକୁ ସମିତି ସମର୍ଥ ହୋଇଥିଲା । ତା ଫଳରେ କଟକରେ ଗୋଟିଏ ବ୍ରୋଞ୍ଜର ଏବଂ ପୁରୀ ଓ ସମ୍ବଲପୁରରେ ଗୋଟିଏ ଗୋଟିଏ ମାର୍ବଲ ପଥରର ପ୍ରତିମୂର୍ତ୍ତି ସ୍ଥାପନ କରାଯାଇଛି । ପ୍ରଥମ ପାଞ୍ଚହଜାର ଟଙ୍କା ଦାନର ପ୍ରେରଣା ହିଁ ଏହା ମୂଳରେ ଅଛି ବୋଲି ନିଶ୍ଚିତ ବିଶ୍ୱାସ ।

# ବ୍ୟାଟରୁ ଅବ୍ୟାଟ

## ଜଷ୍ଟିସ୍ ହରିହର ମହାପାତ୍ର

ବିଜୁ ପଟ୍ଟନାୟକ ଅଖ୍ୟାତ ନଥିଲେ କେବେ । ପ୍ରଖ୍ୟାତ ସେ ହୋଇନାହାନ୍ତି, ବୃତ୍ତି ଛାଡ଼ି ବ୍ରତ ଗ୍ରହଣ କରି । ବୃତ୍ତିରେ (ପାଇଲଟ୍) ଦକ୍ଷତା ଥିଲା, ସାହସର ପ୍ରଶଂସା ପାଇଥିଲେ । ସାଧାରଣ କ୍ଷେତ୍ରକୁ ସେ ଆସିଲେ, ଖଦଡ଼ ମୁଣି, ଖଦଡ଼ ଟୋପିଚିହ୍ନିତ କଂଗ୍ରେସ କର୍ମୀ ବା ନେତା ରୂପେ ନୁହେଁ, ଓଡ଼ିଶାରେ ପ୍ରଥମ ଶିଳ୍ପ ଉଦ୍ୟୋଗୀ ହୋଇ, ଚୌଦ୍ୱାରରେ ଲୁଗାକଳ, ଓଡ଼ିଶା ଟେକ୍ସଟାଇଲ ମିଲ୍ ବସାଇବା ପାଇଁ । ସେତେବେଳର ତାଙ୍କର ପ୍ରାଣପାତ ଉଦ୍ୟମ ଯେ ଦେଖିଛି, ସେ ଜାଣିଥିବ ଆତ୍ମବିଶ୍ୱାସୀ କାହାକୁ କହନ୍ତି । ସେ ଲୋକ ଯେଉଁ କ୍ଷେତ୍ରକୁ ଯିବେ, ସାଫଲ୍ୟ ପାଇଁ ଅନ୍ୟମାନଙ୍କୁ ଆକର୍ଷଣ କରିବେ ନିଶ୍ଚିତ । ଓ.ଟି.ଏମ୍. ସାଙ୍ଗକୁ ଆସିଲା କଳିଙ୍ଗ ଟିଉବସ୍ । ଆଉ ଆସିପାରିଥାନ୍ତା ବହୁ କିଛି, ରାଜନିତୀର ସମ୍ମୋହନକୁ ସେ ଏଡ଼ାଇ ପାରିଥିଲେ । ଓଜନଦାର ଶିଳ୍ପପତିଭାବେ ସେ ଟକ୍କର ଦେଇଥାନ୍ତେ ଅନ୍ୟ ରାଜ୍ୟ ସଙ୍ଗେ । ସେତେବେଳର ଏଇ ଦୂରଦର୍ଶୀ କାର୍ଯ୍ୟ ତାଙ୍କୁ ଓ ତାଙ୍କ ଦେଶ କଳିଙ୍ଗକୁ ଦେଶବାହାରେ ପରିଚିତ କଲା । କଳିଙ୍ଗ ଫାଉଣ୍ଡେସନ୍ ନାମରେ ପାଣ୍ଠି ଗଚ୍ଛିତ ରଖି ପ୍ରତିବର୍ଷ ଆନ୍ତର୍ଜାତିକ ସ୍ତରରେ ସରଳ ଭାଷାରେ ସାଧାରଣ ଶିକ୍ଷିତ ଲୋକ ଜାଣିବାଯୋଗ୍ୟ ବୈଜ୍ଞାନିକ ବିଷୟ ଲିଖିତ ଆକାରରେ ପ୍ରକାଶ ପାଇଁ ଥିବା ପୁସ୍ତକରୁ ବାଛି ପୁରସ୍କାର ଦେବାର ସ୍ଥାୟୀ ବ୍ୟବସ୍ଥା କଲେ । ତାହା ଏକ ମର୍ଯ୍ୟାଦାବନ୍ତ ସ୍ଥାନ ପାଇଛି ଓ ପାଉଥିବ । ଚିନ୍ତା ଓ କାର୍ଯ୍ୟରେ କ୍ଷୁଦ୍ରତା ତାଙ୍କର ନଥାଏ । ସେ ଜଣେ(futurist) ଆସ୍ଥାବାନ ଲୋକ । ପିଚ୍ଛିଳପଥ ରାଜନୀତିକୁ ସେ ଆସିଥିଲେ, ବୋଧହୁଏ ଅଧିକ ଆଶାରେ, ନିଜପାଇଁ ନୁହେଁ ଦେଶପାଇଁ । ପାଣି ଭଉଁରିରୁ ଉଠି ପାରିବା ଏ ପର୍ଯ୍ୟନ୍ତ ସମ୍ଭବ ହୋଇ ନାହିଁ । ତାଙ୍କ ଶକ୍ତି, ସାମର୍ଥ୍ୟର ଅପବ୍ୟୟ ହୋଇଛି ଏବଂ ଦେଶ ବଞ୍ଚିତ ହେଲା ବହୁ ସମ୍ଭାବନାରୁ । ଶାସନ ରାଜନୀତି ମତିମାନ,

ଶକ୍ତିବାନଙ୍କ ପାଇଁ ନୁହେଁ । ବରଂ ଅନ୍ତରାଳରୁ ଚିନ୍ତା, କୌଶଳ ସୂଚାଇ ତାକୁ ସଫଳ କାମ କରିବାରେ ତାଙ୍କର ସାର୍ଥକତା ହୋଇଥାନ୍ତା । କଳଙ୍କରେ ବୃଥା ଶକ୍ତିକ୍ଷୟ, କାଳ ନଷ୍ଟ । ପାରାଦ୍ୱୀପ, ଏକ୍ସପ୍ରେସ୍ ହାଇୱେ, ମିଗ୍ କାରଖାନା ଇତ୍ୟାଦି ଶାସନକୁ ଆସି ବିଜୁ ପଟ୍ଟନାୟକଙ୍କ ନେତୃତ୍ୱର ଚିହ୍ନ ବୋଲି କୁହାଯାଏ । କିନ୍ତୁ ତା ତୁଳନାରେ ଶିଳ୍ପ କ୍ଷେତ୍ରରେ ଯାହା ସମ୍ଭାବନା ଥିଲା ବହୁ ଅଧିକ । ଚାଳିଶ ବର୍ଷ ପୂର୍ବରୁ କୋଇଲାରୁ ପେଟ୍ରୋଲ ବାହାରିବା କଥା ଦେଶରେ ଶୁଣାଯାଇ ନଥିଲା । ସେବେ ସେ କୌଶଳ ଶିଖିବା ପାଇଁ ତିନି ଜଣ କୃତବିଦ୍ୟ ଓଡ଼ିଆ ଯୁବକଙ୍କୁ ସେ ଫ୍ରାନ୍ସକୁ ପଠାଇଥିଲେ । ଭୁବନେଶ୍ୱରକୁ ଯିବା ପାଇଁ କାଠଯୋଡ଼ି, କୁଆଖାଇ ପୋଲ ହେବାପୂର୍ବରୁ, ଓଡ଼ିଶାରେ ବିମାନ ଚଳାଚଳର ନାମଗନ୍ଧ ନଥିଲାବେଳେ, ଉଡାଜାହାଜ ଚଳା ଶିଖିବା ପାଇଁ ଫ୍ଲାଇଙ୍ଗ କ୍ଲବ ଭୁବନେଶ୍ୱରରେ ଆରମ୍ଭ କରିଥିଲେ ବେସରକାରୀ ଚେଷ୍ଟାରେ । ଭାରତବର୍ଷର ପ୍ରଥମ ଲୁହା ପାଇପ ତିଆରି ଆରମ୍ଭ ହୋଇଗଲା ତାଙ୍କଦ୍ୱାରା, କଳିଙ୍ଗ ଇଣ୍ଡଷ୍ଟ୍ରିଜ୍ ଥୋଇଲେ ପ୍ରାୟ ଶୂନ୍ୟେ ଶୂନ୍ୟେ । ଏବକୁ ପୁଞ୍ଜି ମିଳୁଛି ଅନେକ ଅର୍ଥଯୋଗାଣ ସଂସ୍ଥାରୁ । ବ୍ୟାଙ୍କରୁ ମଧ୍ୟ । ସେ ଶିଳ୍ପ ଆରମ୍ଭ କଲାବେଳେ ସେ ସୁବିଧା ତାଙ୍କୁ ମିଳୁନଥିଲା । ତାଙ୍କର ସେ ଦିଗର ଓ ସେତେବେଳର ଚାତୁରି, ଖଟଣି, ଦମ୍ଭ ଅତୁଳନୀୟ ଥିଲା । ତାଙ୍କ ସଙ୍ଗେ ଡ଼ଙ୍ଗାରେ ମହାନଦୀ ପାରହୋଇ ଓ.ଟି.ଏମ୍. ଅଂଶୀଦାର ମିଟିଙ୍ଗରେ ଯୋଗଦେବା ଅନେକ ସମୟରେ ମନେପଡ଼େ, ଆଶାବାଦର ପାବଚ୍ଛ ରୂପରେ । ପାଇଲଟ୍ ଭାବେ ତାଙ୍କ କୃତିତ୍ୱ ଥିଲା ଅସାଧାରଣ । ସାହସ ଓ କୌଶଳରେ ପରାକାଷ୍ଠା ଦେଖାଇଥିଲେ ଶ୍ରୀନଗରରୁ ମହାରାଜା ହରିସିଂହ, ଇଣ୍ଡୋନେସିଆରୁ ସିଉକର୍ଣ୍ଣଙ୍କୁ ଉଦ୍ଧାର କରି । ବହୁ ସମ୍ଭାବନାର ଦ୍ୱାର ରୁଦ୍ଧ କରି ରାଜନୀତିରେ କାରାରୁଦ୍ଧ ହେବାରେ ତାଙ୍କର ଯେତେ କ୍ଷତି, ଦେଶର ତାଠାରୁ ବେଶିକ୍ଷତି ସବୁ ଦିଗରୁ ସବୁ ଦିନକୁ ।

# ବିଜୁ: ଧନ୍ୟ ଜୀବନ: ଏକ ସମ୍ଭ୍ରାନ୍ତ କଳିଙ୍ଗ

**ରାଜକିଶୋର ରାୟ**

ଉତ୍କଳ ଗୌରବ ମଧୁସୂଦନ ଓ ଡ଼କ୍ଟର ହରେକୃଷ୍ଣ ମହତାବଙ୍କ ପରେ ଓଡ଼ିଶାର ଜନ-ଜୀବନକୁ ଓଡ଼ିଆତ୍ୱର ସଂଜୀବନୀ ମନ୍ତ୍ରରେ ଦୀକ୍ଷିତ ଓ ଅଭିମନ୍ତ୍ରିତ କରିଥିବା ଜଣେ ପ୍ରାଣସ୍ଫୂର୍ତ୍ତ ଅକୃତ୍ରିମ ଉତ୍କଳୀୟଙ୍କୁ ଯଦି ଚିହ୍ନିତ କରିବାକୁ କୁହାଯାଏ, ତେବେ ଏ ଦେଶବାସୀ ବିଜୁ ପଟ୍ଟନାୟକଙ୍କ ପ୍ରତି ସଂକେତ ଦେବେ ଏବଂ ବୁଝାଇ ଦେବେ ଯେ ଆମେ ସମସ୍ତେ କୌଳିନ୍ୟରେ, ବସବାସରେ ଓଡ଼ିଆ ପିତୃମାତୃଙ୍କର ସନ୍ତାନ ହେଲେ ବି ଓଡ଼ିଆର ବୀର୍ଯ୍ୟ, ସୌର୍ଯ୍ୟ, ସ୍ୱାଭିମାନକୁ ତିଳ ତିଳ କରି ହୃଦୟରେ ଧରି ଏକ ନିଃସଙ୍ଗ ପଥିକ ଯେ ଶେଷ ପାନ୍ଥଶାଳାକୁ ଧୀରେ ଗତି କରିପାରିଛି, 'କିଛି କରି ନ ପାରିବାର କ୍ଷୋଭରେ' ସେହି ବିଜୁ ପଟ୍ଟନାୟକ: ଏକ ଧନ୍ୟ ଜୀବନ, ଏକ ସଂଭ୍ରାନ୍ତ କଳିଙ୍ଗ ପ୍ରତି ମୁଁ ତାଙ୍କର ୭୨ତମ ଜୟନ୍ତୀ ଅବସରରେ ଅଭିନନ୍ଦନ ଜ୍ଞାପନ କରୁଛି ।

"ବିଜୁ" ଏକ ଶ୍ରଦ୍ଧାନାମ । କିନ୍ତୁ ବିଜୟାନନ୍ଦ ପଟ୍ଟନାୟକ ଥିଲେ ମୋଠାରୁ ଦୁଇବର୍ଷ ସାନ ଛାତ୍ର; ରେଭେନ୍‌ସା କଲେଜରେ । ଅଫୁରନ୍ତ ପ୍ରାଣସ୍ଫୂର୍ତ୍ତ ଏହି ଯୁବକକୁ ଆମେ ଦେଖୁ ଗୋଟିଏ ନିର୍ଦ୍ଦିଷ୍ଟ ଦିବସରେ ମଥାରେ ଧଳା ରୁମାଲଟିଏ ବାନ୍ଧି ସୂର୍ଯ୍ୟାସ୍ତ ବେଳକୁ ରେଭେନ୍‌ସା କଲେଜ କ୍ରୀଡ଼ାଙ୍ଗନରେ ଗ୍ରହଣ କରୁଥାନ୍ତି ଟ୍ରଫି, ସିଲ୍‌ଡ୍ ଆଉ କେତେ ଯେ ମେଡ଼େଲ୍, କପ୍ ପ୍ରଧାନ ଅତିଥିଙ୍କଠାରୁ ଅଜସ୍ର ହାତତାଳି ଭିତରେ । ସୁଦୀର୍ଘ ତନୁ, ଉନ୍ନତ ତୀକ୍ଷ୍ଣ ନାସିକା, ପ୍ରତି ପଦକ୍ଷେପରେ ଆତ୍ମବିଶ୍ୱାସର ଏଇ ଯୁବକ, ଶହ ଶହ ଛାତ୍ରଙ୍କ ଭିତରେ ବ୍ୟକ୍ତିତ୍ୱର ଝଲକରେ ବାରିହୋଇ ଯାଉଥିବା ଏକକ ଅନ୍ୟାନ୍ୟ ସାଧାରଣ ଏହି 'ବିଜୁ' ଆଜି କାତର କଣ୍ଠରେ କହୁଛନ୍ତି, "ଆଉ ଗୋଟିଏ ଚାନସ୍ ପ୍ଲିଜ୍ ! ଓଡ଼ିଶାକୁ ନିଉୟର୍କ କରିଦେବି, ନଚେତ୍ ନିଜେ ନିଉୟର୍କ ଚାଲିଯିବି ।"

ଏ ଥିଲା ୧୯୬୦ ମସିହା ପୀଠଭୂମି ଉପରେ ଦଣ୍ଡାୟମାନ ଓଡ଼ିଶା ରାଜନୀତିର ସବୁଠାରୁ ଚର୍ଚ୍ଚିତ ନେତା ଭାବରେ ବିଜୁ ପଟ୍ଟନାୟକଙ୍କର ୧୯୮୦ ମସିହା ପର୍ଯ୍ୟନ୍ତ ଆତ୍ମକଥନ: ମତେ ବାରମ୍ବାର ଚାନସ୍ ଦିଅ ଏବଂ ଏ ଚାନସ୍‌କୁ ଅବ୍ୟାହତ ରଖ, ତେବେ ମୁଁ ଓଡ଼ିଶାକୁ ବିଶ୍ୱ ଦରବାରରେ ଉପସ୍ଥାପିତ

କରିବି; ତାର କଳା, ସାହିତ୍ୟ, ସ୍ଥାପତ୍ୟ, ଭାସ୍କର୍ଯ୍ୟ ଏବଂ ସର୍ବୋପରି ଓଡ଼ିଆର ବୀରତ୍ୱ, ସୌର୍ଯ୍ୟ• ଓ ସ୍ୱାଭିମାନକୁ ପରଖ କରିବାକୁ ଆହ୍ୱାନ ଦେବି ଏବଂ କରିବି ଗୋଟାଏ କୋଣାର୍କ କଅଣ ଶତ କୋଣାର୍କ ନିର୍ମାଣ କରିବାପାଇଁ ଓଡ଼ିଆ ରକ୍ତରେ ଏବେ ବି ସୃଜନୀ ଶକ୍ତିର ପ୍ରବଳ ଉଚ୍ଛ୍ୱାସ ରହିଛି; କେବଳ ସ୍ୱାମୀ ବିବେକାନନ୍ଦଙ୍କ ବାଣୀ ଅନୁରୂପ ବାଣୀ ଝଂକୃତ ସ୍ୱର "ମାଭୈଃ, ଉତ୍ତିଷ୍ଠିତ ଜାଗ୍ରତ ପ୍ରାପ୍ୟ ବରାନ୍ ନିବୋଧତ ।"

ବିଜୁଙ୍କ ଜୀବନ ବହୁ ବିରୋଧାତ୍ମକ ଘଟଣା ପରମ୍ପରରେ ବିଭକ୍ତ । ଏଥିରେ ସୀମାକରଣ, ସହାବସ୍ଥାନ ଯେତେ ନାହିଁ, ବିଭକ୍ତିକରଣ ଓ ସଂଘର୍ଷ-ପ୍ରସୂତ ସାମୟିକ ମନୋବିକଳନର ପ୍ରଚ୍ଛନ୍ନ ପ୍ରତିବନ୍ଧକ ଦେଖାଯାଏ । ବିଜୁ ଏକ ଆଗ୍ନେୟଗିରିର ବିସ୍ଫୋରଣ ଭଳି ଓଡ଼ିଆର ସର୍ବ ଅଭିମାନ ଓ ଦର୍ପକୁ ପ୍ରୋଜ୍ଜ୍ୱଳ କରି ଓଡ଼ିଆ ଜାତିକୁ ବିଶ୍ୱରେ ପରିଚିତ କରିବା ମାନସରେ ସଦାସର୍ବଦା ଦୁର୍ଦ୍ଦାନ୍ତ ଆବେଗରେ ଯେତେବେଳେ ସ୍ପନ୍ଦିତ ହୁଅନ୍ତି, ସେତେବେଳେ ସେ କୌଣସି କାର୍ଯ୍ୟର ପ୍ରଥାନିର୍ଦ୍ଦିଷ୍ଟ ସମୟାନୁମୋଦିତ ବିଳମ୍ବକୁ ସହ୍ୟ କରନ୍ତି ନାହିଁ । ସେ ଏକ ସ୍ଫୁଲିଙ୍ଗ, ଜନ୍ମ ତାରି ଦାହିକା ଶକ୍ତିରେ ମାତ୍ର କର୍ମପ୍ରବଣତାରେ ତଥା ଓଡ଼ିଆତ୍ୱର ଗୁଣଗାନ କରିବାରେ ସେ ପ୍ରଚଣ୍ଡ ଦାବାନଳ । ନମ୍ର ଓ କଠୋର, ଏ ଯୁଗପତ୍ ଚାରିତ୍ରିକ ବ୍ୟଞ୍ଜନ ତାଙ୍କୁ କେତେବେଳେ ଅସହିଷ୍ଣୁ କରେ, କେତେବେଳେ ଶାନ୍ତି ନମ୍ର କରେ । ସେ ବିଶ୍ୱାସ କରନ୍ତି, ମୃତ୍ୟୁର ଛାୟା ଶୀତଳ ସ୍ପର୍ଶ ସମସ୍ତଙ୍କ ପଛେ ପଛେ ଅଛି, ଜୀବନ ସରି ଆସୁଛି, କାମ କେତେ ସୁଦୂରପଥ ଲମ୍ବିଯାଇଛି, ହୁଏତ ଶେଷ ପାନ୍ଥଶାଳାର ପ୍ରଦୀପ ଦେଖାଗଲାଣି, କିନ୍ତୁ ଓଡ଼ିଶା ଓ ଓଡ଼ିଆଙ୍କ ପାଇଁ କିଛି ମୁଁ କଲି କି ? ବିଜୁଙ୍କ କଥା ପଢ଼ିଲେ, ହଠାତ୍ ତାଙ୍କର ସେହି ବିଶ୍ୱବିଖ୍ୟାତ ଦୁର୍ଦ୍ଧର୍ଷ ଦୁଃସାହସିକ ବୈମାନିକ ଜୀବନ ଉଦ୍‌ଭାସିତ ହୋଇଯାଏ । ଇଣ୍ଡୋନେସିଆର ରାଷ୍ଟ୍ରପତି ଡ଼କ୍ଟର ସୁକର୍ଣ୍ଣୋ ଓ ତାଙ୍କ ମନ୍ତ୍ରୀମଣ୍ଡଳର ସଦସ୍ୟମାନଙ୍କର ଜୀବନ ସେ ରକ୍ଷା କରିଥିଲେ । ବହୁବାର ସେ କାରାବରଣ କରିଛନ୍ତି, ଜାତୀୟ ସଂଗ୍ରାମରେ ଜଣେ ସତ୍ୟ ସୈନିକ ଭାବରେ । ଓଡ଼ିଆ କିମିତି ସାରା ଭାରତବର୍ଷରେ ଶ୍ରେଷ୍ଠ ସ୍ଥାନ ଅଧିକାର କରିବ, ତାର ଅର୍ଥନୈତିକ ସଂସ୍ଥାନ କିପରି ଶିଳ୍ପୋଦ୍ୟୋଗ ଭିତରେ ଉନ୍ନତ ହେବ, ଦାରିଦ୍ର୍ୟ କଷାଘାତରେ ସଦା ମୃତକଳ୍ପ ଅବସ୍ଥାରେ ଥିବା

ଲକ୍ଷ ଲକ୍ଷ ଓଡ଼ିଆ ବିଶେଷରେ ଆଦିବାସୀମାନଙ୍କର ପଶୁବତ୍ ଜୀବନର କିପରି ସମାପ୍ତି ଘଟିବ, ଏସବୁ ଚିନ୍ତା ତାଙ୍କୁ ଅହରହ ବ୍ୟଥିତ କରେ । ଓଡ଼ିଆ ଆଜି ବି ଦାଦନ ଶ୍ରମିକ, ଆଜି ବି ଲକ୍ଷ ଲକ୍ଷ ସଂଖ୍ୟାରେ ଭାରତବର୍ଷର ବିଭିନ୍ନ ଉନ୍ନତ ରାଷ୍ଟ୍ରମାନଙ୍କରେ କୁଲିଗିରି ଓ ଦାସାନୁଦାସ ବୃତ୍ତିରେ ହିନମନ୍ୟତାର ଶିକାର ହେଉଛି, ଏ ଯନ୍ତ୍ରଣା ତାଙ୍କୁ ଅସ୍ଥିର କରେ ।

ବିଜୁ ଓଡ଼ିଆର ଶିଳ୍ପ ବିପ୍ଳବର ପ୍ରଥମ ନିୟାମକ, ଚିନ୍ତକ ଓ ଅଗ୍ରଦୂତ। ଉତ୍କଳ ଗୌରବ ମଧୁସୂଦନଙ୍କ ଅନ୍ତେ ବିଜୁ ହିଁ ଚିନ୍ତା କଲେ ଏ ଜାତିର ମୋକ୍ଷ ରହିଛି ଶିଳ୍ପାୟନରେ । ସେହି ପ୍ରଥମ ଶିଳ୍ପପତି ଓଡ଼ିଶାରେ, ତାଙ୍କ ସମକ୍ଷରେ ଉତ୍କଳ ଜନନୀଙ୍କ ମଣି-ମାଣିକ୍ୟ ଗନ୍ତାଘର ପରିପୂର୍ଣ୍ଣ । କି ଖଣି, କି ଶୈଳ, ଅରଣ୍ୟ ସାଗର, ନଦୀ ସବୁଥିରେ ବିଭବ, କେବଳ ଉନ୍ମୋଚନ କଲେ ସେ ଅବଗୁଣ୍ଠନକୁ ତିନିକୋଟି ଓଡ଼ିଆ ଅର୍ଥନୈତିକ ପ୍ରଗତିର ମଧ୍ୟସ୍ଥଳକୁ ଚାଲି ଆସିବେ । ପ୍ରକୃତି କାର୍ପଣ୍ୟ କରିନାହିଁ ଉତ୍କଳକୁ । କେବଳ ଏ ଜାତିର ହୀନମନ୍ୟତା, ଆଳସ୍ୟ, ଶ୍ରମ କାତରତା ଓ ସର୍ବୋପରି ଆତ୍ମବିଶ୍ୱାସର ଅଭାବ, ତହିଁ ସଂଙ୍ଗେ ସଂଙ୍ଗେ ଏ ସବୁର ଉଦ୍‌ବୋଧନକାରୀ ବଳିଷ୍ଠ ନେତୃତ୍ୱର ପଶ୍ଚାତ୍ ଭୂମିକା, ଏ ଜାତିକୁ ଏଯାଏ ଅନ୍ତସାରଶୂନ୍ୟ କରି ରଖିଛି । ଏହାକୁ ହଟାଇବାକୁ ପଡ଼ିବ, ଏହାହିଁ ବିଜୁଙ୍କର ଜୀବନ-ମନ୍ତ୍ର ।

ତାଙ୍କର ରାଜନୈତିକ ଜୀବନ ଆଲୋକ ଅନ୍ଧକାରର ଘୂର୍ଣ୍ଣାୟମାନ ଦିଗକାରଣୀ ସ୍ତମ୍ଭ । ୧୯୬୧ ନିର୍ବାଚନରେ କଂଗ୍ରେସ ନେତା ଭାବରେ ଏବଂ ୧୯୭୭ରେ ଜନତା ଦଳର ନେତା ଭାବରେ ସେ ଓଡ଼ିଶାବାସୀଙ୍କର ବିପ୍ଳବ ସମର୍ଥନ ପାଇଥିଲେ । ପୁଣି ୧୯୬୭ ନିର୍ବାଚନ ତାଙ୍କ ବିରୁଦ୍ଧରେ ଓଡ଼ିଶା ବାସୀଙ୍କ କ୍ରୋଧର ଦୃଷ୍ଟାନ୍ତ । ଅଥଚ ସେ ସେହି ନିର୍ବାଚନରେ ସର୍ବାଧିକ ଆଲୋଚିତ ବ୍ୟକ୍ତି । ୧୯୬୭ରେ ସ୍ୱତନ୍ତ୍ର ଜନକଂଗ୍ରେସ ମନ୍ତ୍ରୀମଣ୍ଡଳର ସବୁଠାରୁ ବଡ଼ କାର୍ଯ୍ୟକ୍ରମ ରହିଛି । ବିଜୁ ପଟ୍ଟନାୟକଙ୍କ ବିରୁଦ୍ଧରେ ତଦନ୍ତ କମିଶନ୍, ଯାହା ଫଳରେ ୧୯୬୭ରୁ ୧୯୭୧ ଭିତରେ ବିଜୁ ଏକ ବହୁଚର୍ଚ୍ଚିତ ବ୍ୟକ୍ତିତ୍ୱ ଭାବରେ ପୁଣି ଥରେ ଓଡ଼ିଶାବାସୀଙ୍କର ବିଶ୍ୱାସ କେତେଅଂଶରେ ଫେରି ପାଇଲେ। ୧୯୭୦ରେ ତାଙ୍କଦ୍ୱାରା ଗଠିତ ଉତ୍କଳ କଂଗ୍ରେସ ୧୯୭୧ ନିର୍ବାଚନରେ ଇନ୍ଦିରା ହାୱାକୁ ପ୍ରତିହତ କରି ଆଂଶିକ ସଫଳତା ହାସଲ କରିପାରିଥିଲା

•ଏବଂ ୧୯୭୧ରୁ ୭୭ ବର୍ଷେ କାଳ ସ୍ୱତନ୍ତ୍ର ଦଳ ସହିତ ମିଳିତ ମନ୍ତ୍ରୀମଣ୍ଡଳରେ ଅଂଶୀଦାର ରହିଥିଲା ।

ଏସବୁ ରାଜନୈତିକ ଘଟଣା ପ୍ରବାହରେ ବିଜୁଙ୍କର ସନ୍ତରଣ ବା ନିମଜ୍ଜନ ଇତିହାସ ସୃଷ୍ଟି କରିବନାହିଁ ତାଙ୍କ ପାଇଁ । ରାଜନୀତି ଖେଳର ଖେଳୱାଡ଼ଙ୍କ ପାଇଁ ଯେଉଁ ପିଚ୍ ତିଆରି ହୋଇଥାଏ, ତାହାର ସ୍ଥାୟୀତ୍ୱ ବା କେତେ? ମାତ୍ର ପ୍ରକୃତ ଇତିହାସ ଲିଖିତ ରହିଯାଏ, ପ୍ରକୃତ ମଣିଷଟିକୁ ଘେନି। ସେଇ ମଣିଷଟିର ଆବିଷ୍କାର ଆଜିଯାଏ ସତ୍ୟଭିତ୍ତି ଉପରେ ହୋଇପାରିନାହିଁ। ସଂପର୍କଟା ବେଶି ରାଜନୀତିକୁ ଘେନି । ରାଜନୀତି ବର୍ହିଭୂତ ବିଜୁ ନାମକ 'ସୁନ୍ଦର' ମଣିଷଟିକୁ ଚିହ୍ନିବାକୁ ହେଲେ, ତାଙ୍କ ହୃଦୟ ସହିତ ସମଗୋତ୍ରତ୍ୱ ସାଜିବାକୁ ହେବ ।

ଥରେ କଥା ପ୍ରସଙ୍ଗରେ କହୁ କହୁ କହିପକାଇଲେ ବିଜୁ, ''ରାଜକିଶୋର ବାବୁ, ଜୀବନ ଶେଷ ହୋଇ ଆସୁଛି, ଓଡ଼ିଆଙ୍କ ପାଇଁ ଯାହା କରିବାକୁ ସଂକଳ୍ପ ନେଇଥିଲି, ଆଉ କେବେ କରିବି ? ସମସ୍ତେତ ପଛରେ ଲାଗିଲେ, କେତେ ସମ୍ଭାଳିବି ? ଗୋଟାଏ ଲଙ୍ଗ୍‌ସ୍ ନାହିଁ, ଆରଟାରେ କାମ ଚଳେଇ ନେଉଛି । ସେଇଟା ବନ୍ଦ ହୋଇଗଲେ.....''

ମୁଁ ଅବାକ୍; ସାମନ୍ତ ଚନ୍ଦ୍ରଶେଖର କୌଣସି ଏକ ଉତ୍ସବର ପ୍ରାକ୍‌କାଳରେ ମୋ ପାଖରେ, ପ୍ରିୟ ବନ୍ଧୁ ପାଖରେ, ତାଙ୍କର ଆତ୍ମ-ନିବେଦନ ।

ହାୟ ଓଡ଼ିଆ ଜାତି, ଥରେ ହେଲେ ଏ ମଣିଷଟି ପ୍ରତି ଦରଦୀ ହୃଦୟରେ ଅଞ୍ଜଳୀ ବାଢ଼ିଦିଅ, କୁହ ''ବିଜୁର ବିଜୟ ବହୁ ଜନ୍ମତିଥି ଯାଏ ବଳିୟାନ ଥାଉ ।''

# ବିଜୁବାବୁଙ୍କ ଜାତୀୟ ଚିନ୍ତାଧାରା

## ଶେଖ୍ ଅଜିଜୁର ରହମନ

(ସାମ୍ବାଦିକ)

ଏକଦା ଦେଶ ତଥା ଆର୍ନ୍ତଜାତିକ କ୍ଷେତ୍ରରେ ନୂତନ ଶିଳ୍ପଚିନ୍ତା କରୁଥିବା ଯୁବ ଓଡ଼ିଆ ଶିଳ୍ପପତି ଶ୍ରୀ ବିଜୟାନନ୍ଦ ପଟ୍ଟନାୟକ ଯେ ଜାତୀୟ ଚିନ୍ତାର ଏକ ଉତ୍ସ ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ବିଭିନ୍ନ କ୍ଷେତ୍ରରେ ତାହା ସେ ପ୍ରତିପାଦନ କରିଛନ୍ତି ଓ ତାହାର ଗୋଟିକ ପରେ ଗୋଟିଏ ଦୃଷ୍ଟାନ୍ତ ଆପଣ ଦେଖିବେ ଯଦି ଆପଣ କେବେ ଓଡ଼ିଶା ବିଧାନସଭାରେ ଦର୍ଶକ ହୋଇଥାନ୍ତି ।

ରାଜ୍ୟ ବିଧାନସଭା ନିର୍ବାଚନ ପରେ ପ୍ରଥମ ସ୍ୱଳ୍ପକାଳୀନ ବିଧାନସଭା ଅଧିବେଶନ ଶାସକ ଦଳର ସଭ୍ୟମାନଙ୍କଠାରୁ ଆରମ୍ଭ କରି ମନ୍ତ୍ରୀମାନେ ଗଡ଼ଜୟ କରି ସଂଖ୍ୟାଧିକ ଆସନ ମଣ୍ଡିଥାଆନ୍ତି ।ସେ ଦଳର ଆଲୋଚନା ଥିଲା ପାରାଦ୍ୱୀପ ବନ୍ଦର ଉପରେ । ମୁଖ୍ୟ ବିରୋଧୀ ଜନତା ଦଳର ସଭ୍ୟମାନେ ତମ୍ବିତୋଫାନ କରିଚାଲିଥାଆନ୍ତି । କୁହାଯାଉଥିଲା - ''ପାରାଦ୍ୱୀପ ବନ୍ଦରକୁ ବନ୍ଦ କରିବାପାଇଁ କେତେ ଅଣଓଡ଼ିଆ ଅଫିସର ଚକ୍ରାନ୍ତ କରୁଛନ୍ତି । ବନ୍ଦରର ଚିଫ୍‌ଇଞ୍ଜିନିୟର ନିଯୁକ୍ତି କ୍ଷେତ୍ରରେ ଗତ ୪ ବର୍ଷ ମଧ୍ୟରେ ଅଦଳ ବଦଳ କରାଯାଇଛି ଓ କେନ୍ଦ୍ରର ଅବହେଳା'' ଇତ୍ୟାଦି ।

ତଦାନିନ୍ତନ ବାଣିଜ୍ୟମନ୍ତ୍ରୀ ପୁରୁଣା ବିଧାୟକ ଶ୍ରୀ ଅନୁପ ସିଂଦେଓ ଅତି ସରଳ ସ୍ୱଭାବ ଛଳରେ ଉତ୍ତର ଦେଉଥାନ୍ତି - ''ପାରାଦ୍ୱୀପ ବନ୍ଦ ହେବାର ନାହିଁ ଓ କେନ୍ଦ୍ର ସରକାର ଅବହେଳା କରୁନାହାନ୍ତି'' ବୋଲି ପ୍ରଥମ ଥର କହିବାବେଳେ ନବ୍ୟାଗତ ଆଜିର ବିଧାନସଭାର ବିରୋଧୀଦଳ ନେତା ବିଜୁବାବୁ ହଠାତ୍ ମନ୍ତ୍ରୀଙ୍କ ଆଡ଼କୁ ଦୃଷ୍ଟିପାତ କଲେ ।

ହଠାତ୍ ଉଠିପଡ଼ିଲେ ସେ ଆସନରୁ । ଟେବୁଲ ଉପରୁ ଚଷମାଟା ଉଠାଇ ନେଇ କହିଲେ - ''ବିଭାଗୀୟ ମନ୍ତ୍ରୀ କହି ପାରିବେ କି ପାରାଦ୍ୱୀପ ଓଡ଼ିଶାରେ ନା ଭାରତରେ ? ଓଡ଼ିଶାରେ ପ୍ରତିଷ୍ଠିତ ଭାରତର ଏକ ପ୍ରସିଦ୍ଧ

ବନ୍ଦର ପ୍ରତି କେନ୍ଦ୍ର ସରକାର ଅବହେଳା କରୁ ନାହାନ୍ତି ବୋଲି ଯଦି କୁହାଯାଏ ତେବେ ଏହାଦ୍ୱାରା ଭାରତର ସମୃଦ୍ଧି ବ୍ୟାହତ ହେବ କି ନାହିଁ ତାହା ଆପଣ ବୁଝିପାରୁ ନାହାନ୍ତି । ବନ୍ଦରର କ୍ଷତିର କାରଣ କଣ ତାହା ଆପଣ କେବଳ ଆମ ପାଖରେ ତଥ୍ୟ ନାହିଁ ବୋଲି କହି ଉତ୍ତର ଦେଇଦେଲେ ହେବ ନାହିଁ । ବନ୍ଦରର କ୍ଷତି ହେଉଛି କାହିଁକି ଏ ସମ୍ପର୍କରେ ମନ୍ତ୍ରୀ ନିଜେ ଅନୁଧ୍ୟାନ କରି ତାହାର ପ୍ରତିକାର ବ୍ୟବସ୍ଥା ନକରି ରାଜ୍ୟ ତଥା ଦେଶର ସମୃଦ୍ଧିରେ ସହାୟକ ବନ୍ଦର ପ୍ରତି ଅବହେଳା କରାଯାଉ ନାହିଁ ବୋଲି କହିବା ବିଭାଗୀୟ ମନ୍ତ୍ରୀଙ୍କ ପକ୍ଷେ ତଥା ଓଡ଼ିଶାବାସୀଙ୍କ ପକ୍ଷେ ଲଜ୍ୟାର ବିଷୟ'' ।

ଅନୁଭବ କରାଯାଉଥିଲା ଯେ ବିଜୁବାବୁ କ୍ରମଶଃ ତାଙ୍କ ଭାଷଣରେ ଉତ୍ତେଜିତ ନ ହୋଇ ଅତି ଦୃଢ଼କଣ୍ଠରେ ବାଣିଜ୍ୟ ମନ୍ତ୍ରୀଙ୍କୁ ଜାତୀୟ ସମ୍ପତ୍ତି ପ୍ରତି ସଜାଗ ରହିବାକୁ ପରାମର୍ଶ ଦେଉଥିଲେ । ଆଲୋଚନାରେ ହଠାତ୍ ହସ୍ତକ୍ଷେପ କଲେ ମୁଖ୍ୟମନ୍ତ୍ରୀ ନିଜେ । ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ ଅତି ଚତୁରତାର ସହ ବିଜୁବାବୁଙ୍କ ମତାମତକୁ ଗ୍ରହଣ କରି ବାଣିଜ୍ୟମନ୍ତ୍ରୀଙ୍କୁ ପାରାଦ୍ୱୀପ ଯାଇ ବନ୍ଦର ପରିଚାଳନା ଅବ୍ୟବସ୍ଥା ଓ ଅନ୍ୟାନ୍ୟ ବିଷୟରେ ପୁଙ୍ଖାନୁପୁଙ୍ଖ ତଦନ୍ତ କରି ଗୃହକୁ ଜଣାଇବାକୁ ନିର୍ଦ୍ଦେଶ ଦେଲେ । ତା'ପରେ ଦେଖାଗଲା ବିଜୁବାବୁ ଟିକିଏ ସ୍ମିତହାସ୍ୟ କରୁଥିଲେ ।

ଆଉ ଦିନକର ଆଲୋଚନା- ବିଜୁବାବୁଙ୍କ ଦ୍ୱାରା Post warବେଳେ ଚୌଦ୍ୱାରରେ ପ୍ରତିଷ୍ଠିତ ଓ.ଟି.ଏମ୍. (ଓଡ଼ିଶା ଟେକ୍ସଟାଇଲ ମିଲ୍) । ଆଲୋଚନା ଆରମ୍ଭ କରିଥାନ୍ତି ତଦାନିନ୍ତନ ରାଜସ୍ୱମନ୍ତ୍ରୀ ଶ୍ରୀ ନିରଞ୍ଜନ ପଟ୍ଟନାୟକ, ଶିଳ୍ପମନ୍ତ୍ରୀଙ୍କ ଅନୁପସ୍ଥିତିରେ । ବିଷୟଥିଲା ଓ.ଟି.ଏମ୍.କୁ ଋଣ ପାଇଁ ରାଜ୍ୟ ସରକାରଙ୍କର ଜାମିନି । ଦର୍ଶକ ମହଲ ତଥା ସାମ୍ବାଦିକ ଗ୍ୟାଲେରୀର ସମସ୍ତ ଅତି ଉତ୍କଣ୍ଠାର ସହ ଅପେକ୍ଷା କରିଥାନ୍ତି ବିଜୁବାବୁ କ'ଣ କହିବେ । ଉଠିପଡ଼ି ଭାରତରେ କିପରି ! Post-war ବେଳେ ୩ଟି ସୁତାକଳ ପାଇଁ ମଞ୍ଜୁରୀ ମିଳିଥିଲା ଓ ସେଥିରେ ଓ.ଟି.ଏମ୍. ଅନ୍ୟତମ ଓ ସେତେବେଳର ମୁଖ୍ୟମନ୍ତ୍ରୀ ମହତାବ ବାବୁ କିପରି ଏଥିପାଇଁ ପ୍ରାଣାନ୍ତକ ପ୍ରୋତ୍ସାହନ ଯୋଗାଇଥିଲେ ତାହା ବର୍ଣ୍ଣନା କଲେ । ବାଧିତ ହୋଇଥିଲେ ସେ ତାଙ୍କ ଭାଷଣରେ ଯେ ଦୀର୍ଘ ୨ ବର୍ଷ

ଧରି ଓ.ଟି.ଏମ୍. ବନ୍ଦ ହେବା ଫଳରେ ୭ ହଜାର ଶ୍ରମିକ କର୍ମଚାରୀ କି ଦୁଃଖ କଷ୍ଟରେ କାଳ କାଟିଲେ । ସେ କହିଲେ "ଓଡ଼ିଶା ସରକାର ଏହି ମିଲ୍‌କୁ ହାତକୁ ନେଉଥିବାରୁ ମୁଁ ସରକାରଙ୍କୁ ପ୍ରଶଂସା କରୁଛି ।" ଏହା ବ୍ୟତୀତ ସେ ଦୃଢ଼ଭାବେ ମତପୋଷଣ କରିଥିଲେ ଯେ ଓ.ଟି.ଏମ୍.କୁ ସମୃଦ୍ଧ କରାଯାଉ ଓ ସରକାର ଏଥିପାଇଁ ସବୁ ପ୍ରକାର ସାହାଯ୍ୟ କରନ୍ତୁ ।

ଏହି ଦୁଇ ଘଟଣାରୁ ଜଣାପଡ଼ିବ ଯେ ବିଜୁବାବୁଙ୍କର ଜାତୀୟ ଚିନ୍ତାଧାରା କେତେ ଦୃଢ଼ ଓ ସଂକୀର୍ଣ୍ଣତାରୁ ସେ କେତେ ଉପରେ । ବିରୋଧୀ ଦଳର ନେତା ଭାବେ ସେ ସରକାରଙ୍କୁ ସମାଲୋଚନା କରିବା ସଙ୍ଗେ ସଙ୍ଗେ ଜାତୀୟତା ଚିନ୍ତାରେ ଉଦ୍‌ବୁଦ୍ଧ ହେବାପାଇଁ ତାଙ୍କର ପରାମର୍ଶ ନିଶ୍ଚୟ ପ୍ରଣିଧାନ ଯୋଗ୍ୟ ।

# କଳିଙ୍ଗର ତୁମେ ଏକାକୀ ସମ୍ରାଟ !

**ଶ୍ରୀ ରବି ଦାସ**

କର୍ମ ହିଁ ଜୀବନ । ଗତିକୁ ପ୍ରଗତିରେ ରୂପାନ୍ତରିତ କରାଇପାରିଲେ ଗତି ହୋଇଯାଏ ପ୍ରଗତି ।ଉପନିଷଦ କୁହନ୍ତି, 'ଚରୈବତି,ଚରୈବତି । ଆଗକୁ ଚାଲ, ଆଗକୁ ଚାଲ । ଆଗକୁ ଯିବାର ଅର୍ଥ ନୁହେଁ ଅନ୍ୟକୁ ମାଡ଼ି ମକଚି ଅବା ଅନ୍ୟର କାନ୍ଧରେ ବନ୍ଧୁକ ରଖି ନିଜର ସ୍ୱାର୍ଥ ସାଧନ କରିବା,ନିଜର କଳେବର ବୃଦ୍ଧି କରିବା; ବରଂ ଅନ୍ୟର ସୁଖ, ଦୁଃଖକୁ ଆପଣାର ଭାବି ଅନ୍ୟକୁ ନିଜ ସହିତ ସାମିଲ କରି ଆଗେଇଯିବା । ସେଥିପାଇଁ ଜନ୍ମାନ୍ଧ କବି ଭୀମଭୋଇ ବୋଧହୁଏ କହିଥିଲେ -'ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ପାଉ '।

ସେ ତ୍ୟାଗ, ସେ ଆଦର୍ଶ କାଇଁ ? ଆଜି ଗତି,ପ୍ରଗତି ସମସ୍ତ ବ୍ୟକ୍ତିକୈନ୍ଦ୍ରିକ। ବ୍ୟକ୍ତି ଚରିତ୍ର କଳୁଷିତ, ସ୍ୱାର୍ଥାନ୍ଧ ଶାସକଗୋଷ୍ଠୀ କ୍ଷମତା ତୃଷ୍ଣାରେ ଜର୍ଜରିତ। ଉପଭୋଗ ତୃଷ୍ଣା, କ୍ଷମତାକୁ ଆଲିଙ୍ଗନ କରି ନିମ୍ନ ସ୍ତରକୁ ଗ୍ରାସକଲାଣି। ନୀତି, ନିୟମ, ଆଦର୍ଶ, ମାନବିକତା, ନୈତିକତା ଅସ୍ତମିତ । 'ଗଣତନ୍ତ୍ର' ଏକ ଆଭିଧାନିକ ଶବ୍ଦ । ସବୁରି ବେକରେ ଅମଲାତନ୍ତ୍ରର ନାଲିଫିତା । ନିୟାମକ ସ୍ୱେଚ୍ଛାଚାରୀଙ୍କ ଖିଆଲି ବିଚାର । ବନ୍ୟା, ବାତ୍ୟା, ମରୁଡ଼ିର ସର୍ବଗ୍ରାସୀ କାୟାସହ ଗରିବୀ, ବେକାରୀ, ଶୋଷଣ, ପ୍ରିୟାପ୍ରୀତି ତୋଷଣ, ଧର୍ଷଣ, ନରହତ୍ୟାର ବିକଟାଳ ଅଟ୍ଟହାସ୍ୟ ଉଗ୍ରରୁ ଉଗ୍ରତର । ସମସ୍ତ ମାନବ କଣ୍ଠରେ ଅଭିଯୋଗର ସ୍ୱର ।

ନରସିଂହ ଦେବର କୋଣାର୍କ, ଇନ୍ଦ୍ରଦ୍ୟୁମ୍ନର ଦାରୁବ୍ରହ୍ମ, ବିଶ୍ୱାବସୁର ନୀଳମାଧବ, ମର୍କତକେଶରୀର ପଥରବନ୍ଧ, ମୁକୁନ୍ଦଦେବର ବାରବାଟୀ ଦୁର୍ଗ,ଖୋର୍ଦ୍ଧା ପାଇକର ବୀରତ୍ୱ, ସୁରେନ୍ଦ୍ର ସାଏର ଦେଶାତ୍ମବୋଧ, ସାଧବପୁଅର ବୋଇତ, ସମ୍ବଲପୁରୀ ଓ ମାଣିଆବନ୍ଧୀ ପାଟ ଓ ମଠା ଏବେ ବି ଦେଶ ଭିତରେ ଓ ବାହାରେ କଳିଙ୍ଗର ହୃତଗୌରବର ସ୍ତୁତିଚାରଣ କରୁଛି ସେହିପରି ଭାରତ ମାନଚିତ୍ରରେ ଗୋପବନ୍ଧୁ ଦାଶ, ମଧୁସୂଦନ ଦାସ, ଗଜପତି କୃଷ୍ଣଚନ୍ଦ୍ର ଦେବ,

ଗୋଦାବରୀଶ ମିଶ୍ର, ନୀଳକଣ୍ଠ ଦାଶ, ସାରଙ୍ଗଧର ଦାସ, ବିଶ୍ୱନାଥ ଦାଶ, ହରେକୃଷ୍ଣ ମହତାବ, ରାଧାନାଥ ରଥ, ନିତ୍ୟାନନ୍ଦ କାନୁନ୍‌ଗୋ, ବିଜୁ ପଟ୍ଟନାୟକ, ପ୍ରାଣକୃଷ୍ଣ ପରିଜା, ସୁରେନ୍ଦ୍ର ଦ୍ୱିବେଦୀ, ନନ୍ଦିନୀ ଶତପଥୀ, ପ୍ରଭୃତି ଅନେକ ଉଜ୍ୱଳ ଜ୍ୟୋତିଷ୍କ ।

କଳିଙ୍ଗର ଅଙ୍ଗେ ଅଙ୍ଗେ ଭରା କଳାର ପ୍ରାଚୁର୍ଯ୍ୟ । ବକ୍ଷରେ ତା'ର ଅସରନ୍ତି ଖଣିଜ ସମ୍ପଦ, ଅପରୂପ ଶୋଭାର ପ୍ରାକୃତିକ ଭଣ୍ଡାର । ତଥାପି ଓଡ଼ିଶା କାହିଁକି ଆଜି ଦରିଦ୍ରତମ ରାଜ୍ୟ ଭାବେ ପରିଗଣିତ ? ଓଡ଼ିଆ ପୁଅ କାହିଁକି ଦାଦନ ଶ୍ରମିକ ? କାହିଁକି ସେ ହେୟଜ୍ଞାନରେ ମ୍ରିୟମାଣ ?

ମନରେ ଆଜି ଦୁର୍ବାର ପ୍ରଶ୍ନ ? ବିଶ୍ୱ ଦରବାରରେ କଳିଙ୍ଗର ପ୍ରତିଷ୍ଠା ପାଇଁ କିଏ ଶତତ ଚେଷ୍ଟିତ ? ସମ୍ରାଟ ଅଶୋକଙ୍କ କଳିଙ୍ଗ ଯୁଦ୍ଧ ? ଜଗନ୍ନାଥଙ୍କ ଚକାଆଖି ? ଜୟଦେବଙ୍କ ଗୀତଗୋବିନ୍ଦ ? ବିଜୁବାବୁଙ୍କ କଳିଙ୍ଗ ପୁରସ୍କାର ? କ୍ଷୁଦ୍ର ମନରେ ପୁଣି ଅସଙ୍ଖ୍ୟ ପ୍ରଶ୍ନର ବୁଢ଼ିଆଣି ଜାଲ ? ଗର୍ବିତ ନବୋତ୍କଳର କିଏ ସେହି ସ୍ଥପତି ବିଦ୍ୟାବିତ୍ ? କିଏ ସେହି ବିଶ୍ୱକର୍ମା ? ସହସ୍ର ପ୍ରଶ୍ନ ପାଇଁ ମିଳିଲା ଏକକ ଜବାବ-

ବିଜୁ ପଟ୍ଟନାୟକ । ଏକ ବାସ୍ତରୀ ବର୍ଷର ଉତ୍ସର୍ଗୀକୃତ ଜୀବନ । ସେ ପୁଣି ବହନ କରେ ଶତାବ୍ଦୀର ଇତିହାସ । ତାଙ୍କର ଅବଚେତନ ମନରେ କଳିଙ୍ଗର କଳା ଓ ସଂସ୍କୃତି । ଅନଗ୍ରସର କଳିଙ୍ଗକୁ ପ୍ରଗତିର ଚରମ ସୋପାନରେ ପହଞ୍ଚାଇବା ପାଇଁ ଦୁର୍ଦ୍ଦମନୀୟ ପ୍ରୟାସ । ସେ ନିଜସ୍ୱ ଅନୁଭୂତିର ମଣିଷ ।
ଚରିତ୍ରରେ ଗଭୀର ଆତ୍ମବିଶ୍ୱାସ, ଆତ୍ମତ୍ୟାଗର ବାସନା, ଉଚ୍ଚାଭିଳାଷ, ନିସ୍ୱାର୍ଥପର ସେବାର ଅପୂର୍ବ ସମାବେଶ । ହୀନମନ୍ୟତା କେବେ ସୀମା, ସରହଦ ଛୁଇଁବାକୁ ସାହସ କରିନି । ନିନ୍ଦୁକଙ୍କ ସୃଷ୍ଟ କିଛିଟା ଦୁର୍ନାମ ସହ ଦିବାଲୋକ ପରି ଭରି ରହିଥିବା ଅସୁମାରି ସୁନାମକୁ ଯୋଡ଼ି ଲେଖି ବସିଲେ, ସେ ହେବ ରାମାୟଣ । ତଥାପି-

ଆଜିକୁ ଠିକ୍ ବାସ୍ତରୀ ବର୍ଷ ତଳର କଥା ।୧୯୧୭ ମସିହା ମାର୍ଚ୍ଚ ୫ ତାରିଖର ଏକ ଶିଶିର ଭିଜା ପ୍ରତ୍ୟୁଷ । କଟକ ସହରର ତୁଳସୀପୁରସ୍ଥିତ ଆନନ୍ଦଭବନରେ ଜନ୍ମ ନେଲା 'କଳିଙ୍ଗ'ର ସ୍ରଷ୍ଟା । ଏକଦା ରେଭେନ୍‌ସା

କଲିଜିଏଟ୍ ସ୍କୁଲ୍‌ରେ ପଢ଼ିବା ବ୍ୟୟସାଧ୍ୟ ଓ କୃତିଛାତ୍ରଙ୍କ ପକ୍ଷେ କେବଳ ସମ୍ଭବ ହୋଇଥିବା ସମୟରେ କଟକ ମିଶନ ସ୍କୁଲରୁ ବିଦାୟ ନେଇ ୧୯୨୭ରେ ବିଜୁବାବୁଙ୍କର ବିଦ୍ୟାରମ୍ଭ ହୁଏ ରେଭେନ୍‌ସା କଲିଜିଏଟ୍ ସ୍କୁଲରେ । ଆଜିକାର ଛାତ୍ରସମାଜ ବନ୍ୟାଞ୍ଚଳ ମରୁଡ଼ିଗ୍ରସ୍ତ ଅଞ୍ଚଳରେ ସେବାକାର୍ଯ୍ୟ ବିଷୟ ମନରୁ ପାଶୋରି ଦେଇଥିଲେହେଁ ଛାତ୍ରାବସ୍ଥାରୁ ସେବାକାର୍ଯ୍ୟ ଥିଲା ତାଙ୍କ ଦୈନନ୍ଦିନ କାର୍ଯ୍ୟକ୍ରମର ଏକ ଅଙ୍ଗ ବିଶେଷ । ଗୋଟିଏ କ୍ଷୁଦ୍ର ଉଦାହରଣ- ୧୯୩୦ରେ ପ୍ରଳୟଙ୍କରୀ ବନ୍ୟା । ଉତ୍କଳମଣିଙ୍କ ନେତୃତ୍ୱରେ ବରୀ ଅଞ୍ଚଳରେ ସେବାକାର୍ଯ୍ୟ ପାଇଁ ଚାଲିଲେ ଯୁବକ ଦଳ । ସେବାକାର୍ଯ୍ୟ ନିଶ୍ଚୟ ତ ହେଲା; କିନ୍ତୁ ଯିବା ବାଟରେ ଝଲକାଏ ପବନରେ ଉଡ଼ିଗଲା ଉତ୍କଳମଣିଙ୍କ ଛତା । ଜୀବନକୁ ବିପନ୍ନ କରି ଅନେକଙ୍କ ମଧ୍ୟରୁ ଏକ ଝାମ୍ପ ଦେଲା ଡଙ୍ଗାରୁ ଉଚ୍ଛୁଳା ନଦୀ ଗର୍ଭକୁ । ଛତାକୁ ଧରି ବୁମେରାଂ ପରି ଫେରିପଡ଼ିଲା ସେ ଯୁବକ । ସମସ୍ତଙ୍କ ମନରେ ଶଙ୍କା, ଛତା । ଯୁବକଙ୍କ ଚିନ୍ତାରେ ଦାସେ ଆପଣେ ଥିଲେ ଜାତୀୟ ନେତା । ସେ ଛତା ଥିଲା ଜାତୀୟ ସମ୍ପଦ । ତାକୁ କଅଣ ହାତଛଡ଼ା କରାଯାଇପାରେ ?

ମହାତ୍ମା ଗାନ୍ଧୀଙ୍କୁ ନଦେଖିବା, ତାଙ୍କ ଆଦର୍ଶରେ ବିଶ୍ୱାସ କରୁନଥିବା; କିନ୍ତୁ କଥା କଥାକେ ଗାନ୍ଧୀବାଣୀ ଶୁଣାଯାଉଥିବା ଲୋକ ଅନେକ । ୧୯୨୬ ମସିହାର କଥା । କଟକ ସ୍ୱରାଜ୍ୟ ଆଶ୍ରମକୁ ଆସିଥାନ୍ତି ଗାନ୍ଧୀଜୀ । ଗାନ୍ଧୀଜୀଙ୍କ ଦର୍ଶନ ପାଇଁ ଶିଶୁପ୍ରାଣରେ ପ୍ରବଳ ଜିଜ୍ଞାସା । ଭିଡ଼ ଠେଲି ସେ ଚାଲିଲା ଆଗକୁ । ତାର ଡ଼େଙ୍ଗା ମୁଣ୍ଡରେ ବାଜିଲା ତତ୍‌କାଳୀନ ଗୋରା ହରଗ୍ରିଭ୍ ସାହେବର ଠେଙ୍ଗା । ସେ ହେଲା କ୍ଷତାକ୍ତ, ରକ୍ତାକ୍ତ ମନ ଜାଣି ପ୍ରଭୁ ! ଗାନ୍ଧୀଜୀଙ୍କ ଦର୍ଶନ ନୁହେଁ, ମିଳିଲା ପରଶ । ଆଜି ହାତେ ଚାଲିଲେ ଲୋଡ଼ା ମୋଟର କାର । ଆବାଲ୍ୟରୁ ସୁଖ ସମୃଦ୍ଧିର ପ୍ରାଚୁର୍ଯ୍ୟ ମଧ୍ୟରେ ପ୍ରତିପାଳିତ ୧୭ ବର୍ଷର ଯୁବକ ୧୯୩୨ ମସିହାରେ ଦୁଇବନ୍ଧୁଙ୍କୁ ଧରି ସାଇକେଲରେ ଚାଲିଲା କଟକରୁ ପେଶୱାର । ବାଟରେ ମହାବଳ ସହିତ ଲଢ଼େଇ । ଆଜିର ଉତ୍ତରାଧିକାରୀ ବିଶ୍ୱାସ କରିପାରିବ ତ ?

ଓଡ଼ିଶାର କୌଣସି କ୍ରୀଡ଼ାକ୍ଷେତ୍ର ଅବା କ୍ରୀଡ଼ା ପ୍ରତିଯୋଗିତା ସେ ପ୍ରଖ୍ୟାତ

କ୍ରୀଡ଼ାବିତ୍‌ଙ୍କ ନାମରେ ନାମିତ ହୋଇଛି । ଆପଣ ବିଶ୍ୱାସ କରିବେନି ନା, ଓଡ଼ିଶାରେ 'ପୋଲଭଲ୍‌ଟ'ର ବିଜୁବାବୁ ପ୍ରବର୍ତ୍ତକ ଓ ପ୍ରଥମ ବର୍ଷର ପ୍ରତିଯୋଗିତାରେ ପ୍ରଥମ । ରେଭେନ୍‌ସା କଲେଜରେ ଅଧ୍ୟୟନ କାଳରେ କ୍ରମାଗତ ଭାବେ ତିନିବର୍ଷ ଧରି ଆଥ୍‌ଲେଟିକ୍ ଚମ୍ପିଆନ ହେବାର ଗୌରବ । ସେକାଳରୁ ଏକାଳ ପର୍ଯ୍ୟନ୍ତ, ଅର୍ଥାତ୍ ବିଗତ ଅର୍ଦ୍ଧ ଶତାବ୍ଦୀ ମଧ୍ୟରେ ଶ୍ରୀ ନନ୍ଦନନ୍ଦନ ମହାପାତ୍ର, ନନ୍ଦକିଶୋର ଦାସ, କାଳୀପ୍ରସନ୍ନ ଦାସଙ୍କ ବ୍ୟତୀତ ଏପରି ସମ୍ମାନ ପ୍ରାୟ କାହାରି ଭାଗ୍ୟରେ ଜୁଟିନି । ତାଙ୍କ ଦ୍ୱାରା ପ୍ରଦତ୍ତ କଳିଙ୍ଗ କପ୍ ଓ ତାଙ୍କ ପ୍ରଚେଷ୍ଟାରେ ଗଠିତ କଳିଙ୍ଗ ଟ୍ରୁବ୍‌ସ ଫୁଟ୍‌ବଲ ଦଳ ସମ୍ପର୍କରେ କଅଣ କିଛି କହିବାର ଅଛି ? ସର୍ବୋପରି ତାଙ୍କ ଦଳ ଓ ପ୍ରେରଣାରେ ଆଜି ଅସଂଖ୍ୟ କ୍ଲବ୍, ପାଠାଗାର, କ୍ରୀଡ଼ା ପ୍ରତିଯୋଗିତା ।

'ପରମବୀର ଚକ୍ର' ପାଇନଥିଲେ ମଧ୍ୟ ଇଣ୍ଡିଆନ୍ ନ୍ୟାସନାଲ୍ ଏୟାର ୱେଜ, ବ୍ରିଟିଶ୍ ରୟାଲ ଫୋର୍ସର ସେ ଥିଲେ ସ୍ୱନାମଧନ୍ୟ ବୈମାନିକ । ଶ୍ରୀ କୃଷ୍ଣଚନ୍ଦ୍ର ଗଜପତିଙ୍କ ଆଗରେ ବଡ଼ଲାଟ୍ ଲର୍ଡ଼ ୱେବଲଙ୍କ ମତ ପ୍ରଣିଧାନ ଯୋଗ୍ୟ । ମାତ୍ର ଚଉଦ ଦିନର ଶିଶୁ ପୁତ୍ରକୁ ଛାଡ଼ି ସ୍ତ୍ରୀ ଜ୍ଞାନୀ ଦେବୀଙ୍କ ସହିତ ଇଣ୍ଡୋନେସିଆ ଯାଇ, ଡ଼ଚ୍ ସୈନ୍ୟବାହିନୀ ଆଖିରେ ଧୂଳି ଦେଇ, ସେଠାକାର ସ୍ୱାଧୀନତା ସଂଗ୍ରାମୀ ଡ଼. ସାହାରିୟର ଓ ମହମ୍ମଦ ହଟ୍ଟା ପ୍ରଭୃତିଙ୍କୁ ଦିଲ୍ଲୀ ଉଡ଼ାଇ ଆଣିବା ଓ ପୁଣି ନିର୍ବିଘ୍ନରେ, ମନ୍ତ୍ରଣା ପରେ, ଜାକର୍ତ୍ତାରେ ପହଞ୍ଚାଇବା ଘଟଣା କଅଣ ଆଇମାର ଗୋଦରବୁଢ଼ୀ କଥା ? ନିଜର ଦକ୍ଷତା ଓ ବିଚକ୍ଷଣତା ପାଇଁ ଗୋଟିଏ ରାଜ୍ୟର ମୁଖ୍ୟମନ୍ତ୍ରୀ ଥାଇ ୧୯୬୨ଶନ ର ଯୁଦ୍ଧ ସମୟରେ କେନ୍ଦ୍ର ସଚିବାଳୟରେ ସ୍ୱତନ୍ତ୍ର ପ୍ରକୋଷ୍ଠପାଇ ପ୍ରଧାନମନ୍ତ୍ରୀ ପଣ୍ଡିତ୍ ନେହେରୁଙ୍କ ଯୁଦ୍ଧ ପରାମର୍ଶଦାତା ରୂପେ କାର୍ଯ୍ୟ କରିବା, ସ୍ୱତନ୍ତ୍ର ଦୂତଭାବେ ଆମେରିକା ଯିବା, ବିଭିନ୍ନ ରାଷ୍ଟ୍ରମୁଖ୍ୟଙ୍କ ସହିତ ସଂଯୋଗ ସ୍ଥାପନ କରିବା ବିଷୟ କଅଣ ଅଜାବୁଢ଼ାର ଖଜାଖିଆ କଥା । ବିଶେଷକରି ପାକିସ୍ଥାନ ଯୁଦ୍ଧ ସମୟରେ ସୀମାନ୍ତର ଆଗୁଆ ଅଞ୍ଚଳରେ କରିଥିବା ଦୁଃସାହସିକ କାର୍ଯ୍ୟ କଅଣ କେହି ଭାରତୀୟ ଭୁଲିଯାଇପାରେ ?

ସ୍ୱାଧୀନତାକୁ ବିରୋଧ କରୁଥିବା ସ୍ୱାଧୀନତା ସଂଗ୍ରାମରେ ଧାର୍ ଧାରି

ନଥିବା ଅନେକ ଆଜି ତୁଙ୍ଗ ସଂଗ୍ରାମୀ, ସ୍ୱାୟତ୍ତ ଶାସନର ଶିଖର ଦେଶରେ। ପ୍ରକୃତ ସଂଗ୍ରାମୀ ପାଇଁ ତାମ୍ର-ପତ୍ରର ଅଭାବ । ୧୯୪୦ରେ ଚଟ୍ଟଗ୍ରାମ ବିପ୍ଳବ। ସ୍ୱାଧୀନ ଚେତାର ସ୍ୱଧୀନ ପ୍ରାଣରେ ବିପ୍ଳବର ବହ୍ନି । ବୈମାନିକରୁ ସ୍ୱାଧୀନତା ସଂଗ୍ରାମୀ ହେବାର ଅଦମ୍ୟ ଉତ୍‌କଣ୍ଠା । ତାଙ୍କ ପାଖରେ ଧୂମକେତୁ ପରି ହଠାତ୍ ଜୟପ୍ରକାଶ, ସୁବାସ ବୋଷଙ୍କର ଆବିର୍ଭାବ । ତାଙ୍କର ନିର୍ଦ୍ଦେଶ ରହିଲା ଶାସନରେ ସ୍ଥାୟୀ ଶାସକ ବିରୁଦ୍ଧରେ ସନ୍ତ୍ରାସବାଦୀ କାର୍ଯ୍ୟ । ଗଭୀର ସମ୍ପର୍କ ସ୍ଥାପିତ ହେଲାଜୟପ୍ରକାଶ, ଅଶୋକ ମେହେଟ୍ଟା, ରାମ ମନୋହର ଲୋହିଆ, ଅରୁଣା ଆସଫଲି, ଅଚ୍ୟୁତ ପଟ୍ଟବର୍ଦ୍ଧନ ପରି ଅନେକ ମହାନ ଜନନେତାଙ୍କ ସହିତ । ଫିରିଙ୍ଗ ଘରେ ଚାକିରି କରି ତାରି ବ୍ୟୋମଯାନରେ ତାରି ଶତ୍ରୁଙ୍କୁ ଧରି ଦେଶର କୋଣେ କୋଣେ ପହଞ୍ଚିଲେ ବିଜୁ ପଟ୍ଟନାୟକ। ହନୁମନ୍ତ ଲାଙ୍ଗୁଡ଼ରେ ନିଆଁ ଜଳି ଉଠିଲା ଫିରିଙ୍ଗିର ସୂର୍ଯ୍ୟାସ୍ତ ହେଉନଥିବା ଅଖଣ୍ଡ ସାମ୍ରାଜ୍ୟରେ ସ୍ୱାଧୀନତାର ଦାବାଗ୍ନି ।

ଆଜିର ଓଡ଼ିଆ ମୋଗଲବନ୍ଦୀ ଛାଡ଼ି ଗଡ଼ଜାତକୁ ଚାକିରି ପାଇଁ ଯିବାକୁ ନାରାଜ । ଅନେକ ପଦବୀ ଶୂନ୍ୟ । ଶୂନ୍ୟସ୍ଥାନ ପୂରଣ ପାଇଁ ସରକାରଙ୍କ ପକ୍ଷରୁ ଆକର୍ଷଣୀୟ ଭତ୍ତାର ଘୋଷଣା । କାଶ୍ମୀର ଉପତ୍ୟକାର ପ୍ରଖ୍ୟାତ ପରିବାରରୁ ଜ୍ଞାନୀଦେବୀଙ୍କୁ ବିବାହ ସନ ୧୯୩୯ ରେ । ଦେଶର ଡ଼ାକରେ ନବବିବାହିତ ସ୍ତ୍ରୀଙ୍କୁ ଛାଡ଼ି ଗୋପନୀୟ ଭାବେ ଝାସଦେଲେ ସ୍ୱାଧୀନତା ସଂଗ୍ରାମରେ। ସବୁ ଯୁଗରେ ଅଛନ୍ତି ବିଭିଷଣ । ୧୯୪୨ ଭାରତ ଛାଡ଼ ଆନ୍ଦୋଳନର ସୈନିକ ଭାବେ ଗିରଫ ହେଲେ ଜାନୁୟାରୀ ୧୩, ୧୯୪୩ ରେ । ଦିଲ୍ଲୀରୁ ଫିରୋଜପୁର, ସେଠାରୁ କଟକ । ୧୯୪୫ ରେ ହେଲେ କାରାମୁକ୍ତ ।

ଆଜିକାଲି ମନ୍ତ୍ରୀତ୍ୱ ଗ୍ରହଣ ପରେ ନେତା । ନିର୍ବାଚନରେ ପରିତ୍ୟକ୍ତ ଓ ପରେ ଧରାଧରି କରି ମନୋନୀତ ସଭ୍ୟହୁଏ ନେତା । ମା ପେଟରୁ ବୃଷଭ ପିଠିରେ ଜଟା । ବିଜୁବାବୁ ଥିଲେ ଜନ୍ମରୁ ନେତା । ୧୯୪୭ରେ କଟକ ସହରର ଲୋକ ପ୍ରତିନିଧି । ପୂର୍ବର ସମସ୍ତ ରେକର୍ଡ଼ ଭାଙ୍ଗି ତାଙ୍କ ନେତୃତ୍ୱରେ ପରିଚାଳିତ ଜାତୀୟ କଂଗ୍ରେସ ୧୯୬୧ ଜୁନ୍ ସାଧାରଣ ନିର୍ବାଚନରେ ବିଧାନ ସଭାର ୧୪୦ଟି ଆସନରୁ ୮୧ଟି ଆସନ ବିଜୟୀ ହୋଇ ଓଡ଼ିଶା

ଶାସନରେ ଆଣିଥିଲା ସ୍ଥିରତା । ଦୃଢ଼ ମନୋବଳ, ସାଙ୍ଗଠନିକ ଦକ୍ଷତାକୁ ସମ୍ବଳ କରି ୧୯୬୪ ଜାନୁୟାରୀ ମାସରେ ସେ ମହାସମାରୋହରେ ଆରମ୍ଭ କଲେ ଭାରତୀୟ ଜାତୀୟ କଂଗ୍ରେସର ପୂର୍ଣ୍ଣାଙ୍ଗ ଅଧିବେଶନ । ୧୯୬୯ରେ କଂଗ୍ରେସରେ ବିଭାଜନ ପରେ ଶାସକ କଂଗ୍ରେସର ଗୋଡ଼ାଣିଆ ନହୋଇ ନିଜ ଚିନ୍ତାଧାରା ଓ ଆଦର୍ଶକୁ ନେଇ ୧୯୭୧ରେ ଗଠନ କଲେ ଉତ୍କଳ କଂଗ୍ରେସ। ସଂଖ୍ୟାଧିକ ଭୋଟରେ ଉତ୍କଳ କଂଗ୍ରେସ ଆସି ସରକାର ଗଢ଼ିଲା । ପରବର୍ତ୍ତୀ କାଳରେ ଜନତା ସରକାର ୧୯୭୭ ମସିହାରେ ସେ ହେଲେ କେନ୍ଦ୍ରମନ୍ତ୍ରୀ ।

ଜନତାଙ୍କ ଦ୍ୱାରା ପରିତ୍ୟକ୍ତ, ଭର୍ତ୍ସିତ ନେତାଙ୍କ ପରି କ୍ଷମତାକୁ ଜାବୁଡ଼ି ଧରିବା ତାଙ୍କ ଧର୍ମବିରୋଧୀ । ଜାତୀୟ କଂଗ୍ରେସକୁ ସୁଦୃଢ଼ କରିବା ପାଇଁ ସ୍ୱଇଚ୍ଛାରେ ୧୯୬୩ ଗାନ୍ଧୀ ଜୟନ୍ତୀର ଅବ୍ୟବହିତ ପୂର୍ବରୁ ଅକ୍ଟୋବର ପହିଲା ଦିନ କାମରାଜ ଯୋଜନାକୁ ସମ୍ମାନ ଦେଇ ମୁଖ୍ୟମନ୍ତ୍ରୀ ପଦ ତ୍ୟାଗକଲେ। ଜନତା ସରକାର ଆସିଲା । କିନ୍ତୁ ସେ ମୁଖ୍ୟମନ୍ତ୍ରୀ ନ ହୋଇ କେନ୍ଦ୍ରକୁ ଗଲେ । ବୃହତ୍ତର ସ୍ୱାର୍ଥକୁ ଅଗ୍ରାଧିକାର ଦେଲେ; ଫଳରେ କଅଣ ହେଲା ? ଶତ ସହସ୍ର ଉତ୍କଳୀୟ ହୃଦୟର ପ୍ରତୀକ୍ଷା ପ୍ରତୀକ୍ଷାରେ ହିଁ ରହିଗଲା ।ମୋରାର୍ଜୀ ଓ ଇନ୍ଦିରାଙ୍କ ପୁସ୍ତକରୁ ଜଣାଯାଏ କାମରାଜ ଯୋଜନା ଥିଲା ବିଜୁବାବୁଙ୍କ ମାନସ ସନ୍ତାନ । କେବଳ ସେତିକି ନୁହେଁ ୧୯୫୩-୫୪ରେ ନବକୃଷ୍ଣ ଚୌଧୁରୀଙ୍କ ମନ୍ତ୍ରିମଣ୍ଡଳରେ ଯୋଗ ଦେବାପାଇଁ ମିଳିଥିବା ନିମନ୍ତ୍ରଣକୁ ପ୍ରତ୍ୟାଖ୍ୟାନ କରିଥିଲେ।

"ଅକାଳେ ନାହିଁ, ସକାଳେ ନାହିଁ, ଗନ୍ଧାପୁନେଇରେ ମାଇଁ, ମାଇଁ" ପରି ଗାନ୍ଧୀଙ୍କ ନୀତିକୁ ପ୍ରତି ମୁହୂର୍ତ୍ତରେ ତିଳ ତିଳ କରି ତ୍ୟାଗକରି ତୁଣ୍ଡରେ ରାମଧୂନ ଭଜୁଥିବା ଓ ଜନତାଙ୍କ ଦୟାରୁ ସେବକ ସାଜିଥିବା ଭୋଗିଗୋଷ୍ଠୀ ଶୀତତାପ ନିୟନ୍ତ୍ରିତ ଅଟ୍ଟାଳିକାରେ, ପିମ୍ପୁଡ଼ି ଧାରପରି ଧାଡ଼ି ଧାଡ଼ି ମୋଟରଗାଡ଼ି ଜୀବନର ସୁରକ୍ଷା ପାଇଁ ଦେହରକ୍ଷୀ, ବିଦେଶୀ ବ୍ୟାଙ୍କରେ ଅର୍ଥଲଗାଣ ଇତ୍ୟାଦିରେ ବିଭୋର ଥିବାବେଳେ ୧୯୭୨ରେ ବିଜୁବାବୁ ମନ୍ତ୍ରୀମାନଙ୍କ ପାଇଁ ଏକ ଆଚରଣ ବିଧି ପ୍ରସ୍ତୁତ କରିଥିଲେ । ତଦନୁଯାୟୀ ମନ୍ତ୍ରୀମାନେ ଅନ୍ୟ ଏମ୍.ଏଲ.ଏ.ଙ୍କ ପରି ଏମ୍.ଏଲ.ଏ. କ୍ୱାର୍ଟରରେ ରହିବେ । ସେମାନଙ୍କ ପାଇଁ ସ୍ୱତନ୍ତ୍ର କାର୍

ଖରିଦ୍ ହେବ ନାହିଁ । ଦପ୍ତରକୁ ଅବା ଗସ୍ତରେ ଯିବାବେଳେ ରାଜ୍ୟ ପରିବହନ ସଂସ୍ଥାରୁ ଗାଡ଼ି ନେବେ । ପରେ ଅବଶ୍ୟ କିଛିଟା ପରିବର୍ତ୍ତନ ହେଲା । ସେ କିନ୍ତୁ ଶେଷ ପର୍ଯ୍ୟନ୍ତ ଏମ୍.ଏଲ୍.ଏ କ୍ୱାଟରରେ ରହିଥିଲେ ।

ଭୂମି ହୀନ ଲୋକ ଆଜି ଜମିଦାର । ବିଲେଇ ଆଖିବୁଜି କ୍ଷୀର ପିଇବା ପରି ଗୋଚର, ଦେବୋତ୍ତର ଜମି ନିଜସ୍ୱ କରିବା ପାଇଁ କ୍ଷମତାରେ ଥିବା ଲୋକଙ୍କ ମଧ୍ୟରେ ଉଲଗ୍ନ ପ୍ରତିଯୋଗିତା । ଏ ପରିପ୍ରେକ୍ଷୀରେ ବିଜୁବାବୁ କଳିଯୁଗର କର୍ଣ୍ଣ । ପ୍ରେସିଡ଼େଣ୍ଟ ସୁକର୍ଣ୍ଣଙ୍କ ଅନୁରୋଧ କ୍ରମେ ଇଣ୍ଡୋନେସିଆ ସ୍ୱାଧୀନ ହେବା ପରେ ଇଣ୍ଡୋନେସିଆ ସରକାରଙ୍କ ସହିତ ଏକ ଦସ୍ତାବିଜରେ ବିଜୁବାବୁ ସନ୍ତକ ଦେଲେ । ତାଙ୍କୁ ଏ ଚୁକ୍ତି ଫଳରେ ଏକ ବିରାଟ ତୈଳ ଖଣି ପାଇଁ ରିହାତି, ବିଭିନ୍ନ ଶିଳ୍ପ ପ୍ରତିଷ୍ଠା ପାଇଁ ସୁଯୋଗ, ପାଞ୍ଚଶହ ବର୍ଗମାଇଲ୍ ପରିମିତ ଏକ ମୂଲ୍ୟବାନ ଜଙ୍ଗଲ, ଡ଼ଚ୍ ପରିତ୍ୟକ୍ତ ଏକ ବିରାଟ ପ୍ରାସାଦ ଉପହାର ସ୍ୱରୂପ ମିଳିଥିଲା । ଯାହାର ଆନୁମାନିକ ମୂଲ୍ୟ ପାଞ୍ଚଶହ କୋଟି ଟଙ୍କା ହେବ । କିନ୍ତୁ ପ୍ରିୟତମା ପତ୍ନୀ,ସେ ମହିୟସୀ ମହିଳା ଶ୍ରୀମତୀ ଜ୍ଞାନ ପଟ୍ଟନାୟକଙ୍କ ଅନୁରୋଧ କ୍ରମେ ଇଣ୍ଡୋନେସିଆର ରାଷ୍ଟ୍ରପତି ଭବନରେ ସ୍ୱାଧୀନତା ଉପଲକ୍ଷେ ପାଳିତ ହେଉଥିବା ଉତ୍ସବରେ ବିଜୁବାବୁ ୧୯୫୦ ମସିହାରେ ଇଣ୍ଡୋନେସିଆବାସୀଙ୍କୁ ସେ ଉପହାର ଉତ୍ସର୍ଗ କରିଦେଲେ । ନିଜ ପ୍ରତିଷ୍ଠିତ ଦଳର ସ୍ୱାର୍ଥକୁ ଅଗ୍ରାଧିକାର ଦେଇ ନିଜର ବ୍ୟକ୍ତିଗତ ଶିଳ୍ପ ସଂସ୍ଥାଗୁଡ଼ିକ ଓ ଶେଷରେ କଲିକତା, ଦିଲ୍ଲୀରେ ଥିବା କୋଠାଗୁଡ଼ିକୁ ବିକ୍ରି କରିଦେଲେ ।

ଶିକ୍ଷାର ପ୍ରସାର, ଦ୍ରୁତ ଶିଳ୍ପୀକରଣ, ରାଜ୍ୟର ଉନ୍ନତି ପାଇଁ କୁମ୍ଭୀର କାନ୍ଦଣା କାନ୍ଦୁଥିବା ଯୁଗର ବହୁ ପୂର୍ବରୁ ବିଜୁବାବୁ ଶିଳ୍ପ ବିକାଶ ସଂସ୍ଥା ସୃଷ୍ଟି କରିଥିଲେ । ଗ୍ରାମ୍ୟଣ ଜନତା ତାହାର ସୁଫଳ ପାଇବା ପାଇଁ ପଞ୍ଚାୟତ ଶିଳ୍ପର ସେ ପରିକଳ୍ପନା କରିଥିଲେ । ଓଡ଼ିଶା ଟେକ୍ସଟାଇଲ୍ ମିଲ, କଳିଙ୍ଗ ଟ୍ୟୁବ୍ସ, କଳିଙ୍ଗ ଇଣ୍ଡଷ୍ଟ୍ରିଜ, କଳିଙ୍ଗ ପବ୍ଲିକେସନ୍, କଳିଙ୍ଗ ଏୟାରଲାଇନ୍ସ, କଳିଙ୍ଗ ରିଫ୍ରିଜେସନ, ବାଲିମେଳା ଡ୍ୟାମ୍, ସୁନାବେଡ଼ା ମିଗ, ତାଳଚେର ଥର୍ମାଲ, ଓଡ଼ିଶା ପାଇଁ କ୍ଲବ୍, ବରଗଡ଼ ସିମେଣ୍ଟ କାରଖାନା, ଚାରିବାଟିଆ ଏରୋଡ୍ରମ, ଭୁବନେଶ୍ୱରର ସୈନିକ ସ୍କୁଲ, ସି.ଆର.ପି. କ୍ୟାଣ୍ଟନ୍‌ମେଣ୍ଟ, ରେଭେନ୍ସା

କଲେଜରେ ବେତାର ଶିକ୍ଷାକେନ୍ଦ୍ର, ଜାତୀୟ ରାଜପଥ, ଦୈତାରୀରୁ ପାରାଦ୍ୱୀପ ଏକ୍ସପ୍ରେସ ସଡ଼କ, ବ୍ରହ୍ମପୁର ମେଡ଼ିକାଲ କଲେଜ, ବୁର୍ଲା ଇଞ୍ଜିନିୟରିଂ କଲେଜ, ରେଜିଓନାଲ କଲେଜ ଅଫ୍ ଏଜୁକେସନ, ରାଉରକେଲା ଇଞ୍ଜିନିୟରିଂ କଲେଜ, ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ଇତ୍ୟାଦି ତାଙ୍କର କୃତି । କେନ୍ଦ୍ରରେ ମନ୍ତ୍ରୀ ଥିବାବେଳେ ଫ୍ରାନ୍ସ ସରକାରଙ୍କ ସହିତ ଚୁକ୍ତିକରି କୋରାପୁଟରେ ଆଲୁମିନିୟମ୍ କାରଖାନା ଓ ବ୍ରିଟିଶ୍ କମ୍ପାନୀ ସହ ପରାମର୍ଶ କରି ପାରାଦ୍ୱୀପରେ ଇସ୍ପାତ କାରଖାନା ପାଇଁ ପ୍ରସ୍ତୁତ ପର୍ବ ଆରମ୍ଭ କରିଥିଲେ । ଟିକରପଡ଼ା ବୃହତ୍ତମ ବହୁମୁଖୀ ଡ୍ୟାମ, ମହାନଦୀ ବ୍ୟାରେଜ, କେନ୍ଦୁଝରଠାରେ ସ୍ପଞ୍ଜ ଆଇରନ କାରଖାନା, ସମଲ ବ୍ୟାରେଜ, ଇନ୍ଦ୍ରାବତୀ ଯୋଜନା, ଭଞ୍ଜ ବିହାର, ଜ୍ୟୋତି ବିହାର ଇତ୍ୟାଦି ପଛରେ ତାଙ୍କରି କାଉଁରି ପରଶ ବିଦ୍ୟମାନ । ଗତାନୁଗତିକ ନିୟମକୁ ଉଲଘଂନ କରି, ଭାରତ ସରକାରଙ୍କ ସ୍ୱୀକୃତି ବିନା, ଓଡ଼ିଶା ସରକାରଙ୍କ କଣ୍ଟିଜେନ୍ସିରୁ ୧୯ କୋଟି ଟଙ୍କା ଦେଇ ମାଇନର୍ ପୋର୍ଟ କାମରେ ପାରାଦ୍ୱୀପର ମେଜର ପୋର୍ଟ ନିର୍ମାଣ କେବଳ ତାଙ୍କର ସାହସିକ ପଦକ୍ଷେପ ଦ୍ୱାରା ସମ୍ଭବ ହେଲା । ଲେଖା ଓ ଗବେଷଣା ମାଧ୍ୟମରେ ବିଜ୍ଞାନକୁ ବିଶ୍ୱଦରବାରରେ ଜନପ୍ରିୟ କରିବା ପାଇଁ ଜାତିସଂଘର ୟୁନେସ୍କୋ ସଂସ୍ଥା ଜରିଆରେ ୧୯୫୧ ଠାରୁ ଆନ୍ତର୍ଜାତିକ କଳିଙ୍ଗ ପୁରସ୍କାର ଦେଉଛନ୍ତି । ମେଧାବୀ ଛାତ୍ରଙ୍କୁ ବୃତ୍ତି ଦେବା ପାଇଁ, ଦେଶର ଦୁର୍ଦ୍ଦିନରେ ଦୁଃସ୍ଥଙ୍କୁ ସାହାଯ୍ୟ ଯୋଗାଇବା ପାଇଁ ତାଙ୍କ ଦ୍ୱାରା କଳିଙ୍ଗ ଫାଉଣ୍ଡେସନ ଟ୍ରଷ୍ଟର ସୃଷ୍ଟି । ଏପରି ଅନେକ, ଅନେକ - ସବୁରି ନାମକରଣରେ କି ଉତ୍କଳୀୟତା ଭାବ ।

ଓଡ଼ିଆର ଧର୍ମ ଗୋଡ଼ଟଣା । କୋଣାର୍କ ପାଇଁ ନରସିଂହ ଅମର । ଧରମାଟା କିମ୍ବଦନ୍ତୀ । ଆଲଫ୍ରେଡ୍ ନୋବେଲଙ୍କ ନାମାନୁସାରେ ନୋବେଲ ପୁରସ୍କାର । ନିଜର ଡ଼ିଣ୍ଡିମ ପିଟିବା ପାଇଁ ସ୍ନାନାଗାର, ଶୌଚାଳୟରେ ଅନେକ ନାମଫଳକ; କିନ୍ତୁ କାହିଁକି ଏ ସମସ୍ତ ଭୁଖଣ୍ଡରେ ତାଙ୍କର ଲେସମାତ୍ର ସତ୍ତା ନାହିଁ ? ଅଞ୍ଚଳକୁ ଗଲେ ସତେ ଯେପରି କିଏ ପଛରୁ କହୁଛି - ରହିଯାଅ ପଥିକ ! ଦଣ୍ଡେ, ନିମିଷେ । ଟିକେ ଚିନ୍ତାକର ଓ କୁହ ତ ଦେଖି କିଏ ଏହାର ନିର୍ମାତା ? ପୁଣି ତାର ପ୍ରଶ୍ନ ? ସେ ସ୍ୱାଭିମାନୀ ମର୍ଯ୍ୟାଦା ପୁରୁଷକୁ

ତୁମେ ଓଡ଼ିଶା ବାସୀ ଦେଇଛ କଅଣ ? ହତାଶା, ପ୍ରତାରଣା, ନିର୍ଯ୍ୟାତନା, ବିଡ଼ମ୍ବନା, କମିଶନ୍ ? ସ୍ୱାଧୀନତା ପରେ ମଧ୍ୟ କାରାବରଣ ?

୧୯୭୭ର ନିର୍ବାଚନ ପରେ ସ୍ୱତନ୍ତ୍ର-ଜନକଂଗ୍ରେସ ମନ୍ତ୍ରୀମଣ୍ଡଳର ଏକସୂତ୍ରୀ କାର୍ଯ୍ୟକ୍ରମ ଥିଲା ବିଜୁବାବୁ ବିରୋଧରେ କମିଶନ । ଦୁଷ୍କର୍ମୀଙ୍କ ତୁଣ୍ଡରେ ପିଲୁବେନର ମୃତ୍ୟୁ, ଅଠରବାଙ୍କି ପୋଲରେ ଫାଟ । ଦିଲ୍ଲୀ ହାଇକୋର୍ଟର ତତ୍‌କାଳୀନ ନ୍ୟାୟଧୀଶ ଶ୍ରୀଯୁକ୍ତ ଏଚ.ଆର.ଖାନାଙ୍କୁ ତଦନ୍ତ ପାଇଁ ୧୯୬୭ ଅକ୍ଟୋବର ୨୬ରେ ନିଯୁକ୍ତ କରାଗଲା । ତଦନ୍ତ ପରେ ୧୯୬୯ ଜାନୁୟାରୀରେ ପ୍ରକାଶ ପାଇଲା ୭୯୨ ପୃଷ୍ଠାବ୍ୟାପି ରିପୋର୍ଟ । ଆଳୁ ଖୋଳୁ ଖୋଳୁ ମହାଦେବ । ଦୁର୍ନିତିର ପ୍ରମାଣ ନାହିଁ, ଶାସନଗତ ଅସଙ୍ଗତି ।

ସେଇଟା ବିଜୁବାବୁର ଆଦର୍ଶ । ତ୍ରିକୋଣଭୂମିବାସୀଙ୍କୁ ବନ୍ୟା ପ୍ରକୋପରୁ ରକ୍ଷା କରିବା ପାଇଁ ବିଜ୍ଞ ଇଞ୍ଜିନିୟରମାନଙ୍କ ବିରୋଧ ସତ୍ତ୍ୱେ ହୀରାକୁଦ ଜଳଭଣ୍ଡାରରେ ଜଳସ୍ତରକୁ ୧୯୬୧ ମସିହାରେ ସର୍ବୋଚ୍ଚ ସୀମାରେ ରଖିବା ପାଇଁ ନିର୍ଦ୍ଦେଶ ଦେବା, ବନ୍ୟା ଅଞ୍ଚଳରେ ପ୍ରଥମେ ଆକାଶ ମାର୍ଗରୁ ଅତ୍ୟାବଶ୍ୟକ ପଦାର୍ଥ ବିତରଣ କରାଇବା, ଘନ କୁହୁଡ଼ିରେ ବିମାନଚାଳକଙ୍କ ବାରଣ ସତ୍ତ୍ୱେ ନିଜେ କଲିକତାରୁ ଭୁବନେଶ୍ୱର ବିମାନ ଉଡ଼ାଇ ଆଣିବା ଇତ୍ୟାଦି ତାଙ୍କର ନିତିଦିନିଆ ଅଭ୍ୟାସ । ସେଥିପାଇଁ ସେ ଇଣ୍ଡୋନେସିଆର 'ଭୂମିପୁତ୍ର' । ଆଜି ଓଡ଼ିଶାରେ ଜନ୍ମ ନହୋଇ ଦେଶ ବାହାରେ ହୋଇଥିଲେ ସେ ହୋଇଥାନ୍ତେ ନେପୋଲିୟନ, ଷ୍ଟାଲିନ ଅବା ଚର୍ଚ୍ଚିଲ ।

ଜୀବନ ସଂଗ୍ରାମରେ ବିଜୟ ତାଙ୍କୁ ଉଲ୍ଲସିତ କରିନି । ପରାଜୟର ଗ୍ଲାନି ମନକୁ ଛୁଇଁନି । ଦୁଃଖ, ଅନୁଶୋଚନା ତାଙ୍କ ପ୍ରାସାଦର ରୁଦ୍ଧଦ୍ୱାରରେ କରାଘାତ କରିନି । ଜୀବନ ତାଙ୍କର ସଂଘର୍ଷମୟ । ଛତ୍ରଭଙ୍ଗ ଦେବା ଅବା ପଳାୟନପନ୍ଥୀ ହେବା ତାଙ୍କ ଅବଧାନେ ତାଙ୍କୁ ଶିକ୍ଷା ଦେଇ ନାହାନ୍ତି। ତାଙ୍କ ଟିପାଖାତାରେ ଟାଟା, ବିରଳାଠାରୁ ଯୋଗୀ ପଟ୍ଟନାୟକ, ଖଇରାତି ମିଆଁ, ସୁକୁରୁ ମହମ୍ମଦ ପର୍ଯ୍ୟନ୍ତ । ଫୁଲମାଳରେ ସେ ଅଭିଭୂତ ନୁହନ୍ତି କିମ୍ବା ଜୋତାମାଳରେ ଭୟଭୀତ ନୁହଁନ୍ତି । ଜୟ, ପରାଜୟରେ ନିର୍ବିକାର।

ହେ, ଉଦାରହୃଦୟେଷୁ !

ଗଙ୍ଗାଠାରୁ ଗୋଦାବରୀ କଳିଙ୍ଗ ସାମ୍ରାଜ୍ୟ । ଦିଲ୍ଲୀଠାରୁ ପଲ୍ଲୀ ପର୍ଯ୍ୟନ୍ତ ତୁମର ଅପ୍ରତିହତ ସୁନାମ । ଅଗସ୍ତିଙ୍କ ପରି ସକଳ ଦୁଃଖ ଯନ୍ତ୍ରଣା ସହି ସମସ୍ତଙ୍କୁ ଆର୍ଯ୍ୟକରିବା ପାଇଁ ତୁମେ ସଂକଳ୍ପବଦ୍ଧ। ମନେପଡ଼େ ୧୯୮୪ ସେପ୍ଟେମ୍ବର ୨୧ ସକାଳେ ଆଉରଙ୍ଗଜେବ ରୋଡ଼ରେ ହୋଇଥିବା ଏକାନ୍ତ ବାର୍ତ୍ତାଳାପ । ଗୁଣ ତୁମର ଅତୁଳନୀୟ, ଅବର୍ଣ୍ଣନୀୟ । ଓଡ଼ିଆ ମନର ଆଶା, ଉଦ୍ଦିପନା, ଗୌରବର ପ୍ରତୀକ । କୋଟି ଉତ୍କଳୀୟ ହୃଦୟ ସିଂହାସନର ତୁମେ ଆଜି ବି ସମ୍ରାଟ, ଆଗାମୀ କାଲିର, ଯୁଗ ଯୁଗାନ୍ତରରେ ମଧ ତୁମେ ହେବ ଯୁଗଜୟୀ ଏକାକୀ ସମ୍ରାଟ ।

# ଯାଉଁ ଆଗକୁ

**ଡକ୍ଟର କୁଳମଣି ମହାପାତ୍ର**

ମୁଁ ଶ୍ରୀ ବିଜୁ ପଟ୍ଟନାୟକଙ୍କର ଦୀର୍ଘ ଜୀବନ କାମନା କରୁଛି ସ୍ୱାଧୀନତା ପରେ କଂଗ୍ରେସ ଶାସନ ବଂଶାନୁଗତ ଶାସନରେ ପରିଣତ ହେଇଚି । ସ୍ୱାଧୀନତା ଆନ୍ଦୋଳନ ପରେ ଯେତେବେଳେ ନେହେରୁ ପ୍ରଧାନମନ୍ତ୍ରୀ ହେଲେ ସେତେବେଳେ ତାଙ୍କଠାରେ ମଧ୍ୟ ଏକଛତ୍ରବାଦୀ ଦୋଷ ଥିଲା। କିନ୍ତୁ ସ୍ୱାଧୀନତା ଆନ୍ଦୋଳନ ସମୟର ତେଜ ସେତେବେଳେ ମଉଳି ନଥିଲା। ସୁତରାଂ ନେହେରୁ ଦେଶରେ ପୁଞ୍ଜିବାଦ ଓ ଏକଛତ୍ରବାଦର ସୂତ୍ରପାତ କରିଥିଲେ ମଧ୍ୟ ତାହା ଉଗ୍ରରୂପ ଧାରଣ କରିପାରିନଥିଲା। ନେହେରୁଙ୍କ ଅନ୍ତେ ତାଙ୍କର ଯୋଉ ଉତ୍ତରାଧିକାରୀମାନେ ଶାସନ କଲେ, ସେମାନେ କ୍ରମଶଃ ଅଯୋଗ୍ୟରୁ ଅଯୋଗ୍ୟତର ହେଲେ । ଏହା ହେବା ସ୍ୱାଭାବିକ୍ । କାରଣ ଗଣତନ୍ତ୍ରର ଛାଞ୍ଚ ଉପରେ ଏକଛତ୍ରବାଦର ରାଜୁତି ଲଦିଦେଲେ ଫଳ ସବୁଠି ବିଷମୟ ହେଇଥାଏ । କଂଗ୍ରେସ ଦଳର ଦେଶକୁ ଶାସନ କରିବା ଛଡ଼ା ଅନ୍ୟକୌଣସି ନୀତି ନଥିବାରୁ ଦଳ ପରିବର୍ତ୍ତେ ସରକାର ପ୍ରାଧାନ୍ୟ ପାଇଲା ଏବଂ ରାଜ୍ୟ ସରକାର ମାନଙ୍କର ସତ୍ତାକୁ ପ୍ରାୟ ବିଲୀନ କରି କେନ୍ଦ୍ର ସରକାର ବା ପ୍ରକୃତରେ କହିବାକୁ ଗଲେ ପ୍ରଧାନମନ୍ତ୍ରୀ ଦେଶର ନିରଙ୍କୁଶ ଶାସକ ହେଲେ ।

ଏ ପରିସ୍ଥିତିକୁ ଆମେ ବଦଳାଇବା କିପରି ? ସବୁଠାରୁ ଭଲହୋଇଥାନ୍ତା ଯଦି ଦେଶର ଲୋକମାନେ ସଂଗଠିତ ଆନ୍ଦୋଳନ ଦ୍ୱାରା ଶାସନ କ୍ଷମତା ହାତକୁ ନେଇ ଥାଆନ୍ତେ ।କିନ୍ତୁ ତାହା ହେଲାନାହିଁ । ଦ୍ୱିତୀୟ ସ୍ତରରେ ଯଦି ସୁସଂଗଠିତ ଏବଂ ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ଥିବା ଦଳମାନେ ଦେଶରେ ଥାଆନ୍ତେ ତାହେଲେ ସେମାନେ କଂଗେସକୁ ହଟାଇ ବିରୋଧୀ ଦଳର ଶାସନ ସ୍ଥାପନ କରିପାରି ଥାଆନ୍ତେ । ଅବଶ୍ୟ ସ୍ୱାଧୀନତା ପ୍ରାପ୍ତିର ପରେ ପରେ କେତେ ଗୁଡ଼ିଏ ନୀତି ଭିତ୍ତିକ ଦଳ ସ୍ଥାପିତ ହୋଇଥିଲା ଓ କାର୍ଯ୍ୟକାରୀ ମଧ୍ୟ ହୋଇଥିଲା । କିନ୍ତୁ ବହୁ ଐତିହାସିକ କାରଣରୁ ସେମାନେ ଭାରତର ରାଜନୀତିରେ ଉଧେଇ ପାରିଲେ ନାହିଁ।

ବର୍ତ୍ତମାନ ଆମେ ଅନ୍ୟ ଏକ ରାଜନୀତିରେ ପ୍ରବେଶ କରିଚୁ । ଏଇ

ରାଜନୀତି କେତେକ ନେତାଙ୍କ ବ୍ୟକ୍ତିଗତ ଚମତ୍କାରିତା(Charisma)ଉପରେ ନିର୍ଭର କରୁଚି । ଏଇ ଚମତ୍କାରିତାକୁ ଭିତ୍ତି କରି ଯୋଉ ସଂଗଠନ ଗଢ଼ିଉଠିଚି ତାହାହିଁ ବର୍ତ୍ତମାନ କଂଗ୍ରେସ ପ୍ରତି ସବୁଠାରୁ ବଳିଷ୍ଠ ଆହ୍ୱାନ ।

ଏହି ପରିପ୍ରେକ୍ଷୀରେ ଓଡ଼ିଶା ରାଜନୀତିରେ ବିଜୁ ପଟ୍ଟନାୟକଙ୍କର ବିଶ୍ଳେଷଣ କରାଯାଇପାରେ । ବିଜୁ ପଟ୍ଟନାୟକ ହେଉଛନ୍ତି ଓଡ଼ିଶାର ଏକମାତ୍ର ବ୍ୟକ୍ତିତ୍ୱସମ୍ପନ୍ନ ନେତା ଯାହାଙ୍କର ନିଜସ୍ୱ ଚମତ୍କାରିତା ରହିଚି । ଅନ୍ୟ କୌଣସି ନେତାଙ୍କର ଏପରି ଆକର୍ଷଣୀ ଶକ୍ତି ନାହିଁ । ଓଡ଼ିଶାରେ କଂଗ୍ରେସ ସହ ମୁକାବିଲା କରିବା ପାଇଁ ସେ ହଉଚନ୍ତି ସବୁଠାରୁ ଧୁରନ୍ଧର ବ୍ୟକ୍ତି । ବିହାର, ଉତ୍ତରପ୍ରଦେଶ, ମଧ୍ୟପ୍ରଦେଶ, ମହାରାଷ୍ଟ୍ର ଏବଂ ଗୁଜୁରାଟ ପ୍ରଭୃତି ରାଜ୍ୟରେ ବିଜୁ ପଟ୍ଟନାୟକଙ୍କ କାଟର କୌଣସି ନେତା ନ ଥିବାରୁ ସେଠାରେ ବିରୋଧୀ ଦଳ ମାନଙ୍କ ମଧ୍ୟରେ ଆଭ୍ୟନ୍ତରୀଣ ଗଣ୍ଡଗୋଳ ଲାଗି ରହିଚି । କଂଗେସକୁ ହଟାଇବା ସେଠାରେ ଓଡ଼ିଶା ଭଳି ଏତେ ସୁନିଶ୍ଚିତ ନୁହେଁ । ଓଡ଼ିଶାରେ ବିଜୁ ପଟ୍ଟନାୟକଙ୍କ ହେତୁ କୌଣସି ଦଳଗତ ଆଭ୍ୟନ୍ତରୀଣ କନ୍ଦଳ ମୁଣ୍ଡ ଟେକିବା ସମ୍ଭବ ହେଇ ନାହିଁ । ଏଇ ଦୃଷ୍ଟିରୁ ଦେଖିଲେ ଭାରତୀୟ ରାଜନୀତିରେ ବିଜୁ ପଟ୍ଟନାୟକଙ୍କ ଭଳି ବ୍ୟକ୍ତିମାନଙ୍କର ଆବିର୍ଭାବ ଖୁବ୍ ମହତ୍ୱପୂର୍ଣ୍ଣ ।

ବିଜୁ ପଟ୍ଟନାୟକଙ୍କ ଭଳି ନେତାମାନେ ଆମ ଦେଶରୁ ବଂଶପରମ୍ପରାଗତ ଶାସନ ହଟାଇବାକୁ ସମର୍ଥ ହେବେ । ଏହାଦ୍ୱାରା ଦେଶ ନିଶ୍ଚିତ ଭାବରେ ପାଦେ ଆଗେଇବ । ଏହାପରେ ଦେଶର ଶାସନ ଓ ଅର୍ଥନୀତିର ସଂପୂର୍ଣ୍ଣ ପରିବର୍ତ୍ତନ କରି ସମାଜରେ ସମାନତା ଓ ସମ୍ପନ୍ନତା ସ୍ଥାପନ କରିବା ପାଇଁ ନୂତନ ପ୍ରକାରର ରାଜନୀତିର ଆବଶ୍ୟକତା ପଡ଼ିବ । ସେଠି ବ୍ୟକ୍ତିଗତ ଚମତ୍କାରିତା ଆଉ କାମ ଦେବନାହିଁ ।

ବର୍ତ୍ତମାନ ରାଜନୀତିରେ ଏକ ମାରାତ୍ମକ ଭ୍ରାନ୍ତି ରହିଚି । ବର୍ତ୍ତମାନ ଆମ ପ୍ରଚାରର ଭିତ୍ତି ହଉଚି ଯେ ଯୋଜନା ଠିକ୍ ଅଛି, ଅର୍ଥନୀତି ଠିକ୍ ଅଛି-କେବଳ କାର୍ଯ୍ୟକାରୀ କରିବା ଲୋକେ ଅପାରଗ ଓ ଦୁର୍ନୀତିଗ୍ରସ୍ତ । ତାଙ୍କୁ ନିକାଲି ଦେଇ ଯଦି ଦକ୍ଷ ଓ ସଚ୍ଚୋଟ ଲୋକଙ୍କ ହାତରେ ଶାସନ ଦିଆଯାଏ ତା ହେଲେ ଦେଶ ସୁଧୁରି ଯିବ । କିନ୍ତୁ ଆମକୁ ସ୍ପଷ୍ଟ ରୂପେ ବୁଝିବାକୁ ହେବ ଯେ ବର୍ତ୍ତମାନର ଯୋଜନାକୁ ଦେଶର ଶୋଷଣକାରୀମାନେ,

ଦେଶକୁ ଶୋଷଣ କରିବା ପାଇଁ ପ୍ରସ୍ତୁତ କରିଛନ୍ତି । ଏହି ଯୋଜନାକୁ କାର୍ଯ୍ୟକାରୀ କରୁଥିବା ଲୋକେ ଯେତେ ଦକ୍ଷ ଓ ସଚ୍ଚୋଟ ହେଲେ ମଧ୍ୟ ତାହାର ମୁଖ୍ୟ କୁଫଳକୁ ରୋକି ପାରିବେ ନାହିଁ । ପୁଣି ବର୍ତ୍ତମାନର ସାମାଜିକ ବ୍ୟବସ୍ଥାରେ ଶାସନକର୍ତ୍ତାମାନଙ୍କ ପକ୍ଷରେ ସାଧୁତା ଓ ସଚ୍ଚୋଟତା ରକ୍ଷା କରିବା ଅସମ୍ଭବ ।

ମୁଁ ଆଶା କରୁଚି, ବିଜୁ ପଟ୍ଟନାୟକ ଦେଶକୁ ଗୋଟିଏ ପାଦ ଆଗେଇନବା ଦ୍ୱାରା ଏକ ଐତିହାସିକ କାର୍ଯ୍ୟ ସମ୍ପାଦନ କରିପାରିବେ । ଏହାଦ୍ୱାରା ଲୋକମାନଙ୍କ ମଧ୍ୟରେ ଯେଉଁ ଚେତନା, ଯେଉଁ ଉତ୍ସାହ ଜନ୍ମିବ ତାହା ଆମକୁ ଦ୍ୱିତୀୟ ପାଦ ଆଗେଇବାରେ ସାହାଯ୍ୟ କରିବ ।

ଗୋଟିଏ ଦେଶ ପକ୍ଷରେ ପାଦେ ଆଗେଇବା ଏକ ବିରାଟ ବ୍ୟାପାର। ଏହି କାମ କରିବା ପାଇଁ ବିଜୁ ପଟ୍ଟନାୟକଙ୍କ ହାତ ସହସ୍ର ବଜ୍ରର ଶକ୍ତିରେ ଶକ୍ତିମାନ ହଉ ।

# ବିଜୁବାବୁଙ୍କ ବ୍ୟକ୍ତିତ୍ୱରେ ବିରୋଧ ଭୂମିକା

**ନବକିଶୋର ଦାସ**

ବିଜୁବାବୁ ଓଡ଼ିଶାର ଏକମାତ୍ର ନେତା, ଯେ କଂଗ୍ରେସ(ଇ)କୁ ଅନ୍ତତଃ ବିରୋଧ କରି ପାଞ୍ଚଟି ଉପନିର୍ବାଚନ ଜିଣି ପାରିଛନ୍ତି । ବିଜୁ ବାବୁ ଯେତେବେଳେ କଂଗ୍ରେସରେ ଥିଲେ, ସେତେବେଳ କାଳର କଂଗ୍ରେସ ଆଉ ଭାରତରେ ନାହିଁ। ଗୋଟିଏ ବଂଶ କଳକୌଶଳ ଓ ପ୍ରଚୁର ଅର୍ଥ ବଳରେ ଭାରତର ଭାଗ୍ୟଡ଼ୋରି ଦିଲ୍ଲୀ ଦରବାରରେ ଧରି ବସିଯାଇଚନ୍ତି । ଯେଉଁମାନେ ଭାରତ ସରକାର ଚଳାଉଛନ୍ତି, ସେମାନଙ୍କ ମଧ୍ୟରେ ପ୍ରଧାନମନ୍ତ୍ରୀଙ୍କ ପୋଖତ ନେତୃତ୍ୱ ନାହିଁ, ଯଦିଚ ସେ ଭଲ କାମ କିଛି କରିବାକୁ ବ୍ୟଗ୍ର । ଯୁବକସୁଲଭ ଉତ୍ସାହ ରାଷ୍ଟ୍ରନୀତିର ଏକମାତ୍ର ପ୍ରୟୋଜନ ନୁହେଁ ।

ବିଜୁବାବୁ ଶିଳ୍ପରେ ମନ ନିବେଶ କରିଥିଲେ ହୁଏତ ଭାରତରେ ଜଣେ ଧନପତି ହେବା ଖ୍ୟାତି ଅର୍ଜନ କରିପାରିଥାନ୍ତେ । ସେ ଲୁଗାକଳ, ଲୁହା ଟ୍ୟୁବ୍ କାରଖାନା କଲେ ମଧ୍ୟ, ସେ କାରଖାନା ରଖିପାରିଲେ ନାହିଁ । ଏକ ସାଧାରଣ ମଧ୍ୟବିତ୍ତ ପରିବାରରେ ଜନ୍ମଲାଭ କରି ତାଙ୍କ ମନରେ ଜାତୀୟତା, ଓଡ଼ିଶା ପ୍ରତି ଅକୃତ୍ରିମ ଶ୍ରଦ୍ଧା ଓ ଓଡ଼ିଶାର ଉନ୍ନତି ପାଇଁ ପ୍ରବଳ ଆଗ୍ରହ ଓ ଆକାଂକ୍ଷା ଅଛି ସତ; ମାତ୍ର ତାଙ୍କ ଦଳ ଓଡ଼ିଶାରେ କଂଗ୍ରେସ (ଇ) କୁ ପୂର୍ଣ୍ଣ ପରାଜୟ କରି ଶାସନ ଡ଼ୋରି ହାତକୁ ନେବା ଏଡ଼େ ସହଜସାଧ୍ୟ ନୁହେଁ । କାରଣ ମଫସଲରେ ରହି ମୁଁ ଯାହା ଜାଣୁଛି ସମସ୍ତ ନିରକ୍ଷରଭୋଟ କିଣା ବିକାରେ ଚାଲିଛି । ଏ ଦୁର୍ନୀତି ଅତି ବ୍ୟାପକ ଓ ସେଥିପାଇଁ ଶ୍ରୀମତୀ ଗାନ୍ଧୀ ଆଇନର ସଂଶୋଧନ କରି ଦେଇଛନ୍ତି, ୧୯୭୪ ମସିହାରୁ ନିର୍ବାଚନରେ ପ୍ରାର୍ଥୀମାନଙ୍କର ଖର୍ଚ୍ଚ ସୀମା ୯୦ ଉପଧାରା ଅନୁସାରେ ସ୍ଥିର ହେଲେମଧ୍ୟ ଲୋକ ପ୍ରତିନିଧି ଆଇନରେ ୭୭ ଦଫାରେ ଏକ ପରିବର୍ତ୍ତନ ଯୋଗ ହୋଇ କୁହାଯାଇଛି ଯେ, ପ୍ରାର୍ଥୀ ଯାହା ପାଇବେ ଓ ଖର୍ଚ୍ଚ କରିବେ, ତାହା ନିର୍ବାଚନ ଖର୍ଚ୍ଚ ଫର୍ଦ୍ଦଭୁକ୍ତ ହେବନାହିଁ ।

ଆଇନ ବିରୋଧ ନେତୃତ୍ୱର ବିରୁଦ୍ଧରେ, ଗାଁରେ କୌଣସି ଦଳର ପୂର୍ବଭଳି ଗଭୀର ସଂପର୍କ ବା କର୍ମୀ ନାହାନ୍ତି । ନିର୍ବାଚନ ମାସକ ପୂର୍ବରୁ ପ୍ରାର୍ଥୀ, ନେତା, କର୍ମୀ କଳା ଟଙ୍କା ମୁଣି ଧରି ନିର୍ବାଚନ ମଣ୍ଡଳୀରେ ପହଞ୍ଚନ୍ତି।

ଏପରି ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ବିଜୁବାବୁ ଓ ଜନତା ଦଳକୁ ହେବାକୁ ପଡୁଛି । ପୁଣି ଲୋକଦଳ, ଭାରତୀୟ ଜନତା ଦଳ ଥରେ ଏକଜୁଟ ହେଲେ ମଧ, ଏବେ ଏକ ସାମୁଖ୍ୟ ମଧ ଗଢ଼ି ପାରୁନାହାନ୍ତି । ଏପରି ପରିସ୍ଥିତିରେ ବିଜୁବାବୁଙ୍କୁ ବ୍ୟକ୍ତିଗତ ଭାବରେ ସମର୍ଥନ ମିଳିଲେ ମଧ ଦଳ ଏକ ଶାସନ ଗଢ଼ିବା ଓଡ଼ିଶାରେ ସହଜ ନୁହେଁ । କର୍ଣ୍ଣାଟକ ପରିସ୍ଥିତି ଠାରୁ ଓଡ଼ିଶାର ପରିସ୍ଥିତି ଅନୁକୂଳ ଥିଲେ ମଧ୍ୟ ପ୍ରତିବନ୍ଧକ, ସଙ୍ଗଠନରେ ଶିଥିଳତା ଓ ପ୍ରଚୁର ପ୍ରୟୋଜନୀୟ ଅର୍ଥର ସଂଗ୍ରହ । ବିଜୁବାବୁ ନିଜ ଶକ୍ତି ମୁତାବକ ନିଶ୍ଚୟ ଚେଷ୍ଟା କରିବେ; ମାତ୍ର ଜଣେ ନେତାଙ୍କର ବ୍ୟକ୍ତିଗତ ଦକ୍ଷତା ଓ ଶକ୍ତି ସୀମାବଦ୍ଧ । ଜନ ଜାଗରଣ ପାଇଁ ଯେଉଁ ଲୋକ ଆନ୍ଦୋଳନ ଶତକଡ଼ା ୭୦% ଜନତାଙ୍କୁ ପ୍ରଭାବିତ କରିପାରନ୍ତା, ତାହା ଜନତା ଦଳ ଓଡ଼ିଶାରେ ଏ ଯାଏ କରିପାରିନାହିଁ । ତଥାପି ବିଜୁବାବୁ ନମସ୍ୟ ଓ ବିରୋଧର ଏକ ଶ୍ରେଷ୍ଠ ଅଲିଭା ପ୍ରତୀକ ।

# ବିଜୁବାବୁଙ୍କ ବଳିଷ୍ଠ ନେତୃତ୍ୱରେ
# ପ୍ରାଥମିକ ଶିକ୍ଷାର ସର୍ବାଙ୍ଗୀନ ଉନ୍ନତି ଯୋଜନା

**ଡକ୍‌ଟର ରାଧାନାଥ ରଥ**

୧୯୬୨ ବିଜ୍ଞାନ କଂଗ୍ରେସ ପରେ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ସହିତ ଓଡ଼ିଶାରେ ଶିକ୍ଷାର ଉନ୍ନତି ଲାଗି ନାନା ଆଲୋଚନା ହୋଇଥିଲା । ମୋ ସହିତ ସେ ଏକମତ ହୋଇଥିଲେ ଯେ ଶିକ୍ଷାକ୍ଷେତ୍ରରେ ପ୍ରଥମେ ପ୍ରାଥମିକ ଶିକ୍ଷାର ଗୁଣାତ୍ମକ ବିକାଶର ଆବଶ୍ୟକତା ରହିଛି । ଏଥିଲାଗି ସେ ଗୋଟିଏ କମିଟି ଗଠନ କଲେ । ସେଥିରେ ସେ ସଭାପତି, ଶିକ୍ଷାମନ୍ତ୍ରୀ, ମୁଖ୍ୟ ସଚୀବ, ଶିକ୍ଷା ସଚିବ, ଡ଼ି.ପି.ଆଇ., ପ୍ରାଥମିକ ସ୍କୁଲ ବହି ତିଆରି ଲାଗି ବିଶେଷ ଆଗ୍ରହୀ ଜାତୀୟ କବି ଶ୍ରୀ ବୀରକିଶୋର ଦାସ ଓ ଛାପାଖାନା ବିଶେଷଜ୍ଞ ଶ୍ରୀ ଶକ୍ତି ପ୍ରସାଦ ମିଶ୍ର ଓ ମୁଁ ଏହାର ସଭ୍ୟଥିଲୁ । ଆଲୋଚନା ବେଳେ ନିଷ୍ପତ୍ତି ହେଲା ଯେ, ପ୍ରାଥମିକ ସ୍ତରରେ ପାଠ୍ୟପୁସ୍ତକଗୁଡ଼ିକର ଜାତୀୟକରଣ ହେବା ଦରକାର । ପ୍ରଚଳିତ ପାଠ୍ୟ ପୁସ୍ତକର ବିଶ୍ଳେଷଣ କରି ବିଶିଷ୍ଟ ଲେଖକମାନଙ୍କ ଦ୍ୱାରା ନୂତନ ଆଭିମୁଖ୍ୟ ରଖି ନୂଆଧରଣର ବହି ପ୍ରସ୍ତୁତ ହେବ । ପିଲାଙ୍କ ମନଲାଖି ଚିତ୍ତାକର୍ଷକ ବହୁମୁଖୀ ରଙ୍ଗିନ୍ ଛବିମାନ ସେଥିରେ ରହିବ ଏବଂ ଏହାର ମୁଦ୍ରଣ ମଧ୍ୟ ଉଚ୍ଚକୋଟୀର ହେବ । ଏ ପ୍ରକାର ଜାତୀୟ କରଣ ପୁସ୍ତକ ପ୍ରକାଶନ ପାଇଁ ଗୋଟିଏ ବିଶେଷ ଧରଣର ଗୁଣାତ୍ମକ ଆଧୁନିକ ଛାପାଖାନା ସ୍ଥାପନ କାରାଯିବାର ନିଷ୍ପତ୍ତି ମଧ୍ୟ ହେଲା । ଏଥିରେ କୋଟିଏ ପର୍ଯ୍ୟନ୍ତ ଟଙ୍କା ଖର୍ଚ୍ଚ ହେବାର ପ୍ରସ୍ତାବକୁ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ସଙ୍ଗେ ସଙ୍ଗେ ଗ୍ରହଣ କରିନେଲେ । ତାଛଡ଼ା ମୁଁ ଆଉ ଗୋଟିଏ ପ୍ରସ୍ତାବ ବିଶେଷ ଜୋରଦେଇ ଆଗତ କରିଥିଲି ଯେ, ପିଲାମାନଙ୍କୁ ବିଜ୍ଞାନ ଓ ଆଧୁନିକ ଯୁଗ ଆଦର୍ଶରେ ଅନୁପ୍ରାଣୀତ ତଥା ଉପଯୁକ୍ତ ଭାବରେ ଶିକ୍ଷାପ୍ରାପ୍ତ କରିବା ପାଇଁ ପ୍ରତ୍ୟେକ ସ୍କୁଲରେ ଗୋଟିଏ ଅଧିକ ବଖରା ତିଆରି କରି ସେଠାରେ ବହୁ ପ୍ରକାରର ଯାନ୍ତ୍ରିକ ଖେଳଣା ରଖାଯାଉ । ଏହି ଘରର କାନ୍ଥରେ ହୀରାକୁଦ, ରାଉରକେଲା, ଜେଟ୍ ଉଡ଼ାଜାହାଜ ପ୍ରଭୃତି ଅତ୍ୟାଧୁନିକ ଇଂଜିନିୟରିଂ କୃତିତ୍ୱ କଳକାରଖାନା, ଯନ୍ତ୍ରପାତିର ବଡ଼ ବଡ଼ ରଙ୍ଗିନ୍ ଚିତ୍ର ରଖାଯାଉ । ଅର୍ଥାତ

ଯେଉଁ ପିଲାମାନେ ଘରେ ଏ ପ୍ରକାର ଖବର ପାଇପାରୁ ନାହାନ୍ତି, ସେମାନଙ୍କଠାରେ ବୈଜ୍ଞାନିକ ମନୋବୃତ୍ତି ଓ ଯନ୍ତ୍ରପାତି ପ୍ରୟୋଗ ବିଜ୍ଞାନରେ ଆଗ୍ରହ ସୃଷ୍ଟି କରିବା ପାଇଁ ସ୍କୁଲରେ ତାହାର ବ୍ୟବସ୍ଥା କରାଯାଉ । ଏହି ଯାନ୍ତ୍ରିକ ଖେଳନା ସବୁ ସରକାରୀ ଦାୟିତ୍ୱରେ ଉତ୍ପାଦନ କରାଯାଉ । ମୋର ଏହି ପ୍ରସ୍ତାବରେ ମଧ୍ୟ ସେ ରାଜି ହୋଇଥିଲେ । ତୃତୀୟରେ ପିଲାମାନଙ୍କ ପାଇଁ ଉପଯୁକ୍ତ ଚଳଚିତ୍ର ତିଆରି କରି ଭ୍ରାମ୍ୟମାଣ ଚଳଚିତ୍ର ପ୍ରଦର୍ଶକ ଗାଡ଼ିରେ ସ୍କୁଲମାନଙ୍କରେ ପ୍ରଦର୍ଶିତ ହେଉ । ଏହି ପରି ପ୍ରାଥମିକ ସ୍କୁଲ ପିଲାଙ୍କପାଇଁ ବହୁବିଧ ଆଧୁନିକ ଶିକ୍ଷାପ୍ରଣାଳୀ ପଦ୍ଧତି ବିଷୟରେ ବିଶଦ ଆଲୋଚନା ହୋଇଥିଲା । ବିଜୁବାବୁ ମୋର ସମସ୍ତ ପ୍ରସ୍ତାବରେ ରାଜି ହୋଇ ଏହାର ପୂର୍ଣ୍ଣାଙ୍ଗ ରୂପରେଖ ପ୍ରସ୍ତୁତ କରି ଆସନ୍ତା ସଭାରେ ଉପସ୍ଥାପିତ କରିବାପାଇଁ ମୋତେ ଅନୁରୋଧ କରିଥିଲେ । ମୁଁ ବିଜୁବାବୁଙ୍କର ପ୍ରଗତିଶୀଳ ଦୃଷ୍ଟିକୋଣ ତଥା ଦୃଢ଼ ନିଷ୍ପତ୍ତିରେ ଅତ୍ୟନ୍ତ ଉତ୍ସାହିତ ହୋଇଥିଲି ।

ମୁଁ ପିଲାମାନଙ୍କର ବୈଜ୍ଞାନିକ ଚିନ୍ତାଧାରାର ବିକାଶ ପାଇଁ ଦୁଇ ତିନି ପୃଷ୍ଠାର ଗୋଟିଏ ଚିଠା ତିଆରି କଲି । ପ୍ରତ୍ୟେକ ସ୍କୁଲରେ ଗୋଟିଏ ଖେଳଘର ରହିବାର ଯୋଜନା ହେଲା । ତାର ନା ରହିଲା 'କଳଘର' । କି ପ୍ରକାର ଚଳଚିତ୍ର ଏବଂ କେଉଁ ବିଷୟରେ ଅତିରିକ୍ତ ପାଠ୍ୟପୁସ୍ତକ ପ୍ରକାଶ କରାଯାଇ ପାରିବ, କି ପ୍ରକାର ବିଷୟବସ୍ତୁ ଉପରେ ଗଳ୍ପ ଲେଖାଯାଇ ପାରିବ ତାର ସୂଚନା ରହିଲା । ଜାତୀୟ କବି ବୀରକିଶୋର ଦାସ ନୂତନ ଧରଣର ପାଠ୍ୟ ପୁସ୍ତକ ଲେଖା ଦିଗରେ ବହୁତ ଉତ୍ସାହ ପ୍ରଦର୍ଶନ କରିଥିଲେ । ସେତେବେଳକୁ ଶ୍ରୀ ଶକ୍ତିପ୍ରସାଦ ମିଶ୍ର ବିଲାତରୁ ଆଧୁନିକ ମୁଦ୍ରଣ ଶୈଳୀ ବିଷୟରେ ବିଶେଷ ଦକ୍ଷତା ଅର୍ଜନ କରି ସରକାରୀ ପ୍ରେସ୍‌ରେ କାର୍ଯ୍ୟ କରୁଥାନ୍ତି । ସେ ଉତ୍କୃଷ୍ଟ ଧରଣର ପାଠ୍ୟପୁସ୍ତକ ପ୍ରକାଶନ ପାଇଁ ଗୋଟିଏ ନୂତନ ଛାପାଖାନାର ବିଶଦ ଯୋଜନା ତିଆରି କଲେ । ଏ ସବୁ ବିବରଣୀ କମିଟି ଆଗରେ ଉପସ୍ଥାପିତ ହେଲା । ଆମ ପ୍ରସ୍ତାବରେ ତତ୍‌କାଳୀନ କେତେକ ଶିକ୍ଷାକର୍ତ୍ତା ଭୟଙ୍କର ଆପତ୍ତି ଉଠାଇଥିଲେ । ସେମାନଙ୍କ ଭିତରୁ ଜଣେ ମୋ ପ୍ରସ୍ତାବକୁ ହସରେ ଉଡ଼ାଇଦେଲେ ଯେ ବର୍ତ୍ତମାନ ଅନେକ ପ୍ରାଥମିକ ସ୍କୁଲରେ ଗୋଟିଏ ବୋଲି ଭଲ ବଖରା ଘର ନାହିଁ, ଅଥଚ ମୋ ପ୍ରସ୍ତାବରେ ଅଧିକ ଗୋଟିଏ ଘର ପାଇଁ ବ୍ୟବସ୍ଥା ହୋଇଛି । ତତ୍‌କାଳୀନ ଶିକ୍ଷାମନ୍ତ୍ରୀ ଆମ ଦେଶରେ ବିଜ୍ଞାନ

ବିଷୟରେ ଏତେ ବେଶୀ ଜୋର୍ ଦେବା ଉଚିତ୍ ନୁହେଁ ବୋଲି ଆପତ୍ତି କରିଥିଲେ । କିନ୍ତୁ ବିଜୁବାବୁ ଏମାନଙ୍କର ଆପତ୍ତି ଅଭିଯୋଗ ପ୍ରତି ଭୃକ୍ଷେପ ନକରି ମୋ ପ୍ରସ୍ତାବକୁ ସଂମ୍ପୂର୍ଣ୍ଣରୂପେ ଗ୍ରହଣ କରି ନେଲେ ଏବଂ କହିଲେ, ଯେ ବିନା ଅର୍ଥବ୍ୟୟରେ ଶିକ୍ଷାର ପ୍ରସାର ତଥା ଗୁଣାତ୍ମକ ମାନବୃଦ୍ଧି ସମ୍ଭବ ନୁହେଁ । ଏହି ସଭାରେ ବହି ଜାତୀୟକରଣ ନୀତି ଗୃହୀତ ହେଲା ଏବଂ ପୁସ୍ତକ ପ୍ରକାଶନ ପାଇଁ ଗୋଟିଏ ଅତି ଆଧୁନିକ ଛାପାଖାନା ତିଆରିର ଯୋଜନା ହେଲା । ଏଥିପାଇଁ ସମସ୍ତ ଖର୍ଚ୍ଚର ବ୍ୟବସ୍ଥା ହେବବୋଲି ସେ ଘୋଷଣା କଲେ । ବର୍ତ୍ତମାନ ସୁଦ୍ଧା ସରକାରଙ୍କଦ୍ୱାରା ପ୍ରକାଶିତ ପ୍ରାଥମିକ ଶିକ୍ଷା କାର୍ଯ୍ୟକ୍ରମ ପୁସ୍ତିକାରେ ବୈଜ୍ଞାନିକ ଚିନ୍ତାଧାରାର ସୃଷ୍ଟି ଓ ପ୍ରସାର ପାଇଁ ମୋ ଦ୍ୱାରା ଲେଖାହୋଇଥିବା ଏହି ତିନି ପୃଷ୍ଠା ସେହିପରି ରହିଛି । ଯଦିଚ ବିଜୁବାବୁଙ୍କ ପରେ ପାଠ୍ୟପୁସ୍ତକ ପ୍ରକାଶନ ବ୍ୟତୀତ ଅନ୍ୟ କୌଣସି ପଦକ୍ଷେପ ନିଆ ହୋଇନାହିଁ ।

ଏହି ସିଦ୍ଧାନ୍ତରେ ବୀରବାବୁ, ଶକ୍ତି ପ୍ରସାଦ ବାବୁ ଏବଂ ମୁଁ ବହୁତ ଉତ୍ସାହିତ ହୋଇଥିଲୁ । ଆମେ ଏହାର ଯୋଜନା ବିଷଦ ଭାବରେ କଲୁ । ବିଜୁବାବୁ ସିନା କହିଦେଲେ କିନ୍ତୁ ତାଙ୍କରି ଅମଲାତାନ୍ତ୍ରିକ ଅଫିସରମାନେ ତାଙ୍କ ଆଦେଶକୁ ଗୁରୁତ୍ୱର ସହିତ ବିଚାର କରି ନଥିଲେ । ତତ୍କାଳୀନ ସରକାରୀ ପ୍ରେସ୍ ସୁପରିଟେଣ୍ଡେଣ୍ଟ ମୁଖ୍ୟ ସଚିବ, ଶିକ୍ଷା ସଚିବଙ୍କୁ ଧରି ନୂଆ ପାଠ୍ୟପୁସ୍ତକ ପ୍ରକାଶନ ପାଇଁ ନୂଆ ଛାପାଖାନା ବସାଇବା ପ୍ରସ୍ତାବକୁ ବାତିଲ୍ କରାଇ ଦେଲେ । ପ୍ରଚଳିତ ସରକାରୀ ଛାପାଖାନାରେ ରାତି ୧୦ ଟାରୁ ସକାଳ ୬ଟା ସମୟ ଭିତରେ ନୂଆ ପାଠ୍ୟପୁସ୍ତକ ଛପାଇବା ସିଦ୍ଧାନ୍ତ ବିଜୁବାବୁଙ୍କ ଅଜ୍ଞାତରେ ଆଦେଶ କରାଇ ନେଲେ । ଆମ ରାଜ୍ୟରେ କୌଣସି ଅଫିସର ମୁଖ୍ୟକର୍ତ୍ତା ଚାହାନ୍ତି ନାହିଁ ଯେ ତାଙ୍କ ସହଯୋଗୀ ଆଉ ଗୋଟିଏ ଅନୁଷ୍ଠାନ ହେଉ । ଆଉ ଯେକୌଣସି ସହଯୋଗୀ ଅନୁଷ୍ଠାନକୁ ସେମାନେ ସେମାନଙ୍କର ଅଖଣ୍ଡ କ୍ଷମତାର ପ୍ରତିଦ୍ୱନ୍ଦିମୂଳକ ସଂସ୍ଥା ହିସାବରେ ଦେଖନ୍ତି । ବର୍ତ୍ତମାନ ମଧ୍ୟ ସେ ପ୍ରକାର ମନୋଭାବ ଓଡ଼ିଶାର ଅଫିସର ମାନଙ୍କର ରହିଛି । ଯାହାହେଉ ମୁଁ ଏହା ଶୁଣିଲା ପରେ ସେହି କମିଟି ଆଗରେ ଏକଥା ଉଠାଇଲି ଏବଂ କହିଲି ଯେ ଓଡ଼ିଶାର ପାଠ୍ୟପୁସ୍ତକ ଜାତୀୟ କରଣ ଏତେ ସହଜ ସାଧ୍ୟ ନୁହେଁ । ବହୁ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀଙ୍କ ତରଫରୁ ଏହା ବିରୁଦ୍ଧରେ

ଷଡ଼ଯନ୍ତ୍ର ହେବ । ମୁଁ ମୁଖ୍ୟମନ୍ତ୍ରୀଙ୍କୁ ଏ ବିଷୟରେ ସାବଧାନ କରାଇ ଦେଲି ଏବଂ ମୁଖ୍ୟ ସଚିବ ଏବଂ ଶିକ୍ଷା ସଚିବଙ୍କ ସିଦ୍ଧାନ୍ତ ବିରୁଦ୍ଧରେ ତୀବ୍ର ପ୍ରତିବାଦ କଲି । ମୁଁ ମତ ଦେଲି ଯେ ସରକାରୀ ଛାପାଖାନାରେ ରାତିରେ ଏ ପ୍ରକାର ଗୁଣାତ୍ମକ ପାଠ୍ୟପୁସ୍ତକ ପ୍ରକାଶନ ଆଦୌ ସମ୍ଭବ ନୁହେଁ । ନୂଆ ଛାପାଖାନା ନହୋଇ ପୁରୁଣା ଛାପାଖାନାରେ ମୁଦ୍ରିତ ହେବା ପ୍ରସ୍ତାବ ଯଦି ସତ୍ୟ ହୋଇଥାଏ, ତେବେ ମୁଁ ଏ ଯୋଜନାରୁ ଓହରି ଯିବି । ସାଙ୍ଗେ ସାଙ୍ଗେ ବିଜୁବାବୁ ଶିକ୍ଷା ସଚିବଙ୍କ ଉପରେ ଖପ୍‌ପା ହୋଇ ତାଙ୍କୁ ପଚାରି ଥିଲେ ଯେ ତାଙ୍କ ସିଦ୍ଧାନ୍ତ ବିରୁଦ୍ଧରେ ଅନ୍ୟ ଆଦେଶ ଦେବାର ଅଧିକାର ସେମାନେ କିପରି ପାଇଲେ । ଶିକ୍ଷା ସଚିବ ଉତ୍ତରରେ କହିଥିଲେ ଯେ 'ଆପଣ କମିଟିରେ ଯେଉଁ ପ୍ରତିଶ୍ରୁତି ଦେଇଥିଲେ ତାହା ସରକାରୀ ସିଦ୍ଧାନ୍ତ ନୁହେଁ ବୋଲି ଆମେ ଅନ୍ୟ ସମ୍ଭାବନାକୁ ପରୀକ୍ଷା କରି ଦେଖିଲୁ'। ଏଥିରେ ବିଜୁବାବୁ ଆହୁରି ରାଗିଯାଇ କହିଥିଲେ ଯେ ସେ ଯେଉଁଠି ଏବଂ ଯେଉଁ ଅବସ୍ଥାରେ ଯାହା ଘୋଷଣା କରିବେ ତାହା ମୁଖ୍ୟମନ୍ତ୍ରୀଙ୍କର ଚୂଡ଼ାନ୍ତ ସିଦ୍ଧାନ୍ତ । ଏ ବିଷୟରେ ମୁଁ ଆପଣମାନଙ୍କୁ ବହୁବାର କହିଲିଣି, ତଥାପି ଆପଣମାନେ ସବୁବେଳେ ଟାଳଟୁଳ ନୀତିରେ କାମ କରୁଛନ୍ତି । ଏହା କହି ସେ ସେମାନଙ୍କୁ ସାବଧାନ କରାଇଦେଲେ ଯେ ଭବିଷ୍ୟତରେ ଏହା ଯେପରି ନଘଟେ । ତାପରେ ଆଦେଶ ହେଲା ଯେ ନୂଆ ଛାପାଖାନାର ସମସ୍ତ ଯନ୍ତ୍ରପାତିର ଚୂଡ଼ାନ୍ତ ଯୋଜନା ଅତିଶୀଘ୍ର ତାଙ୍କ ପାଖରେ ପହଁଚିବା ଦରକାର ଏବଂ ସେ ନିଜେ ତତ୍‌କାଳୀନ ଭାରତ ସରକାରଙ୍କର ଅର୍ଥ ସଚିବ ଶ୍ରୀ ମୋରାରଜୀ ଦେଶାଇଙ୍କ ଠାରୁ ବୈଦେଶିକ ମୁଦ୍ରା ଅନୁମତି ଆଣି ଯନ୍ତ୍ରପାତି ଅଣାଇବେ । ଛାପାଖାନା ଦେଢ଼ବର୍ଷ ଭିତରେ ସଂପୂର୍ଣ୍ଣ କରିବାକୁ ପଡ଼ିବ । ଏ ପ୍ରକାର ବଳିଷ୍ଠ ଓ ନିଶ୍ଚିତ ସିଦ୍ଧାନ୍ତ ଯୋଗୁ ମୋର ବିଜୁବାବୁଙ୍କ ପ୍ରତି ବହୁତ ସମ୍ମାନ ବଢିଗଲା । ପ୍ରକୃତରେ ତାଙ୍କର ଆଗ୍ରହ ଯୋଗୁ ଦେଢବର୍ଷ ଭିତରେ ଭୁବନେଶ୍ୱରଠାରେ ନୂତନ ପାଠ୍ୟପୁସ୍ତକ ଛାପାଖାନା ପ୍ରତିଷ୍ଠିତ ହୋଇଗଲା ।

ମଝିରେ ମଝିରେ ଆମ ଯୋଜନା ବିଷୟରେ ମୁଁ ଯେତେବେଳେ ତାଙ୍କ ପାଖକୁ ଯାଇଛି ସାଙ୍ଗେ ସାଙ୍ଗେ ତାହାର ସମାଧାନ ପାଇଁ ସେ ଅଫିସରମାନଙ୍କୁ ଆଦେଶ ଦେଇଛନ୍ତି । ବିଜୁବାବୁଙ୍କ ସହିତ କାମ କରିବାରେ ମୋର ଆନନ୍ଦ ହୋଇଥିଲା । ଉଦାସୀନ ଅମଲାତାନ୍ତ୍ରିକ ଅଫିସରଙ୍କୁ କିପରି ଭାବରେ କାର୍ଯ୍ୟଦକ୍ଷ

କରାଯାଏ ତାହା ତାଙ୍କଠାରେ ଅତି ପ୍ରଚଣ୍ଡ ଭାବରେ କାର୍ଯ୍ୟକାରୀ ହେଉଥିବାର ମୁଁ ବହୁବାର ଉପଲବ୍ଧି କରିଛି ।

ବିଜୁବାବୁ ମୁଖ୍ୟମନ୍ତ୍ରୀତ୍ୱରୁ ଗଲାପରେ ମଧ୍ୟ ଏହି ପ୍ରକାଶନ ସଂସ୍ଥା ଏବଂ ଏହାର ଆନୁଷଙ୍ଗିକ କମିଟିମାନ ବହୁ ବର୍ଷ ଯାଏ ଥିଲା; କିନ୍ତୁ ଅମଲାତାନ୍ତ୍ରିକ ଷଡଯନ୍ତ୍ର ଓ ଶିକ୍ଷାମନ୍ତ୍ରୀଙ୍କ ଉଦାସୀନତା ଫଳରେ ୧୯୭୭-୭୮ ମସିହାରେ ପ୍ରାଥମିକ ଶିକ୍ଷା ବୋର୍ଡ଼ ସହିତ ଅନ୍ୟସବୁ କମିଟି ଗୁଡିକ ବାତିଲ କରିଦିଆଗଲା । ପ୍ରାଥମିକ ଶିକ୍ଷା ବୋର୍ଡ ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ଗୋଟିଏ ଅତି ବଳିଷ୍ଠ ସଂଗଠନ ରୂପେ ଠିଆ ହୋଇପାରିଥିଲା । ମୁଖ୍ୟମନ୍ତ୍ରୀ ଏହାର ସଭାପତି, ଶିକ୍ଷାମନ୍ତ୍ରୀ ସହକାରୀ ସଭାପତି ଏବଂ ଶିକ୍ଷା ସଚିବ ସଂପାଦକ ଥିଲେ । ଏଥିରେ ବହୁ କ୍ଷେତ୍ରରୁ ଶିକ୍ଷାବିତ୍‌ମାନେ ମନୋନୀତ ହୋଇ ଆସୁଥିଲେ । ପ୍ରାଥମିକ ଶିକ୍ଷକ ଓ ଆମ୍ଭେମାନେ ମୁଖ୍ୟମନ୍ତ୍ରୀଙ୍କ ଆଗରେ ପ୍ରାଥମିକ ଶିକ୍ଷା କ୍ଷେତ୍ରରେ ଦେଖାଦେଇଥିବା ଅଭାବ ଅସୁବିଧା କଥା କହିପାରୁଥିଲୁ । ଜାତୀୟ କରଣ ବହିର ସମୀକ୍ଷା ମଧ୍ୟ ଏଠାରେ ହେଉଥିଲା । ଏହା ବୋଧହୁଏ ପରାକ୍ରମଶାଳୀ ଅଫିସରଙ୍କ ପାଇଁ ଅସହ୍ୟ ହେଲା । ଆଶ୍ଚର୍ଯ୍ୟର କଥା ବିଜୁବାବୁଙ୍କ ପ୍ରତିଷ୍ଠିତ ସଂସ୍ଥା ଜନତା ସରକାରଙ୍କ ଶାସନ କାଳରେ ଲୋପ ପାଇଗଲା । ମୁଁ ବିଜୁବାବୁଙ୍କୁ ଥରେ ଏକଥା କହିଥିଲି । ସେ ଜନତା ମନ୍ତ୍ରୀଙ୍କ ଉପରେ ବିରକ୍ତ ହୋଇଥିଲେ । ତଥାପି ମନ୍ତ୍ରୀଙ୍କ ଅପେକ୍ଷା ଅଫିସରଙ୍କ କ୍ଷମତା ବେଶୀ ହେଲା । ପ୍ରାଥମିକ ଶିକ୍ଷା ପରିଷଦର ସବୁ କାର୍ଯ୍ୟ କଳାପ ବନ୍ଦ ହୋଇଗଲା । ମାଧ୍ୟମିକ ଶିକ୍ଷା ପରିଷଦ ହାତରେ ପ୍ରାଥମିକ ପାଠ୍ୟ ପ୍ରସ୍ତୁତି ଭାର ଦିଆଗଲା ଏବଂ ପାଠ୍ୟପୁସ୍ତକ ଛାପାଖାନା ନିଜ ଇଚ୍ଛା ଅନୁସାରେ ଯାହା ଇଚ୍ଛା ତାହା ଛାପିବାକୁ ଆରମ୍ଭ କଲେ । ବହି ଗୁଡ଼ିକର ପୂର୍ବ ଉତ୍କର୍ଷତା ଆଉ ରହିଲା ନାହିଁ । ଦେଶରେ ସିନା ଏସବୁ କ୍ଷେତ୍ରରେ ଅଗ୍ରଗତି ହୁଅନ୍ତା; କିନ୍ତୁ ଆମ ଓଡ଼ିଶା ରାଜ୍ୟରେ ବହୁ ଶିକ୍ଷା ଅନୁଷ୍ଠାନର ଅଧୋଗତି ହୋଇ ଚାଲିଛି । ଏଥିପାଇଁ ମନ୍ତ୍ରୀ ମାନଙ୍କର ଅପାରଗତା ଓ ଉଦାସୀନତା ଯେତିକି ଦାୟୀ, ଅଫିସରଙ୍କର ଚକ୍ରାନ୍ତ ସେତିକି ଫଳପ୍ରଦ ।

ପାଠ୍ୟପୁସ୍ତକ ପ୍ରକାଶନ ଛଡ଼ା ମେକାନୋ ଖେଳନା ତିଆରି ପାଇଁ ପାରଳାଖେମୁଣ୍ଡିରେ ଏକ କାରଖାନା ବସିଲା । ପ୍ରଥମ ବର୍ଷ ଏଥିରେ ଏକ ହଜାର ପର୍ଯ୍ୟନ୍ତ ମେକାନୋ ସେଟ୍ ତିଆରି ହେଲା । ଶିକ୍ଷା ବିଭାଗ ଲକ୍ଷେ

ଟଙ୍କା ଦେଇ ତାକୁ କିଣିଲେ ଏବଂ ତାହା ପ୍ରଥମେ ଟ୍ରେନିଂ ସ୍କୁଲମାନଙ୍କୁ ଦିଆଗଲା । କାରଣ ସେମାନେ ସେଥିରେ ଶିକ୍ଷା ପାଇଲେ ଶିକ୍ଷକ ହିସାବରେ ପିଲାଙ୍କୁ ତାଲିମ୍ ଦେବେ । 'କଳଘର' ପାଇଁ ସରକାରୀ ସ୍ତରରେ ଉପକରଣ ତିଆରି କ୍ଷେତ୍ରରେ ଏହା ମୋ ଯୋଜନାର ପ୍ରଥମ ପଦକ୍ଷେପ । କିନ୍ତୁ ବିଜୁବାବୁଙ୍କ ପରେ ସେଥିପାଇଁ ଶିକ୍ଷାବିଭାଗ ଆଉ ଟଙ୍କା ଦେଲେ ନାହିଁ । କାରଖାନା ବନ୍ଦ ହୋଇଯାଇଥିଲା ।

ଶିକ୍ଷ ସଚିବଙ୍କ ଅଧକ୍ଷତାରେ ଗୋଟିଏ କମିଟି ବସିଥିଲା ପିଲାଙ୍କପାଇଁ ଚଳଚିତ୍ର ତିଆରି ଉଦ୍ଦେଶ୍ୟରେ । ତତ୍‌କାଳୀନ ଶିକ୍ଷ ସଚିବ ବହୁତ ଅନାଗ୍ରହୀ ଢ଼ଙ୍ଗରେ ସାମାନ୍ୟ ବିରକ୍ତିମିଶା ସ୍ୱରରେ ମୋତେ ପଚାରିଥିଲେ - " କଣ କରାଯିବ କୁହନ୍ତୁ ?" ମୁଁ ବୁଝାଇଲି । ଅନ୍ୟ ଅଫିସରମାନେ ଟିପି ନେଲେ । ତାପରେ ଶିକ୍ଷ ସଚିବ ସମସ୍ତଙ୍କୁ କହିଲେ - "ଦେଖନ୍ତୁ, ଏ ବିଷୟରେ ଡ଼କ୍ଟର ରଥ କଣ କହୁଛନ୍ତି, ସେହି ଅନୁସାରେ ଆପଣମାନେ କିଛି କରନ୍ତୁ । ମୁଖ୍ୟମନ୍ତ୍ରୀଙ୍କ ଇଚ୍ଛା ଯେ ଏପରି କିଛି ହେଉ ।" ଚରମ ଉଦାସୀନତାର ବାତାବରଣ ଭିତରେ ସଭାକାର୍ଯ୍ୟ ଶେଷ ହେଲା । ମୁଁ ବୁଝିପାରିଲି ଯେ ତାଙ୍କର କିଛି କରାଇଦେବାର ଉଦ୍ଦେଶ୍ୟ ନାହିଁ । ମୁଖ୍ୟମନ୍ତ୍ରୀଙ୍କୁ ଏକଥା କହିଲି । ସେ ଶିକ୍ଷ ସଚିବଙ୍କୁ ଡ଼ାକି ଧମକାଇଲେ । ଏହି କାରଣରୁ ସେ ଭଦ୍ରଲୋକ ମୋ ସହିତ ଦେଖାହେଲେ ବହୁବର୍ଷଯାଏ ମୋ ସହିତ କଥାବାର୍ତ୍ତା କରୁନଥିଲେ । ମୁହଁ ବୁଲାଇ ଅନ୍ୟଆଡ଼େ ଚାହୁଁଥିଲେ । ବିଜୁବାବୁଙ୍କ ମୁଖ୍ୟମନ୍ତ୍ରୀତ୍ୱ ପରେ ଏହି କମିଟି ତା ମନକୁ ମନ ଉଭେଇ ଯାଇଥିଲା ।

ସେହିପରି ପାଠ୍ୟପୁସ୍ତକ ପ୍ରକାଶ କ୍ଷେତ୍ରରେ ମଧ ପାଠ୍ୟପୁସ୍ତକ ଛଡ଼ା ପିଲାଙ୍କର ଜ୍ଞାନ ଓ ଆଗ୍ରହର ପରିସର ବୃଦ୍ଧି କରିବା ପାଇଁ ଅନ୍ୟାନ୍ୟ ବହି ପ୍ରକାଶ କରିବାର ଯୋଜନା ଗୃହୀତ ହୋଇଥିଲା । ପ୍ରତି ବର୍ଷ ଏହି ସଂସ୍ଥା ଦଶ ବାରଟି ବହି ନାନା ଉପାୟରେ ଜ୍ଞାନ ବିଜ୍ଞାନ ବିଷୟରେ ପ୍ରକାଶ କରି ସେଥିରୁ ଖଣ୍ଡିଏ ଲେଖାଏଁ ବିନା ମୂଲ୍ୟରେ ପ୍ରତ୍ୟେକ ପ୍ରାଥମିକ ସ୍କୁଲକୁ ପଠାଇ ଏହି ସ୍କୁଲମାନଙ୍କରେ ପିଲାମାନଙ୍କପାଇଁ ସ୍କୁଲ ପୁସ୍ତକାଳୟ ସ୍ଥାପିତ କରିବେ ଓ ଅବଶିଷ୍ଟ ବହି ବଜାରରେ ବିକ୍ରି ହୋଇ ଗୋଟିଏ ପ୍ରକାଶନ ପାଣ୍ଠି ସୃଷ୍ଟି ହେବ । ଏହି ପାଣ୍ଠିରୁ ପ୍ରତି ବର୍ଷ ନୂଆ ନୂଆ ବହି ଛପା ହେବ । ଏହି ପ୍ରସ୍ତାବ ବିରୁଦ୍ଧରେ କେତେକ ଅଫିସର ଆପତ୍ତି ଉଠାଇଲେ

ମଧ୍ୟ ବିଜୁବାବୁ ସେମାନଙ୍କୁ ଚୁପ୍ କରାଇଦେଇଥିଲେ । ଏହି ଯୋଜନା ଅନୁଯାୟୀ ୧୦ଟି ପାଣ୍ଡୁଲିପି ପ୍ରସ୍ତୁତ କରାଗଲା । କିନ୍ତୁ ବିଜୁବାବୁ ମୁଖ୍ୟମନ୍ତ୍ରୀ ପଦରୁ ଗଲାପରେ ଏହା ଆଉ ଛପା ହୋଇପାରିଲା ନାହିଁ ।

ଓଡ଼ିଶାରେ କୌଣସି ଗୋଟିଏ ଭଲ କାମ ବହୁଦିନ ଧରି ବଞ୍ଚାଇ ରଖିବା ସମ୍ଭବ ନୁହେଁ ବୋଲି ମୋର ଦୃଢ଼ ଧାରଣା ହେଲା । ଏଥିପାଇଁ ରାଜନୈତିକ ଲୋକମାନେ ଯେତିକି ଦାୟୀ, ବୁଦ୍ଧିଜୀବୀମାନେ ସେମାଙ୍କଠାରୁ କମ୍ ଦାୟୀ ନୁହନ୍ତି । କାରଣ ବହୁ ବୁଦ୍ଧିଜୀବୀଙ୍କୁ ରାଜନୈତିକ ଲୋକମାନେ ଅତି ସହଜରେ କିଣି ନେଇ ପାରୁଛନ୍ତି ।

ବିଜୁବାବୁ ତତ୍‌କାଳୀନ ପଞ୍ଚାୟତରାଜ ସେକ୍ରେଟେରୀ ମିଷ୍ଟର ମାଥ୍ୟୁସ୍‌ଙ୍କୁ ମୋ ସହିତ ଆଲୋଚନା କରିବାକୁ କହିଲେ । ମୁଁ ତାଙ୍କୁ ଅନୁରୋଧ କରିଥିଲି ଯେ ପ୍ରତ୍ୟେକ ଗ୍ରାମୀଣ ପ୍ରାଥମିକ ସ୍କୁଲକୁ ଦୁଇ ତିନି ଏକର ଜମି ଯୋଗାଇ ଦେଇପାରିଲେ ପିଲାମାନେ ପନିପରିବା ଚାଷ, କୁକୁଡ଼ା ପାଳନ ପ୍ରଭୃତି କାମ କରିପାରନ୍ତେ । ଅନେଗୁଡ଼ିଏ ଗ୍ରାମରେ ଏହା ସମ୍ଭବ ହେବ ବୋଲି ସେ ମୋତେ ପ୍ରତିଶ୍ରୁତି ଦେଇଥିଲେ । ସେ ବଦଳି ହୋଇଗଲେ । ତାପରେ ଏ ସଂମ୍ପର୍କରେ କୌଣସି କାମ ହେଲା ନାହିଁ । ଏପରି ଭାବରେ ପ୍ରାଥମିକ ଶିକ୍ଷାର ସାର୍ବଜନୀନ ଉନ୍ନତି ପାଇଁ ବହୁତ ଯୋଜନା ହେଲା । ବିଜୁବାବୁ ମୁଖ୍ୟମନ୍ତ୍ରୀ ଥିଲା ଯାଏ ପ୍ରତ୍ୟେକ ବିଷୟରେ ପ୍ରାରମ୍ଭିକ କାର୍ଯ୍ୟାବଳୀର ସୂତ୍ରପାତ ହେଲା । ବହୁ ଅଫିସର ଅନ୍ତତଃ ତାଙ୍କ ଉପରେ ଉତ୍ସାହ ଦେଖାଇଥିଲେ, କିନ୍ତୁ ସେ ଯେହେତୁ ଅଳ୍ପଦିନ ମୁଖ୍ୟମନ୍ତ୍ରୀ ରହିଲେ ତାଙ୍କପରେ ପାଠ୍ୟପୁସ୍ତକ ପ୍ରକାଶନ ଛଡ଼ା ଆଉ ସବୁ କାର୍ଯ୍ୟକ୍ରମ ବନ୍ଦ ହୋଇଗଲା । ଏହି ଅଭିଜ୍ଞତାରୁ ଆମର ଔପନିବେଶୀ ଶାସନ ସଂସ୍ଥା କିପରି ଦେଶ ହିତକର କାମ କରିବାରେ ଅପାରଗ ସେ ବିଷୟରେ ମୋର ଧାରଣା ଦୃଢ଼ୀଭୂତ ହୋଇଥିଲା । ତଥାପି ବଳିଷ୍ଠ ରାଜନୈତିକ ନେତୃତ୍ୱର ଚାପରେ ଅନେକ କାମ ହୋଇପାରନ୍ତା । କିନ୍ତୁ ଦୁର୍ଭାଗ୍ୟବଶତଃ ବିଜୁବାବୁଙ୍କ ଅଗ୍ରବର୍ଷୀ ନେତୃତ୍ୟ ଓଡ଼ିଶାରେ ଆଉ ସମ୍ଭବ ହୋଇପାରିଲା ନାହିଁ ।

# ମୋ ଦୃଷ୍ଟିରେ ଓଡ଼ିଶାର ବରପୁତ୍ର ବିଜୁବାବୁ

**ବ୍ରଜ କିଶୋର ଧଳ**

ଉତ୍କଳ ଗୌରବ ମଧୁବାବୁଙ୍କ ସମୟରୁ ଆଜି ପର୍ଯ୍ୟନ୍ତ ଯେତେ ସଂଖ୍ୟକ ରାଜନୈତିକ ନେତା ତିଆରି ହୋଇଛନ୍ତି ସେମାନଙ୍କ ମଧ୍ୟରେ ବିଜୁବାବୁ ଜଣେ ଅଗ୍ରଗଣ୍ୟ ବ୍ୟକ୍ତି । ସେ ଏକାଧାରରେ ସୁଗୁଣ ସହିତ ବଳିଷ୍ଠ ଚେହେରା ଓ ବଳିଷ୍ଠ ବ୍ୟକ୍ତିତ୍ୱର ଅଧିକାରୀ। ନୂତନ ଢାଞ୍ଚାରେ ଓଡିଶାର ଚିତ୍ର ବଦଳାଇବା ପାଇଁ ସେ ସବୁବେଳେ ବ୍ୟାକୁଳ । ଦେଶ ବିଦେଶରେ କଳିଙ୍ଗର ଖ୍ୟାତି ବଢାଇବା ପାଇଁ ତାଙ୍କର ଆପ୍ରାଣ ଚେଷ୍ଟା ।

ଇଣ୍ଡୋନେସିଆରୁ ସେଠାରେ ରାଷ୍ଟ୍ରପତି ସୁକର୍ଣ୍ଣଙ୍କୁ ଅତି ସାହସିକତାର ସହିତ ଉଦ୍ଧାର କରି ଦକ୍ଷ ବୈମାନିକ ଭାବେ ସେ ଯେଉଁ ବୀରତ୍ୱର ପରାକାଷ୍ଠା ଦେଖାଇଛନ୍ତି ଓଡ଼ିଶା ମାଟିରେ ଏଭଳି ବୀରତ୍ୱ ଅଦ୍ୟାବଧି କେହି ଦେଖାଇ ନାହାନ୍ତି । ତାଙ୍କର ପ୍ରାଣମୂର୍ଚ୍ଛା ଉଦ୍ୟମପାଇଁ ଇଣ୍ଡୋନେସିଆ ସରକାର ତାଙ୍କୁ ଯେଉଁ ସର୍ବୋଚ୍ଚ ସମ୍ମାନରେ ଭୂଷିତ କରିଥିଲେ ତାହା ଓଡିଶାର କୌଣସି ରାଜନୈତିକ ନେତାଙ୍କ ଜୀବନକାଳ ମଧ୍ୟରେ ଘଟିନାହିଁ।

ବିଜୁବାବୁଙ୍କ କାର୍ଯ୍ୟଦକ୍ଷତା ଉପରେ ପୂର୍ଣ୍ଣ ଆସ୍ଥା ଥିବାରୁ ୧୯୬୨ ମସିହା ଚୀନ୍ ଭାରତ ଯୁଦ୍ଧ ସମୟରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ତାଙ୍କୁ ଗୋପନୀୟ ଉଚ୍ଚ କୂଟନୈତିକ କାର୍ଯ୍ୟରେ ନିଯୁକ୍ତ କରି ଦିଲ୍ଲୀଠାରେ ପ୍ରଧାନମନ୍ତ୍ରୀଙ୍କ ଅଫିସ୍ ନିକଟରେ ଏକ ସ୍ୱତନ୍ତ୍ର ଅଫିସଗୃହ ଯୋଗଇ ଦେଇଥିଲେ । ସାମରିକ ଉପଦେଶ ଦେବାପାଇଁ କେବଳ ଓଡିଶା କାହିଁକି ସମଗ୍ର ଭାରତରୁ ବିଜୁବାବୁଙ୍କୁ ହିଁ ବଛା ଯାଇଥିଲା ଏବଂ ଅନେକ ଗୋପନୀୟ କୂଟନୈତିକ କାର୍ଯ୍ୟରେ ତାଙ୍କୁ ବହୁ ବିଦେଶୀ ରାଷ୍ଟ୍ରକୁ ପଠାଯାଇଥିଲା । ସେଥିପାଇଁ ଓଡିଆ ଜାତି ଗର୍ବିତ । ତାଙ୍କ ମୁଖ୍ୟମନ୍ତ୍ରୀତ୍ୱକାଳ ମଧ୍ୟରେ ଓଡିଶାରେ ନିଖିଳ ଭାରତ କଂଗେସ କମିଟି ଅଧିବେଶନ ବସାଇ ଓ ତାର ସୁପରିଚାଳନା କରି ସେ ନିଜର ସାଂଗଠନିକ ଦକ୍ଷତା ଦେଖାଇଥିଲେ । କୌଣସି କାର୍ଯ୍ୟପାଇଁ ଶାସନକାଳରେ 'ନାଲିଫିତା' ଅନ୍ତରାୟ ନ ହେଉ ବୋଲି ବିଜୁବାବୁ ନୀତି ଦୃଷ୍ଟିରୁ ବିଚାର କରିଥିଲେ । ମୁଖ୍ୟମନ୍ତ୍ରୀ ଥିବାବେଳେ ସେକ୍ରେଟାରିଏଟ୍‌କୁ ସେ ନିଜେ ଫାଇଲ

ଧରି ଯିବା ଓ ମୁଖ୍ୟମନ୍ତ୍ରୀ ଥାଇ ଏମ୍. ଏଲ. ଏ. କ୍ୱାର୍ଟରରେ ରହିବାର ଅଦର୍ଶ ଦେଖାଇଥିଲେ ।

ତାଙ୍କ ଶାସନକାଳ ଭିତରେ ପାରାଦୀପ ବନ୍ଦର ଓ ତତ୍‌ସଂଲଗ୍ନ ଜାତୀୟ ରାଜପଥ, ଶିଳ୍ପ କର୍ପୋରେସନ, ଯାଜପୁରର ଫେରୋକ୍ରୋମ କାରଖାନା, ବରଗଡର ସିମେଣ୍ଟ କାରଖାନା, ବଡବିଲ୍‌ର କ୍ଷୁଦ୍ର ଲୁହାକାରଖାନା, ରାଉରକେଲାର ଆଞ୍ଚଳିକ ଇଞ୍ଜିନିଅରିଂ କଲେଜ, କଳିଙ୍ଗ ଟ୍ୟୁବ୍‌ସ, କଳିଙ୍ଗ ରେଫ୍ରିଜେରେସନ, କଳିଙ୍ଗ ଇଣ୍ଡଷ୍ଟ୍ରିଜ୍, ଲୁଗାକଳ, ସୈନିକ ସ୍କୁଲ ପ୍ରତିଷ୍ଠା, ପଞ୍ଚାୟତ ଶିଳ୍ପ ଯେଜନା, ଜିଲ୍ଲାପରିଷଦ ଗଠନ ଇତ୍ୟାଦି ବହୁ ଉଲ୍ଲେଖନୀୟ କାର୍ଯ୍ୟ ସ୍ୱଳ୍ପକାଳ ମଧ୍ୟରେ ସମାହିତ ହୋଇଥିଲା । ସେ ହେଉଛନ୍ତି ଜଣେ କରିତ୍‌କର୍ମା ।

ମୋର ସାନଭାଇ ଅଧ୍ୟାପକ ଶ୍ରୀମାନ୍ ଗୋଲକବିହାରୀ ଥରେ ତାଙ୍କୁ ଭେଟି ଓଡିଶାରେ ଧ୍ୱନି-ବିଜ୍ଞାନ ଶିକ୍ଷାର ଆବଶ୍ୟକୀୟ ବ୍ୟବସ୍ଥା ପାଇଁ ତାଙ୍କ ସହ ଆଲୋଚନା କରିବାରେ ସେ ଅତି ଉତ୍ସାହର ସହିତ ଯେଉଁ ଆଗ୍ରହ ପ୍ରକାଶ କରିଥିଲେ ସେପରି ଆଗ୍ରହ କୌଣସି ଉଚ୍ଚ ଶିକ୍ଷାବିତ୍‌ଙ୍କ ଠାରୁ ମିଳି ନଥିବା କଥା ଗୋଲକ ମୋ ଆଗରେ ପ୍ରକାଶ କରିଥିଲା ।

ଆଜି ଭାରତ ସରକାରଙ୍କ ତରଫରୁ ପଞ୍ଚାୟତ ଜରିଆରେ ଯେଉଁ ଅର୍ଥନୈତିକ ଉନ୍ନତିର କଳ୍ପନା କରାଯାଉଅଛି ବହୁ ପୂର୍ବରୁ ବିଜୁବାବୁ ତାଙ୍କ ଶାସନକାଳ ମଧ୍ୟରେ ସର୍ବଶ୍ରେଷ୍ଠ ବିବେଚିତ ପଞ୍ଚାୟତକୁ ଶିଳ୍ପ ପ୍ରତିଷ୍ଠା ପାଇଁ ଏକଲକ୍ଷ ଟଙ୍କା ପୁରସ୍କାର ଦେବାର ବ୍ୟବସ୍ଥା କରିଥିଲେ । ତହିଁର ନମୁନା ସ୍ୱରୂପ ମୋ ଘର ପାଖରେ ଶଙ୍କରପୁର ପଞ୍ଚାୟତରେ ତିନି ଶିଳ୍ପ କାରଖାନା ଗଢ଼ି ଉଠିଥିଲା

ହୀନମନ୍ୟତା ପରିହାର କରିବା ପାଇଁ ସେ ଓଡ଼ିଶାବାସୀଙ୍କୁ ସବୁବେଳେ ପରାମର୍ଶ ଦେଇ ଆସିଛନ୍ତି । ଓଡ଼ିଆ ଜାତିର ସ୍ୱାଭିମାନ ରକ୍ଷା ତାଙ୍କ ଜୀବନର ଅନ୍ୟତମ ଲକ୍ଷ୍ୟ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ନିଜେ ଖୁବ୍ ସାହସୀ ନ ହୋଇଥିଲେ ତାଙ୍କ ସଙ୍ଗେ ଗାଡ଼ିରେ ବୁଲିବା ଆଦୌ ସମ୍ଭବ ନୁହେଁ । ସେ ବୈମାନିକ ଥିବା ହେତୁ ଘଣ୍ଟାକୁ ୭୦ ମାଇଲ୍‌ରୁ କମ୍ ବେଗରେ ଗାଡ଼ି ଚଳାଉନଥିଲେ । ୧୯୬୨ ମସିହା ମଧ୍ୟବର୍ତ୍ତୀକାଳୀନ ନିର୍ବାଚନବେଳେ ଢେଙ୍କାନାଳରେ ଭୋଟ ପ୍ରଚାରରେ ତାଙ୍କ ସହ ଗାଡିରେ

ଯିବାରେ ମୋର ଏହି ଅନୁଭୂତି ହୋଇଥିଲା । ଏହା ତାଙ୍କ ନିର୍ଭୀକତାର ପ୍ରମାଣ ଦିଏ । ଓଡିଶାରେ କଂଗ୍ରେସକୁ ଜୟଜୁକ୍ତ କରିବାପାଇଁ ୧୯୬୨ ନିର୍ବାଚନରେ ସେ ବିଚକ୍ଷଣତାର ସହିତ ବିଧାନସଭାରେ ସଂଖ୍ୟାଗରିଷ୍ଠ ଆସନ ହାସଲ କରି ନିଜେ ଶାସନ ଦାୟିତ୍ୱ ନେଇଥିଲେ ।

ସେ ଜଣେ ବଦାନ୍ୟ ବ୍ୟକ୍ତି । ଗରିବ ମେଧାବୀ ଛାତ୍ର ତଥା ଅନ୍ୟାନ୍ୟ ଦୁଃସ୍ଥ ଲୋକଙ୍କୁ ଅକୁଣ୍ଠ ସାହାଯ୍ୟ ଦେଇ ସେ ଖ୍ୟାତି ଅର୍ଜନ କରିଛନ୍ତି । ତହିଁର ଜ୍ୱଳନ୍ତ ପ୍ରମାଣ ହେଉଛି 'କଳିଙ୍ଗ ଫାଉଣ୍ଡେସନ ଟ୍ରଷ୍ଟ' । ସେ ମୁଖ୍ୟମନ୍ତ୍ରୀ ଥିବାବେଳେ ମୁଁ ଜିଲ୍ଲା ପରିଷଦ ଚେୟାରମ୍ୟାନ୍ ହିସାବରେ ବହୁବାର ତାଙ୍କ ସଂସ୍ପର୍ଶରେ ଆସିବାର ସୁଯୋଗ ପାଇ ତାଙ୍କଠାରେ ଅନେକ ସୁଗୁଣର ସନ୍ଧାନ ପାଇଛି । ସେ ଭୀରୁ ନୁହଁନ୍ତି । ପରିଣତ ବୟସରେ ତାଙ୍କର ଯୁବ ସୁଲଭ ତତ୍ପରତା ତାଙ୍କ ବୀରତ୍ୱର ଶ୍ରେଷ୍ଠ ନିଦର୍ଶନ ।

ପ୍ରଭୁଙ୍କଠାରେ ପ୍ରାର୍ଥନା, ସେ ବିଜୁବାବୁଙ୍କୁ ଦୀର୍ଘାୟୁ କରି ତାଙ୍କର ସୁନାର ଓଡିଶା ଗଠନକୁ ସଫଳ କରାନ୍ତୁ ।

# ସ୍ୱାଧୀନତା-ଇତିହାସର ପଟ୍ଟଭୂମିରେ

## ସଚ୍ଚିଦାନନ୍ଦ କାନୁନ୍‌ଗୋ

୧୯୪୨ ଭାରତ ଛାଡ ଆନ୍ଦୋଳନ । ଅଗଷ୍ଟ ୮ ତାରିଖ ପରେ କଂଗ୍ରେସ ନେତାମାନଙ୍କୁ ଗିରଫ କରିବା ଆରମ୍ଭ ହୋଇଯାଏ । ତାହା ସାଙ୍ଗକୁ ସମ୍ବାଦପତ୍ରମାନଙ୍କ ଉପରେ ନିଷେଧାଜ୍ଞା ବି ଜାରି ହୋଇଗଲା; ସରକାରୀ ନିଯୁକ୍ତ ଅଧିକାରୀଙ୍କ ବିନାନୁମତିରେ ଗିରଫଦାରୀ ବା ଆନ୍ଦୋଳନ ସମ୍ପର୍କୀୟ କୌଣସି ରାଜନୈତିକ ସମ୍ବାଦ ପ୍ରକାଶ ପାଇପାରିବ ନାହିଁ । ସେତେବେଳେ ଓଡିଶାରେ ଏକମାତ୍ର ସମ୍ବାଦପତ୍ର 'ସମାଜ' । ଏହାର ସମ୍ପାଦକ ପଣ୍ଡିତ ଲିଙ୍ଗରାଜ ମିଶ୍ର ଓ ପରିଚାଳକ ଶ୍ରୀ ରାଧାନାଥ ରଥଙ୍କ ଗିରଫଦାରୀ ପରେ ସମ୍ବାଦପତ୍ରଟି କିଛିଦିନ ପ୍ରକାଶନ ସ୍ଥଗିତ ରଖାଯାଇଥାଏ । ତା'ପରେ ଶ୍ରୀ ଉଦୟନାଥ ଷଡଙ୍ଗୀଙ୍କ ସମ୍ବାଦକତ୍ୱରେ କିଛିଦିନ ପ୍ରକାଶିତ ହେବାପରେ ତାଙ୍କୁ ମଧ୍ୟ ଗିରଫ କରାଯାଏ ଏବଂ ତାପରେ ବ୍ରହ୍ମଦେଶରୁ ଫେରିଥିବା ଶ୍ରୀ ରାମଚନ୍ଦ୍ର ଦାସଙ୍କ ସମ୍ପାଦକତ୍ୱରେ ସମାଜ ପ୍ରକାଶିତ ହୁଏ । ସେତେବେଳେ ସମାଜର ମୂଲ୍ୟ ପୁରୁଣା ଗୋଟିଏ ବା ଦୁଇ ପଇସା । ଆକାର ଚାରିପୃଷ୍ଠା । ଦିନେ ଦେଖିଲାବେଳକୁ ଦ୍ୱିତୀୟ ପୃଷ୍ଠାର ଶେଷ ସ୍ତମ୍ଭରେ ଗୋଟିଏ ସମ୍ବାଦ ବାହାରିଛି; ଓଡିଆ ବୈମାନିକ ଶ୍ରୀ ବିଜୟାନନ୍ଦ ପଟ୍ଟନାୟକଙ୍କୁ ଗିରଫ କରାଯାଇ ପଞ୍ଜାବର ହୁସିଆରପୁର ଜେଲ୍‌ରେ ରଖାଯାଇଛି । ଏତିକି ମାତ୍ର ସମ୍ବାଦ । ସେତେବେଳେ ବିଜୁ ପଟ୍ଟନାୟକଙ୍କ ସମ୍ପର୍କରେ ଆମଭଳି ପିଲା ବିଶେଷ କିଛି ଜାଣି ନ ଥିଲୁ । ଏତିକି ଜାଣିଥିଲୁ ଯେ ପୂର୍ବତନ ମାନ୍ଦ୍ରାଜ ପ୍ରଦେଶରୁ ନୂତନ ଭାବେ ଓଡିଶାରେ ମିଶିଥିବା ଗଞ୍ଜାମ ଜିଲ୍ଲାର ରସଲକୁଣ୍ଡା ବା ଆଜିର ଭଞ୍ଜନଗର ଅଞ୍ଚଳର ସ୍ୱର୍ଗୀୟ ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କ ତିନିପୁଅଙ୍କ ମଧ୍ୟରୁ ସେ ଜଣେ । ଲକ୍ଷ୍ମୀନାରାୟଣବାବୁ ଗଞ୍ଜାମ ଜିଲ୍ଲାର ଲୋକ ହୋଇଥିଲେ ସୁଦ୍ଧା ଅବସ୍ଥାଚକ୍ରରେ ବିହାର-ଓଡିଶା ସରକାରଙ୍କ ଅଧୀନରେ ବିଚାର ବିଭାଗରେ ଉଚ୍ଚ ଚାକିରି ଓ ବ୍ରାହ୍ମଧର୍ମରେ ଦିକ୍ଷିତ ହୋଇ କଟକରେ ବସବାସ କରି ରହୁଥିଲେ । ସରକାରୀ ଚାକିରିରୁ ଅବସର ନେବାପରେ ସେତେବେଳେ ମାନ୍ଦ୍ରାଜ ପ୍ରଦେଶ ଅନ୍ତର୍ଗତ ଗଞ୍ଜାମ ଜିଲ୍ଲାର ପାରଳାଖେମୁଣ୍ଡି ମହାରାଜାଙ୍କର ପୁରୀ

ଜିଲ୍ଲାର ଡେଲାଙ୍ଗରେ ଥିବା ଏକ ଜମିଦାରୀର ମ୍ୟାନେଜର ଭାବେ ଚାକିରି କରୁଥିଲେ ଏବଂ ୧୯୩୮ ମସିହା ମାର୍ଚ୍ଚ ମାସରେ ଡେଲାଙ୍ଗରେ ହୋଇଥିବା ସର୍ବଭାରତୀୟ ଗାନ୍ଧୀ ସେବାସଂଘ ସମ୍ମିଳନୀ ସମୟରେ ସେ ବୋଧହୁଏ ସେହି ପଦବୀରେ ଥାଇ ଜମିଦାରଙ୍କ ପକ୍ଷରୁ ସହାୟତା କରିଥିବା ପରି ମନେ ପଡୁଛି । ତାହା ଛଡା ଲକ୍ଷ୍ମୀନାରାୟଣ ବାବୁ ଓଡିଆ ସାହିତ୍ୟ ପ୍ରଚାର ସମିତି ନାମକ ଗୋଟିଏ ଅନୁଷ୍ଠାନ ସ୍ଥାପନ କରି ଏକାଧିକ କ୍ଷୁଦ୍ର ଅଥଚ ଉପାଦେୟ ଓଡିଆ ପୁସ୍ତକମାନ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଓଡିଶା ବ୍ୟାଙ୍କ ବୋଲି ଗୋଟିଏ ବ୍ୟାଙ୍କ ମଧ୍ୟ ପ୍ରତିଷ୍ଠା କରିଥିଲେ । ତାଙ୍କର ସାନଭାଇ ଯେ କି ବ୍ରାହ୍ମଧର୍ମାବଲମ୍ବୀ ନ ହୋଇ ହିନ୍ଦୁ ଥିଲେ, ତାଙ୍କର ନାମ ଥିଲା ଶ୍ରୀବତ୍ସ ପଟ୍ଟନାୟକ ଓ ସେ ବିହାର-ଓଡିଶା ସରକାରଙ୍କ ଶିକ୍ଷାବିଭାଗରେ ଚାକିରି କରି ଉଚ୍ଚପଦବୀକୁ ଉଠିଥିଲେ । ତାଙ୍କ ପୁଅ ମାନଙ୍କ ମଧ୍ୟରୁ ସାହିତ୍ୟିକ ରାଜକିଶୋର ପଟ୍ଟନାୟକ ଏବଂ ଶ୍ରମ ବିଭାଗରୁ ଅବସର ନେଇଥିବା ବୀରକିଶୋର ପଟ୍ଟନାୟକ ଓ ବିଶିଷ୍ଟା ସାହିତ୍ୟିକା ବସନ୍ତକୁମାରୀ ପଟ୍ଟନାୟକ ଓଡିଶାରେ ପରିଚିତା । ଲକ୍ଷ୍ମୀନାରାୟଣଙ୍କର ତିନିପୁଅ ଜର୍ଜ ପଟ୍ଟନାୟକ, ବିଜୟାନନ୍ଦ ପଟ୍ଟନାୟକ ଏବଂ ସିଜୁ ପଟ୍ଟନାୟକ । ଗୋଟିଏ ଝିଅ । ସେ ଅବକାରୀ ବିଭାଗର ଉଚ୍ଚ କର୍ମଚାରୀ ସ୍ୱର୍ଗୀୟ ବ୍ରହ୍ମାନନ୍ଦ ମହାପାତ୍ରଙ୍କୁ ବିବାହ କରିଥିଲେ ।

ବିଜୟାନନ୍ଦ ପଟ୍ଟନାୟକ ବୋଧହୁଏ ୧୯୪୪ ବେଳକୁ କାରାମୁକ୍ତ ହୋଇ କଟକ ଆସିଲେ । ସେ ପୂର୍ବରୁ ପଞ୍ଜାବୀ ପରିବାରରେ ବିବାହ କରିଥିଲେ । ଜର୍ଜ ବାବୁ ବଙ୍ଗାଳି ପରିବାରରେ ଏବଂ ସିଜୁବାବୁ ସିନ୍ଧି ପରିବାରରେ ବିବାହ କରିଥିଲେ । ୧୯୪୪ ବେଳକୁ ମିତ୍ରଶକ୍ତି ଅର୍ଥାତ ବିଲାତ ଓ ଆମେରିକା ଯୁଦ୍ଧରେ ଜୟୀ ହେବେ ବୋଲି ପରିଷ୍କାର ଜଣାପଡିଲାଣି । ତାହା ଫଳରେ ଭାରତବର୍ଷରେ ଲୋକପ୍ରିୟ ସରକାର ନ ଥାଇ କଂଗ୍ରେସ ନେତୃବୃନ୍ଦ ଜେଲରେ ଥିଲେ ସୁଦ୍ଧା ଯୁଦ୍ଧୋତ୍ତର ପୁନର୍ଗଠନ ପାଇଁ ଆୟୋଜନ ଆରମ୍ଭ ହୋଇ ଯାଇଥାଏ ଏବଂ ଏହି ବିଭାଗର ଦାୟିତ୍ୱରେ ଟାଟା କମ୍ପାନୀର କର୍ମଚାରୀ ସାର୍ ଆର୍ଦ୍ଦେଶର ଦଲାଲ୍ ନାମକ ଜଣେ ଶିଳ୍ପ ବିଶେଷଜ୍ଞ ଥାନ୍ତି । ସେତେବେଳେ ସରକାର ଗୋଟିଏ ନୀତିଗତ ନିଷ୍ପତ୍ତି କଲେ ଯେ ବସ୍ତ୍ର ଶିଳ୍ପକୁ କେବଳ ବମ୍ବେ, ବଙ୍ଗଳା, ଏବଂ ମାନ୍ଦ୍ରାଜ ପ୍ରଦେଶରେ ସୀମାବଦ୍ଧ ନ ରଖି ସବୁ ପ୍ରଦେଶରେ ବିକେନ୍ଦ୍ରୀକରଣ

କରାଯିବ । ତଦନୁଯାୟୀ ଓଡ଼ିଶାରେ ଚାରିଗୋଟି ବସ୍ତ୍ର ମିଲ୍ ହେବ ବୋଲି ସ୍ଥିର କରାଯାଇଥାଏ ।

ଶ୍ରୀ ବିଜୁ ପଟ୍ଟନାୟକ ୧୯୪୪ ମସିହାରେ କାରାମୁକ୍ତ ହେବାପରେ ଓଡ଼ିଶାରେ ଶିଳ୍ପ ପ୍ରତିଷ୍ଠା ଦିଗରେ ମନ ବଳାଇଲେ ଏବଂ B. Patnaik & Company ବୋଲି ଗୋଟିଏ ବ୍ୟବସାୟ ପ୍ରତିଷ୍ଠାନ ଆରମ୍ଭ କଲେ । ସେହି ଅନୁଷ୍ଠାନ ନାମରେ ସେ ଗୋଟିଏ ମିଲ୍‌ର ଲାଇସେନସ୍ ପାଇଲେ ।

ଏହି ସମ୍ପର୍କରେ ବିଜୁବାବୁ ଯେ କି ସେତେବେଳକା ବିମାନବାହିନୀର ଜଣେ ଉଚ୍ଚପଦସ୍ଥ ପଦାଧିକାରୀ ଥିଲେ ତାଙ୍କୁ କାହିଁକି ହଠାତ୍ ଗିରଫ କରାଗଲା ସେ ସମ୍ପର୍କରେ କିଛି ଉଲ୍ଲେଖ କରିବା ପ୍ରୟୋଜନ । ୧୯୪୨ ଅଗଷ୍ଟ ୮ ତାରିଖ ଦିନ 'ଭାରତ ଛାଡ଼' ପ୍ରସ୍ତାବ ପାଶ୍ ହେବାପରେ ସବୁ କଂଗ୍ରେସ ନେତାମାନଙ୍କୁ ଗିରଫ କରାଗଲା । ଗାନ୍ଧିଜୀ, କସ୍ତୁରବା, ମହାଦେବ ଦେଶାଇ ଓ ସରୋଜିନୀ ନାଇଡୁଙ୍କୁ ଆଗା ଖାଁ ପ୍ରାସାଦରେ ପୁନାରେ ଅଟକ ରଖାଗଲା । କଂଗ୍ରେସ କାର୍ଯ୍ୟକାରୀ କମିଟିର ସେତେବେଳକାର ସଭ୍ୟମାନଙ୍କୁ କେଉଁଠାକୁ ନିଆଗଲା ତାହା ମାସକ ପର୍ଯ୍ୟନ୍ତ ଜଣା ନପଡି ପରେ ଜଣାଗଲା ଯେ ସେମାନଙ୍କୁ ମହାରାଷ୍ଟ୍ର ପ୍ରଦେଶର ଅହମ୍ମଦ ନଗର ଦୁର୍ଗରେ ଅଟକ ରଖାଯାଇଛି । ସେମାନଙ୍କ ମଧ୍ୟରେ ଥିଲେ ଶ୍ରୀଯୁକ୍ତ ଜବାହରଲାଲ ନେହେରୁ, ସର୍ଦ୍ଦାର ପଟେଲ, ମୌଲାନା ଆଜାଦ୍, ଡାକ୍ତର ପ୍ରଫୁଲ୍ଲ ଚନ୍ଦ୍ର ଘୋଷ, ଡାକ୍ତର ପଟ୍ଟାଭି ସୀତାରାମାୟା, ଆଚାର୍ଯ୍ୟ ନରେନ୍ଦ୍ର ଦେବ, ଅଚ୍ୟୁତ ପଟ୍ଟବର୍ଦ୍ଧନ, ଡାକ୍ତର ସୟେଦ ମହମ୍ମଦ ଏବଂ ହରେକୃଷ୍ଣ ମହତାବ ପ୍ରମୁଖ । ରାଜେନ୍ଦ୍ରବାବୁ (ଭାରତର ପ୍ରଥମ ରାଷ୍ଟ୍ରପତି ଡ଼ ରାଜେନ୍ଦ୍ରପ୍ରସାଦ) ଅସୁସ୍ଥ ଥିବାରୁ ବମ୍ବେ ନିଖିଳ ଭାରତ କଂଗ୍ରେସ କମିଟି ବୈଠକରେ ଯୋଗଦେବାକୁ ଯାଇପାରି ନ ଥିଲେ; ତେଣୁ ତାଙ୍କୁ ପାଟନାରେ ଗିରଫକରି ଅଟକ ରଖାଗଲା । ସେତେବେଳେ କଂଗ୍ରେସ ଲୋକମାନଙ୍କୁ ଅଟକ ରଖିବା ପାଇଁ ଭାରତରକ୍ଷା ଆଇନ ଗୋଟିଏ ଅତି ସହଜ ଆୟୁଧ ଥିଲା ।

ସବୁ ନେତାମାନେ ଗିରଫ ହେବାପରେ ଦେଶରେ ବିଧିବଦ୍ଧ ଆନ୍ଦୋଳନ ନ ଚାଲି, ବାହାରେ ଥିବା ସାମାନ୍ୟ କେତେକ କଂଗେସ ନେତାଙ୍କ ପ୍ରରୋଚନାରେ ଲୁଚାଛପା ଆନ୍ଦୋଳନ ଚାଲିଲା । ସେମାନଙ୍କ ମଧ୍ୟରେ ମୁଖ୍ୟଥିଲେ ଅରୁଣା

ଆସଫ ଅଲ୍ଲୀ, ଜୟପ୍ରକାଶ ନାରାୟଣ, ଡକ୍ଟର ରାମମନୋହର ଲୋହିଆ ପ୍ରମୁଖ କେତେକ ସାମ୍ୟବାଦୀ ନେତୃଗଣ ଏବଂ ଆର୍. ଆର୍. ଦିବାକର, ଅନ୍ନଦା ପ୍ରସାଦ ଚୌଧୁରୀ ଓ ସୁଚେତା କୃପାଳିନୀ ପ୍ରମୁଖଙ୍କ ପରି ଆଉ କେତେକ ଗାନ୍ଧିବାଦୀ । ବିଜୁବାବୁ ସାମରିକ ବାହିନୀର ଉଡାଜାହାଜର ପାଇଲଟ୍ ଥାଇ ବି ଦେଶର ସ୍ୱାଧୀନତାର ସ୍ୱପ୍ନ ଦେଖିବା ଭିତରେ ଏମାନଙ୍କ ମଧ୍ୟରୁ କେତେକ ନେତୃସ୍ଥାନୀୟ ଲୋକଙ୍କୁ ବିଭିନ୍ନ ସ୍ଥାନକୁ ନେବା ଆଣିବା କରିବା ଦୋଷରେ ଚାକିରିରୁ ବରଖାସ୍ତ ହୋଇ ଅଟକ ରହିଥିଲେ ।

ଏହି B. Patnaik & Company ର ତିନିଜଣ ଥିଲେ ଅଂଶୀଦାର । ବିଜୁବାବୁଙ୍କର ଶତକଡା ୪୫ ଭାଗ ଏବଂ ଭାରତର ବିଶିଷ୍ଟ ଶିଳ୍ପପତି ସ୍ୱର୍ଗୀୟ ଲାଲା ଶ୍ରୀରାମଙ୍କ ସାନଭାଇ ଲାଲା ଶଙ୍କର ଲାଲଙ୍କର ଏକମାତ୍ର ଉତ୍ତରାଧିକାରୀ ପ୍ରତାପ ସିଂହଙ୍କର ଶତକଡା ୪୫ ଭାଗ ଏବଂ ବାକି ଶତକଡା ଦଶଭାଗ ଅଂଶର ଅଧିକାରୀ ଥିଲେ ଓଡିଶାର ବିଶିଷ୍ଟ ଜନନେତା, ଉଦ୍ୟୋଗୀ ତଥା ଭାରତର ଜଣେ ଦକ୍ଷ ବ୍ୟବସ୍ଥାପକ ଯାହାଙ୍କ ପାଇଁକି ଓଡିଶା ଗର୍ବିତ; ସେହି ସ୍ୱର୍ଗତ ଭୁବନାନନ୍ଦ ଦାସ ବା ଜନସାଧାରଣରେ ପରିଚିତ ବି. ଦାସ ।

ଯୁଦ୍ଧ ଶେଷ ହେବା ପୂର୍ବରୁ ଅହମ୍ମଦନଗର ଦୁର୍ଗରେ ବନ୍ଦୀଥିବା କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟମାନଙ୍କୁ ନିଜ ନିଜ ପ୍ରଦେଶର କାରାଗାରମାନଙ୍କୁ ପଠାଗଲା ଏବଂ ତଦନୁଯାୟୀ ସ୍ୱର୍ଗତ ହରେକୃଷ୍ଣ ମହତାବଙ୍କୁ ଓଡିଶାର ସମ୍ବଲପୁର ଜେଲକୁ ପଠାଗଲା । ସମ୍ବଲପୁର ଜେଲରେ ମାସେ ରହିବା ପରେ ୧୯୪୫ ମେ ପହିଲା ଦିନ ଶ୍ରୀ ମହତାବଙ୍କୁ ହଠାତ୍ ଖଲାସକରି ଦିଆଗଲା । ସେ କଟକରେ ଥିବା ୰ ନିତ୍ୟାନନ୍ଦ କାନୁନ୍‌ଗୋଙ୍କୁ ତାରଦ୍ୱାରା ସେଦିନ ତାଳଚେର ଗାଡିରେ କଟକରେ ପହଞ୍ଚୁଥିବା କଥା ଜଣାଇଥାନ୍ତି । ସେତେବେଳେ ମହାନଦୀ ଓ ବିରୁପାରେ ପୋଲ ହୋଇ ନ ଥିବାରୁ ସମ୍ବଲପୁର ଓ କଟକରୁ ଗମନାଗମନ ପାଇଁ ଏକମାତ୍ର ବ୍ୟବସ୍ଥା ଥିଲା ସମ୍ବଲପୁରରୁ ମେରାମୁଣ୍ଡଳୀ ପର୍ଯ୍ୟନ୍ତ ବସ୍‌ରେ ଆସି ମେରାମୁଣ୍ଡଳୀରୁ ତାଳଚେର ରେଳ ଗାଡିରେ କଟକ ପର୍ଯ୍ୟନ୍ତ ଆସିବା ।

ସେତେବେଳକୁ ସ୍ୱରାଜ ଆଶ୍ରମ ତଥା ତା' ମଧ୍ୟକୁ ପ୍ରବେଶ କରିବା

ମୁହୂର୍ତ୍ତରେ ଆଜି ଅଖିରେ ପଡୁଥିବା ତାହାଣ ହାତି ଫାଟକ କଡ଼ର ଛୋଟ ଘର ବଖରାଟି ଯାହା "ମହତାବ ନିବାସ" ଭାବରେ ପରିଚିତ ସରକାରଙ୍କ ଅକ୍ତିଆରକୁ ଚାଲିଯାଇଥିବାରୁ ମହତାବବାବୁ କଟକରେ ପହଞ୍ଚିଲେ କେଉଁଠି କିପରି ରହିବେ ଏହା ଚିନ୍ତାକରି ନିତ୍ୟାନନ୍ଦ କାନୁନ୍‌ଗୋ ଏବଂ କବି ବୀରକିଶୋର ଦାସ ବଗି ଚଢ଼ି ଷ୍ଟେସନରେ ପହଞ୍ଚି ତାଙ୍କୁ ସେଠାରେ ନ ପାଇ ଫେରି ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ବାଖରାବାଦ ଘରେ ମହତାବବାବୁଙ୍କୁ ଭେଟନ୍ତି ଓ ସେହିଦିନଠାରୁ ମହତାବବାବୁ ଛ'ମାସରୁ ଉର୍ଦ୍ଧ୍ୱ ସେହି ବାଖରାବାଦସ୍ଥ ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ଘରେ ଅବସ୍ଥାନ କରନ୍ତି ।

ଏ ସମ୍ପର୍କରେ ସେତେବେଳେ ଓଡ଼ିଶାର ରାଜନୈତିକ ଅବସ୍ଥା ସମ୍ପର୍କରେ କେତେକ ସଂକ୍ଷିପ୍ତ ସୂଚନା ଦେବା ବାଞ୍ଛନୀୟ । ୧୯୪୨ ଆନ୍ଦୋଳନ ଫଳରେ ସରକାରଙ୍କ ପକ୍ଷରୁ ଲୋକଙ୍କ ଉପରେ ଅକଥନୀୟ ଅତ୍ୟାଚାର ହୋଇ ଗୁଳିଚାଳନା ସାଙ୍ଗକୁ ବିଭିନ୍ନ ଆଶ୍ରମ ଏବଂ କଂଗ୍ରେସ କେନ୍ଦ୍ରମାନଙ୍କୁ ଧୂଳିସାତ୍ କରିଦେବା ଦ୍ୱାରା ଓଡ଼ିଶାରେ ଗୋଟିଏ ଅଧିକ ସ୍ୱତନ୍ତ୍ର ଅବସ୍ଥା ସୃଷ୍ଟି ହୋଇଥାଏ । ତାହା ସାଙ୍ଗକୁ ଓଡ଼ିଶାର ଅଳ୍ପ କେତେକ କଂଗ୍ରେସଦଳର ବ୍ୟବସ୍ଥାପକ ସଭ୍ୟ କଂଗ୍ରେସର ଶୃଙ୍ଖଳା ଭଙ୍ଗକରି ପ୍ରଦେଶରେ ଗୋଟିଏ ବେ-କଂଗ୍ରେସ ଗୋଷ୍ଠୀ ଗଢ଼ି ଇଂରେଜ ସରକାରଙ୍କ ଯୁଦ୍ଧ ଉଦ୍ୟମକୁ ସମର୍ଥନ କରୁଥାନ୍ତି ଓ ସଂଖ୍ୟାନ୍ୟୁନ ମନ୍ତ୍ରୀମଣ୍ଡଳ ଗଠନ କରିଥାନ୍ତି । ସେମାନଙ୍କ ଅଗ୍ରଭାଗରେ ଥାନ୍ତି ପଣ୍ଡିତ ନୀଳକଣ୍ଠ ଦାଶ ଓ ଗୋଦାବରୀଶ ମିଶ୍ର । ଏହା ଫଳରେ ପୁରୀ ଓ ଗଞ୍ଜାମ ଜିଲ୍ଲାର ଅଧିକାଂଶ କଂଗ୍ରେସ ଲୋକ ସେମାନଙ୍କର ସହଗାମୀ ହୋଇଥିବାରୁ ରାଜନୈତିକ ଦୃଷ୍ଟିରୁ ଏହି ଦୁଇ ଜିଲ୍ଲାର କଂଗ୍ରେସ ଅନୁଷ୍ଠାନ ନିଶ୍ଚିହ୍ନ ହୋଇଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ମାତ୍ର ମହତାବବାବୁ ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ଘରେ ଛ'ମାସ ରହିବା ଭିତରେ ଓଡ଼ିଶା କଂଗ୍ରେସ ପୁନର୍ଗଠନ କରିଥିଲେ । ୧୯୪୨ ଆନ୍ଦୋଳନ ଫଳରେ ବହୁ ନୂତନ ଉଚ୍ଚଶିକ୍ଷିତ ଯୁବକ ଯେଉଁମାନଙ୍କର କଂଗ୍ରେସ ସଙ୍ଗେ ପୂର୍ବରୁ କୌଣସି ପ୍ରତ୍ୟକ୍ଷ ସମ୍ପର୍କ ନ ଥିଲା, ଆନ୍ଦୋଳନରେ ଯୋଗଦେଇ ଜେଲ ଯାଇଥିଲେ । ସେମାନଙ୍କ ମଧ୍ୟରେ ମୁଖ୍ୟ ଥିଲେ ପୁରୀର ବନମାଳୀ ପଟ୍ଟନାୟକ, ଜୟକୃଷ୍ଣ ମହାନ୍ତି, ଉପେନ୍ଦ୍ର ମହାନ୍ତି, ଗୋବିନ୍ଦ ତ୍ରିପାଠୀ, ଶ୍ରୀ ଗୋଛିକାର ଓ କଟକ ଜିଲ୍ଲାର ବାଙ୍କବିହାରୀ ଦାସ, ବିଶ୍ୱନାଥ ପଣ୍ଡିତ,

ମଥୁରାନନ୍ଦ ସାହୁ, ଗୌରୀଶ୍ୟାମ ନାୟକ ଓ ଅନ୍ୟମାନେ । ସେମାନଙ୍କୁ କଂଗ୍ରେସ ମଧ୍ୟରେ ସମ୍ମାନିତ ସ୍ଥାନଦେଇ ଅନୁଷ୍ଠାନକୁ ପୁନର୍ଜୀବିତ କରିବା ଥିଲା ମହତାବବାବୁ ତଥା ନିତ୍ୟାନନ୍ଦବାବୁଙ୍କ ମୁଖ୍ୟ କାର୍ଯ୍ୟ । ପୂର୍ବରୁ ଲେଖାଯାଇଛି ଯେ ଗଞ୍ଜାମ ଓ ପୁରୀ ଜିଲ୍ଲାର ଅଧିକାଂଶ କଂଗ୍ରେସ ଲୋକେ କଂଗ୍ରେସ ବିରୁଦ୍ଧରେ ଥିଲେ । ତେଣୁ ଗଞ୍ଜାମରେ ✓ ଉମାଚରଣ ପଟ୍ଟନାୟକ ଏବଂ ପୁରୀ ଜିଲ୍ଲାରେ ଓକିଲ ✓ ଲୋକନାଥ ମିଶ୍ର ବା ପଙ୍କବାବୁଙ୍କ ନେତୃତ୍ୱରେ କଂଗ୍ରେସ ଅନୁଷ୍ଠାନ ପୁନର୍ଗଠିତ ହେଲା ।

ଏହି ପରିସ୍ଥିତିରେ ଜଣେ ଦୀର୍ଘକାୟ ସୁଶ୍ରୀ ବ୍ୟକ୍ତି ଆମଘରକୁ ଆସି ମହତାବବାବୁଙ୍କ ସହିତ ସେ ବସୁଥିବା ଘରେ ଦେଖାକଲେ । ସେ ଭଦ୍ରଲୋକ ଥିଲେ ସେତେବେଳକାର ବିଜୟାନନ୍ଦ ପଟ୍ଟନାୟକ ବା ବର୍ତ୍ତମାନର ବିଜୁ ପଟ୍ଟନାୟକ । ଏହା ହେଉଛି ୧୯୪୫ ର ଘଟଣା । ଏହି ଦେଖାସାକ୍ଷାତର ରାଜନୈତିକ ଉଦ୍ଦେଶ୍ୟ ଯାହା ଥାଉନା କାହିଁକି ମୁଖ୍ୟ ଉଦ୍ଦେଶ୍ୟ ଥିଲା ଲୁଗାକଳ ବସାଇବାର ପାଇଥିବା ଲାଇସେନ୍ସ ବଳରେ କିପରି ଓଡ଼ିଶାର ଚୌଦ୍ୱାରଠାରେ ଗୋଟିଏ ଲୁଗାକଳ ସ୍ଥାପିତ ହେବ । ସେତେବେଳେ ଦେଶରେ ନୂତନ ଆନନ୍ଦ ଉତ୍ସାହ ପ୍ରକାଶ ପାଉଥିଲା । ତାହା ସଙ୍ଗେ ସଙ୍ଗେ ଅନଗ୍ରସର ଓଡ଼ିଶାକୁ ସବୁଦିଗରୁ ଅଗ୍ରସର କରିବାପାଇଁ ମହତାବବାବୁ ଉତ୍ସାହରେ ଲାଗିଥାନ୍ତି । ଏହି ଅବସ୍ଥାରେ ବିଜୁବାବୁଙ୍କ ପ୍ରସ୍ତାବରେ ପୂରା ସମ୍ମତି ଦେଇ ପୂରାପୂରି ଓଡ଼ିଆ ମୂଳଧନରେ ଓଡ଼ିଶା ଟେକ୍ସଟାଇଲ ମିଲ୍ ସ୍ଥାପିତ ହେବ ବୋଲି ନିଷ୍ପତ୍ତି ନିଆଯାଏ । ଏହି ଅନୁଷ୍ଠାନର ମୂଳ ପରିଚାଳନା ବୋର୍ଡରେ ମୋର ଯେତେଦୂର ମନେ ଅଛି; ମହତାବବାବୁ, ସ୍ୱର୍ଗତ ଦ୍ୱାରିକାନାଥ ଦାସ ପ୍ରମୁଖ ଥିଲେ । ଏହା ସାଙ୍ଗକୁ ଆଉ ଗୋଟିଏ ଘଟଣା ଘଟିଲା । ସ୍ୱର୍ଗତ ବୀରେନ୍ ମିତ୍ରଙ୍କର ସେତେବେଳେ କଂଗ୍ରେସ ସହିତ କୌଣସି ସମ୍ପର୍କ ନ ଥିଲା । ସେ ଜଣେ ବାମପନ୍ଥୀ ଓ ଛାତ୍ର ଆନ୍ଦୋଳନର ନେତା ଭାବରେ କଟକରେ ବେଶ୍ ପରିଚିତ । ଅବସ୍ଥାଚକ୍ରରେ କିଛିଦିନ ଜେଲ୍‌ରେ ରହି ଖଲାସ ହେବା ପରେ ତାଙ୍କ ବାପା କାଠଗଡ଼ା ସାହିର ବିଖ୍ୟାତ ମିତ୍ର ପରିବାରର ସ୍ୱର୍ଗତ ବିପିନ୍ ମିତ୍ର, ଓକିଲ, ତାଙ୍କୁ ଘରେ ନ ରଖିବାରୁ ସେ ସେତେବେଳକାର ବିଶିଷ୍ଟ ମିଷ୍ଟାନ୍ନ ବ୍ୟବସାୟୀ ରାଜକିଶୋର ସାହୁଙ୍କ ସହାୟତାରେ ଅଧିକାଂଶ ସମୟ ଶ୍ରୀ ସାହୁଙ୍କ ଚୌଧୁରୀ

ବଜାରସ୍ଥ ଡନ୍‌କ୍ୟାବିନ୍ ଦୋକାନରେ ସମୟ କଟାଉଥାନ୍ତି । ଏହି ସମୟରେ ସେ ମଧ୍ୟ ଆସି ଶ୍ରୀ କାନୁନ୍‌ଗୋଙ୍କ ଘରେ ମହତାବ ବାବୁଙ୍କ ସହିତ ଦେଖାକରନ୍ତି ଏବଂ କଂଗ୍ରେସରେ ମିଶି କାର୍ଯ୍ୟ କରିବାକୁ ଇଚ୍ଛା ପ୍ରକାଶ କରନ୍ତି ! ସେତେବେଳ ପର୍ଯ୍ୟନ୍ତ ଜଣା ନ ଥିଲା ଯେ ସେ କମ୍ୟୁନିଷ୍ଟ ମାନଙ୍କ ନିକଟ ସମ୍ପର୍କରେ ଥାଇ ମଧ ଦଳର ସଭ୍ୟ ହୋଇନଥିଲେ । କମ୍ୟୁନିଷ୍ଟ ଦଳ ଯୁଦ୍ଧ ସମୟରେ ଇଂରେଜ ସରକାରଙ୍କୁ ସମର୍ଥନ କରି ଦେଶରେ କଂଗ୍ରେସ ଆନ୍ଦୋଳନକୁ ବିରୋଧ କରିଥିବାରୁ ଦେଶସାରା ଅତ୍ୟନ୍ତ ଅପ୍ରିୟ ହୋଇଥାନ୍ତି । ଠିକ୍ ସେହି ସମୟରେ ସ୍ୱର୍ଗତଃ ଭୈରବ ଚନ୍ଦ୍ର ମହାନ୍ତି ଓଡ଼ିଶା ସଚିବାଳୟ ଚାକିରିରୁ ଇସ୍ତଫା ଦେଇ ସମ୍ବଲପୁରରୁ ଆସି ଆନ୍ଦୋଳନରେ ଯୋଗ ଦେଇଥାନ୍ତି । ଯୁଦ୍ଧ ଯୋଗୁଁ କଟକରୁ ଓଡ଼ିଶାର ସଚିବାଳୟ ସେତେବେଳେ କିଛିଦିନ ପାଇଁ ସମ୍ବଲପୁର ଉଠିଯାଇଥାଏ ।

ଏହି ସମୟରେ ଦୁର୍ଭାଗ୍ୟବଶତଃ ମହତାବବାବୁଙ୍କର ଗୋଟିଏ ଧାରଣା ହେଲା ଯେ, ପୁରାତନ କଂଗ୍ରେସ ଲୋକମାନଙ୍କ ଦ୍ୱାରା କଂଗ୍ରେସ ଅନୁଷ୍ଠାନର କୌଣସି ଉନ୍ନତି ହୋଇପାରିବ ନାହିଁ ଏବଂ ଏଥିପାଇଁ ନୂତନ କର୍ମୀଗୋଷ୍ଠୀ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଏଭଳି ଭାବେ ସଙ୍ଗଠନ କରିବା ଦରକାର, ଯାହା ଫଳରେ କି ଅନୁଷ୍ଠାନର ଅର୍ଥାଭାବ ରହିବ ନାହିଁ । ଏହି ଚିନ୍ତାଧାରା ଫଳରେ ଓଡ଼ିଶାର ପରବର୍ତ୍ତୀ ସାଧାରଣ ଜୀବନ ତଥା କଂଗ୍ରେସ ଅନୁଷ୍ଠାନର ଯଥେଷ୍ଟ କ୍ଷତି ହେବା ସଙ୍ଗେ ସଙ୍ଗେ ପରିଣାମରେ ମହତାବ ବାବୁ ନିଜେ ଏହି ଚିନ୍ତାଧାରାର ମୁଖ୍ୟ ଶିକାର ହୋଇଛନ୍ତି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ମହତାବ ବାବୁଙ୍କ ଏହି ନୂତନ ଚିନ୍ତାଧାରାର ପ୍ରତୀକ ହୁଅନ୍ତି ବୀରେନ୍ ମିତ୍ର, ବିଜୁ ପଟ୍ଟନାୟକ ଏବଂ ମୋତିଲାଲ ପଣ୍ଡିତ । ମୋତିଲାଲ ବାବୁ କଟକଜିଲ୍ଲା ତଥା କଟକ ସହରର ସବୁଠାରୁ ବଡ଼ ଜମିଦାର ଯଦିଓ ସେ ପୂର୍ବରୁ ସକ୍ରିୟ ଭାବେ କଂଗ୍ରେସ ସହିତ ସମ୍ପୃକ୍ତ ନଥିଲେ । ସେ ଜାତୀୟତାବାଦୀ ଥିଲେ । ସେ ବି ଜଣେ ଉଚ୍ଚଶିକ୍ଷିତ ବ୍ୟକ୍ତି । କଂଗ୍ରେସ ସଙ୍ଗଠନ ପାଇଁ ବିଜୁବାବୁଙ୍କୁ ଅର୍ଥ ସଂଗ୍ରହ ଓ ବୀରେନ୍ ବାବୁଙ୍କୁ ସଙ୍ଗଠନର ଦାୟିତ୍ୱ ମହତାବ ବାବୁ ଦେଇ ଓ ସେମାନେ ସେମାନଙ୍କର ଦକ୍ଷତାର ପରିଚୟ ଦେଇ ମଧ କଂଗ୍ରେସର ପରମ୍ପରା ସହିତ ଏମାନଙ୍କର କୌଣସି ସମ୍ପର୍କ ନଥିବାରୁ କଂଗ୍ରେସ

•ସଙ୍ଗଠନରେ ସେମାଣେ କୌଣସି ଆସ୍ଥାନ ଖୋଜି ପାଇ ପାରିଲେ ନାହିଁ । ତାହା ସାଙ୍ଗକୁ ସୌଭାଗ୍ୟବଶତଃ ବା ଦୁର୍ଭାଗ୍ୟବଶତଃ ଆଉ ଗୋଟିଏ ଘଟଣା ଘଟିଲା । ୧୯୪୨ ମସିହା ଆନ୍ଦୋଳନ ପରେ ଯେଉଁ ପୋଡାଜଳା ଆନ୍ଦୋଳନ ହେଲା ତହିଁରେ ଓଡିଶାର ସୁରେନ୍ଦ୍ରନାଥ ଦ୍ୱିବେଦୀ ପ୍ରମୁଖ ଲୁଚିଛପି ଆନ୍ଦୋଳନ ପରିଚାଳନା କରୁଥିବାରୁ ସେମାନଙ୍କ ବିରୁଦ୍ଧରେ ଗୋଟିଏ ଷଡଯନ୍ତ୍ର ମକଦ୍ଦମା ହୋଇ ସୁରେନ୍ଦ୍ରନାଥ ଦ୍ୱିବେଦୀ, ଲୋକନାଥ ମିଶ୍ର ଓ ଗଞ୍ଜାମର ଘନଶ୍ୟାମ ପଟ୍ଟନାୟକ ପ୍ରମୁଖଙ୍କୁ ଦୀର୍ଘ କାରାଦଣ୍ଡରେ ଦଣ୍ଡିତ ହୋଇ କୋରାପୁଟ ଜେଲରେ ନାନା ନିର୍ଯ୍ୟାତନା ସହ୍ୟ କରିବାକୁ ପଡୁଥାଏ । ସେମାନେ ବିଚାରାଳୟ ଦ୍ୱାରା ଦଣ୍ଡିତ ହୋଇଥିବାରୁ ଅଟକବନ୍ଦୀମାନଙ୍କ ସହ ୧୯୪୫ ପ୍ରଥମଭାଗରେ କାରାମୁକ୍ତି ପାଇନଥିଲେ । ପୂର୍ବରୁ ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ କଂଗ୍ରେସ ଅନୁଷ୍ଠାନ ମଧ୍ୟରେ ସେମାନେ କଂଗ୍ରେସ ସାମ୍ୟବାଦୀ ଦଳ ଗଠନ କରିଥିଲେ ସୁଦ୍ଧା ମହତାବ ବାବୁ ଏବଂ ନିତ୍ୟାନନ୍ଦ କାନୁନ୍‌ଗୋଙ୍କର ନବବାବୁଙ୍କ ସହ ଘନିଷ୍ଠ ସମ୍ପର୍କ ଥିବାରୁ ଅନୁଷ୍ଠାନ ମଧ୍ୟରେ କୌଣସି ବିଭେଦ ଦେଖା ନଦେଇ ବରଂ ଗୋଟିଏ ଗୋଷ୍ଠୀ ଭାବରେ ୧୯୪୨ ମସିହା ପୂର୍ବରୁ ଚଳୁଥିଲେ । କିନ୍ତୁ ଦୁର୍ଭାଗ୍ୟବଶତଃ ୧୯୪୨ ମସିହାରେ ଜେଲ୍‌ରେ ଥିବା ସମୟରେ ନବବାବୁଙ୍କର ମତ ପରିବର୍ତ୍ତନ ହେବାରୁ ସେ କଂଗ୍ରେସ ସାମ୍ୟବାଦୀ ଦଳରୁ ଆନୁଷ୍ଠାନିକ ସମ୍ପର୍କ ଛିନ୍ନ କରିଦେଇ ଥିଲେ ସୁଦ୍ଧା କଂଗ୍ରେସ ସାମ୍ୟବାଦୀ ଦଳର ଅନ୍ୟମାନେ ଦଳକୁ ସଜୀବ ରଖି ନବବାବୁଙ୍କ ସହିତ ଭାଗବତ ସମ୍ପର୍କ ରଖିଲେ । ପୂର୍ବରୁ ନିତ୍ୟାନନ୍ଦ ବାବୁଙ୍କର କଂଗ୍ରେସ ସାମ୍ୟବାଦୀ ଦଳ ସହିତ ଘନିଷ୍ଠ ସମ୍ପର୍କ ଥିଲେ ସୁଦ୍ଧା ଶ୍ରୀ ହରେକୃଷ୍ଣ ମହତାବ, ଭାଗିରଥୀ ମହାପାତ୍ର ଏବଂ ନିତ୍ୟାନନ୍ଦ କାନୁନ୍‌ଗୋଙ୍କୁ ସେଣ୍ଟର ପାର୍ଟି ବୋଲି ଆଖ୍ୟା ଦିଆଯାଉଥିଲା ଏବଂ ସେମାନଙ୍କ ସହିତ କଂଗ୍ରେସ ସାମ୍ୟବାଦୀ ଦଳର ଯୋଗସୂତ୍ର ରଖି କୌଣସି ବିଶୃଙ୍ଖଳା ବା ତିକ୍ତତା ଦେଖା ଯାଉ ନ ଥିଲା । ଅନୁଷ୍ଠାନର ଆର୍ଥିକ ଆବଶ୍ୟକତାର ବ୍ୟବସ୍ଥା କରିବା ଦାୟିତ୍ୱ ମୁଖ୍ୟତଃ ନିତ୍ୟାନନ୍ଦ ବାବୁଙ୍କର ଥିଲା । ମହତାବ ବାବୁ, ଭାଗୁବାବୁ ଏବଂ ନିତ୍ୟାନନ୍ଦ ବାବୁଙ୍କ ଉଦ୍ୟମରେ ଓଡ଼ିଶାର ମୂଳ କଂଗ୍ରେସ ସୌଧ ସାହେବଜାଦା ବଜାରରେ ଅବସ୍ଥିତ ସ୍ୱରାଜ୍ୟ ଆଶ୍ରମକୁ ୧୯୩୮ ମସିହାରେ କଂଗ୍ରେସର ନିଜସ୍ୱ ସମ୍ପତ୍ତିରେ ପରିଣତ କରାଯାଇ ସେତେବେଳକାର ମାଲିକଙ୍କଠାରୁ

କରାଯାଇଥିଲା । ସେସବୁ ଲେଖିବାକୁ ବସିଲେ ଅସରନ୍ତି ହେବ; ତେଣୁ ବିଶେଷ ଆଲୋଚନା ଅନାବଶ୍ୟକ ।

ନବବାବୁ କଂଗ୍ରେସ ସାମ୍ୟବାଦୀ ଦଳ ସହିତ ସମ୍ପର୍କ ଛିନ୍ନ କରିଦେବା ଫଳରେ ଉକ୍ତ ଦଳ ନିଜ ଗୋଡ଼ରେ ଏକକ ଦଳ ରୂପେ ତିଷ୍ଠିବାକୁ ଚେଷ୍ଟା କରିବା ସଙ୍ଗେ ସଙ୍ଗେ ନିତ୍ୟାନନ୍ଦ ବାବୁ ଏବଂ ଭାଗୁବାବୁ ପ୍ରମୁଖ ପୁରାତନ କଂଗ୍ରେସ ଲୋକ ମାନଙ୍କୁ ବିରୋଧ କରିବା ପାଇଁ ପରୋକ୍ଷରେ ନିଷ୍ପତ୍ତି କଲେ ଏବଂ ଏହି ଚିନ୍ତାଧାରାର ମୁଖ୍ୟ ଥିଲେ ସୁରେନ୍ଦ୍ର ନାଥ ଦ୍ୱିବେଦୀ । ବିଜୁବାବୁ, ବିରେନ୍‌ବାବୁ ଏବଂ ମୋତିଲାଲ ପଣ୍ଡିତଙ୍କୁ ନେଇ ଯେଉଁ ନୂତନ ଗୋଷ୍ଠୀ ମହତାବବାବୁଙ୍କ ପୃଷ୍ଠପୋଷକତାରେ ଗଢ଼ି ଉଠିଲା, ସେମାନଙ୍କ ସହ ସାମ୍ୟବାଦୀ ଦଳର ପୂରାପୂରି ସଦ୍‌ଭାବ ନଥିଲେ ସୁଦ୍ଧା, ଅସଦ୍‌ଭାବ ନଥିଲା ।

ଏହି ପରିପ୍ରେକ୍ଷୀରେ ୧୯୪୬ ସାଧାରଣ ନିର୍ବାଚନ ହେଲା । ତା ପୂର୍ବରୁ ୧୯୪୫ ଶେଷକୁ ପୁରାତନ କେନ୍ଦ୍ର ବ୍ୟବସ୍ଥାପକ ସଭା ନିର୍ବାଚନରେ ଭାଗିରଥୀ ମହାପାତ୍ର ଏବଂ ଜଗନ୍ନାଥ ଦାସ ଓଡ଼ିଶାରୁ ସଭ୍ୟ ଭାବେ ନିର୍ବାଚିତ ହୋଇଥାନ୍ତି । ଓଡ଼ିଶା କଂଗ୍ରେସ ପ୍ରତିଷ୍ଠାତାମାନଙ୍କ ମଧ୍ୟରୁ ଭାଗୁବାବୁ ଥିଲେ ଜଣେ ଅତି ମୁଖ୍ୟ ବ୍ୟକ୍ତି ଏବଂ ୧୯୨୦ ରେ ଗାନ୍ଧିଜୀ ଯେତେବେଳେ ଅସହଯୋଗ ଡାକରା ଭାରତବର୍ଷରେ ଦେଇଥିଲେ ଏବଂ ଯେଉଁ କେତେକ ଆଇନଜୀବୀ ଓଡ଼ିଶାରୁ ଆଇନ ବ୍ୟବସାୟ ଛାଡ଼ି ସବୁ ସମୟ ପାଇଁ କଂଗ୍ରେସ ସଙ୍ଗଠନରେ ଯୋଗଦେଇ ଓଡ଼ିଶାରେ ଅନୁଷ୍ଠାନକୁ ଠିଆ କରିଥିଲେ, ସେମାନଙ୍କ ମଧ୍ୟରେ ଭାଗୁବାବୁ ଏବଂ ଗଞ୍ଜାମର ନିରଞ୍ଜନ ପଟ୍ଟନାୟକ ଥିଲେ ମୁଖ୍ୟବ୍ୟକ୍ତି । ଦୁର୍ଭାଗ୍ୟବଶତଃ ୧୯୪୫ ପୂର୍ବରୁ ଅଳ୍ପ ବୟସରେ ନିରଞ୍ଜନବାବୁଙ୍କର ମୃତ୍ୟୁ ହୋଇଯାଇଥିଲା । ଗଞ୍ଜାମରେ କେତେକ ଅପ୍ରୀତିକର ଘଟଣା ଘଟି ନଥିଲେ ଏବଂ ନିଜର ଦୃଢ଼ମତ ପୋଷଣ କରି ନଥିଲେ ହୁଏତ ୧୯୩୭ମସିହାରେ କଂଗ୍ରେସ ଯେତେବେଳେ ପ୍ରଥମ ମନ୍ତ୍ରିମଣ୍ଡଳ ଗଠନ କଲା, ସେତେବେଳେ ନିରଞ୍ଜନବାବୁ ନିର୍ବିବାଦରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇପାରିଥାନ୍ତେ । ଓଡ଼ିଶାରେ କଂଗ୍ରେସ ଅନୁଷ୍ଠାନକୁ ସଙ୍ଗଠିତ କରିବାରେ ଭାଗିରଥୀ ମହାପାତ୍ର ଏବଂ ନିରଞ୍ଜନ ପଟ୍ଟନାୟକଙ୍କର ଯେଉଁ ଅବଦାନ ତାହା ତ କେହି ମୂଲ୍ୟାୟନ କରିନାହାନ୍ତି ବା ଦୁର୍ଭାଗ୍ୟବଂଶତଃ ହୋଇପାରିବ ନାହିଁ ।

୧୯୪୬ ପ୍ରାଦେଶିକ ବ୍ୟବସ୍ଥାପକ ସଭା ନିର୍ବାଚନପାଇଁ ମୁଖ୍ୟଦାୟିତ୍ୱ ପଡିଲା ସର୍ବଶ୍ରୀ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ନିତ୍ୟାନନ୍ଦ କାନୁନ୍‌ଗୋ ଓ ବିଶ୍ୱନାଥ ଦାଶଙ୍କ ଉପରେ । ସେତେବେଳକୁ କଟକ ସହର ଏବଂ ସଦର ଥାନା ମିଶି ଗୋଟିଏ ନିର୍ବାଚନ ମଣ୍ଡଳୀ ଥିଲା । ଏହି ନିର୍ବାଚନ ମଣ୍ଡଳୀରୁ ୧୯୩୭ ନିର୍ବାଚନରେ ସ୍ୱାମୀ ବିଚିତ୍ରାନନ୍ଦ ଦାସ ନିର୍ବାଚିତ ହୋଇ କଂଗ୍ରେସ ଦଳର ଉପଦଳପତି ହୋଇଥିଲେ । ସେ ଜଣେ ଉଚ୍ଚକୋଟୀର ଆଇନଜୀବୀ ଥିବା ସଙ୍ଗେ ସଙ୍ଗେ ନିଷ୍ଠାପର କଂଗ୍ରେସ ଲୋକ ଥିଲେ । ବହୁ ସାଧାରଣ ଅନୁଷ୍ଠାନ ସହିତ ସଂପୃକ୍ତ ମଧ୍ୟ ଥିଲେ ।୧୯୪୬ ନିର୍ବାଚନରେ ଉକ୍ତ ନିର୍ବାଚନ ମଣ୍ଡଳୀର ତାଙ୍କୁ ପ୍ରାର୍ଥୀ କରିବା ନିମିତ୍ତ କେତେକ ପୁରାତନ କଂଗ୍ରେସ ସଭ୍ୟଙ୍କ ଦାବି ସତ୍ତ୍ୱେ ଅନ୍ୟ ଏକ ଗୋଷ୍ଠୀ ବିଜୁପଟ୍ଟନାୟକଙ୍କ ଉତ୍ସାହ ଓ ସାହସ ଦେଖି ଏବଂ ତାଙ୍କ ଦୃଢ଼ତାରେ ମୁଗ୍ଧ ହୋଇ, ତାଙ୍କର କୌଣସି ରାଜନୈତିକ ପରିଚିତି ସେତେବେଳ ପର୍ଯ୍ୟନ୍ତ ପ୍ରକାଶ ପାଇ ନଥିଲେ ବି ତାଙ୍କୁ ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରିବାର ଦାବି ହୁଏ ଓ ସୁଯୋଗ ଦିଆଯାଏ । ସେତେବେଳେ ଓଡିଶାର ରାଜ୍ୟପାଳ ଶ୍ରୀ ଚନ୍ଦୁଲାଲ ତ୍ରିବେଦୀ । ଡକ୍ଟର ମହତାବ ଓ ଲକ୍ଷ୍ମୀନାରାୟଣ ସାହୁଙ୍କ ସହାୟତା ଯୋଗୁଁ ବିଜୁବାବୁ ଓଡ଼ିଶା ବ୍ୟବସ୍ଥାପକ ସଭାର ସଭ୍ୟଭାବରେ ୧୯୪୬ ମସିହାରେ ନିର୍ବାଚିତ ହେଲେ । ଏହାହିଁ ହେଲା ତାଙ୍କ ରାଜନୈତିକ ଜୀବନର ମୂଳଦୁଆ ।

ଏହି ସମୟରେ ଦ୍ୱିତୀୟ ବିଶ୍ୱଯୁଦ୍ଧର ଅବସାନ ପରେ ପରେ ବିଲାତରେ ନିର୍ବାଚନ ହୋଇ ଶ୍ରମିକ ଦଳ ମିଷ୍ଟର ଅଟ୍‌ଲିଙ୍କ ନେତୃତ୍ୱରେ ଏକକ ସରକାର ଗଠନ କରିଥାନ୍ତି । ଭାରତର ସ୍ୱାଧୀନତା ଆନ୍ଦୋଳନ ପ୍ରତି ବିଲାତର ରାଜନୈତିକ ଦଳମାନଙ୍କ ମଧ୍ୟରୁ ଶ୍ରମିକଦଳର ବିଶେଷ ସହାନୁଭୂତି ଥିଲା । ତେଣୁ ସେମାନେ କ୍ଷମତାକୁ ଆସିବା ସଙ୍ଗେ ସଙ୍ଗେ ଭାରତ ସମସ୍ୟାର ସମାଧାନ ପାଇଁ ଉକ୍ତ ମନ୍ତ୍ରିମଣ୍ଡଳର ତିନିଜଣ ବରିଷ୍ଠ ସଭ୍ୟ ସାର୍ ଷ୍ଟାଫୋର୍ଡ କ୍ରିପସ୍, ପ୍ୟାଧିକ ଲରେନସ୍ ଓ ଏ. ଭି. ଆଲେକ୍‌ଜାଣ୍ଡାରଙ୍କୁ ନେଇ ଗୋଟିଏ ପ୍ରତିନିଧିଦଳ ସରକାରୀ ଭବେ ଭାରତକୁ ପଠାଇଲେ । ସାର୍ ଷ୍ଟାଫୋର୍ଡ କ୍ରିପସ୍ ସେତେବେଳେ ବିଲାତର ଅର୍ଥମନ୍ତ୍ରୀ । ଲର୍ଡ ପ୍ୟାଧିକ ଲରେନସ୍ ଭାରତମନ୍ତ୍ରୀ ଓ ମିଷ୍ଟର ଆଲେକଜାଣ୍ଡାର ନୌବିଭାଗୀୟ ମନ୍ତ୍ରୀ ଥିଲେ । ସେମାନେ ଭାରତବର୍ଷରେ

ବହୁଦିନଧରି ବିଭିନ୍ନ ଦଳମାନଙ୍କ ସହିତ ଆଲୋଚନା କଲେ । ଏହି ସମୟରେ ଓଡ଼ିଶାର ପ୍ରଧାନମନ୍ତ୍ରୀ ଶ୍ରୀ ମହତାବ ଅଧିକାଂଶ ସମୟ ଦିଲ୍ଲୀରେ ରହୁଥିଲେ ଏବଂ ଶ୍ରୀ ବିଜୁ ପଟ୍ଟନାୟକ ତାଙ୍କର ବ୍ୟକ୍ତିଗତ ସଚିବ ହିସାବରେ ତାଙ୍କ ସହିତ ରହୁଥିଲେ । ସେତେବେଳେ ମିଷ୍ଟର ଜିନ୍ନାଙ୍କର ମିଷ୍ଟର ଇଭାକ୍ ବୋଲି ଜଣେ ବାରିଷ୍ଟର ବ୍ୟକ୍ତିଗତ ସଚିବ ଭାବରେ ଥିଲେ । ଅବସ୍ଥାଚକ୍ରରେ ବିଜୁବାବୁଙ୍କ ବ୍ୟକ୍ତିଗତ ପ୍ରଚେଷ୍ଟା ଯୋଗୁଁ ତାଙ୍କ ଜରିଆରେ ମହତାବବାବୁଙ୍କର ମିଷ୍ଟର ଇଭାକଙ୍କ ମାଧ୍ୟମରେ ମିଷ୍ଟର ଜିନ୍ନାଙ୍କ ସହିତ ସମ୍ପର୍କ ପ୍ରତିଷ୍ଠା ହୁଏ; ମାତ୍ର କାହିଁକି କେଜାଣି ଜିନ୍ନାଙ୍କ ସହ ମହତାବଙ୍କର ସେ ସମ୍ପର୍କ ଯୋଗୁଁ ଗାନ୍ଧିଜୀ ଓ ସର୍ଦ୍ଦାର ପଟେଲ ନିଜର ଅସନ୍ତୋଷ ପ୍ରକାଶ କରନ୍ତି ।

ତାପରେ ମହତାବ ବାବୁ ଏବଂ ବିଜୁବାବୁ ଓଡ଼ିଶା ଆସନ୍ତି । ଓଡ଼ିଶାରେ ଶିଳ୍ପାୟନ ଦିଗରେ ବିଜୁବାବୁ ଅଧିକ ମନୋନିବେଶ କରନ୍ତି । ସେତେବେଳେ ବିହାର ଓ ଓଡ଼ିଶା ଶିଳ୍ପ ସହାୟକ ଆଇନ୍ ବହୁ କାଳରୁ ପ୍ରଚଳିତ ଥାଏ । ମାତ୍ର ସେ ଆଇନ ଘରୋଇ ଶିଳ୍ପୋଦ୍ୟୋଗୀ ମାନଙ୍କୁ ପର୍ଯ୍ୟାପ୍ତ ସହାୟତା ଦେଇ ପାରୁନଥିବା ଦୃଷ୍ଟିରୁ ବିଜୁବାବୁଙ୍କ ପ୍ରଚେଷ୍ଟାରୁ ଏହି ପୂରାତନ ଆଇନକୁ ସଂଶୋଧନ କରି ଘରୋଇ ଶିଳ୍ପାନୁଷ୍ଠାନ ପାଇଁ ସରକାର ଭୂ-ଅର୍ଜନ ଆଇନବଳରେ ଜମି ଦଖଲକରି ସଂପୃକ୍ତ ଶଳ୍ପାନୁଷ୍ଠାନକୁ ତାହା ଯୋଗାଇଦେବା ସଙ୍ଗେ ସଙ୍ଗେ ମୂଳଧନରେ ସରକାର ଟଙ୍କା ଖଟାଇ ପାରିବେ ଓ ସଂପୃକ୍ତ ଶିଳ୍ପାନୁଷ୍ଠାନକୁ ଟଙ୍କା କରଜ ଦେବା ସଙ୍ଗେ ସଙ୍ଗେ ସରକାର ଜାମିନ ରହି ବ୍ୟବସାୟିକ ବ୍ୟାଙ୍କମାନଙ୍କରୁ ସଂପୃକ୍ତ ଶିଳ୍ପଅନୁଷ୍ଠାନ ଟଙ୍କା ଉଠାଇପାରିବେ ବୋଲି ବ୍ୟବସ୍ଥା କରାଗଲା ।ସେପରି ଭାବରେ ଆଇନ ପ୍ରଣୟନ କରା ନ ଯାଇଥିଲେ, ଚୌଦ୍ୱାରସ୍ଥିତ ଓଡ଼ିଶା ଟେକସ୍‌ଟାଇଲ ମିଲ ଓ ଅନ୍ୟାନ୍ୟ ଶିଳ୍ପାନୁଷ୍ଠାନ ଓଡ଼ିଶାରେ ମୁଣ୍ଡଟେକିବା ଏକ ଦୁରୂହ ବ୍ୟାପାର ହୋଇଥାନ୍ତା।

ପୂରାତନ ଏବଂ ନୂତନ କଂଗ୍ରେସ ଲୋକଙ୍କ ମଧ୍ୟରେ ସେତେବେଳକୁ ତିକ୍ତତା ଅଧିକମାତ୍ରାରେ ବୃଦ୍ଧି ପାଇଲା ।ନିତ୍ୟାନନ୍ଦ କାନୁନ୍‌ଗୋ ରାଜ୍ୟ ରାଜନୀତିରେ ରହିବେ ନାହିଁ ବୋଲି ସ୍ଥିର କଲେ ।୧୯୫୦ ମସିହାରେ ଜବାହରଲାଲ ନେହେରୁ କୋଣାର୍କ ପରିଦର୍ଶନ ପାଇଁ ଆସିଥିଲେ । ତାହା ପରେ ପରେ ଶ୍ରୀ ମହତାବଙ୍କୁ କେନ୍ଦ୍ର ମନ୍ତ୍ରୀ ମଣ୍ଡଳରେ ଯୋଗଦେବାକୁ ନିମନ୍ତ୍ରଣ କଲେ ।

ସେତେବେଳକୁ ନବବାବୁଙ୍କର ଏକମାତ୍ର ପୁତ୍ରର ବିୟୋଗଫଳରେ ସେ ମନ୍ତ୍ରୀ ମଣ୍ଡଳରୁ ଇସ୍ତଫା ଦେଇଥାନ୍ତି ।ଏହି ଇସ୍ତଫାର କାରଣ ତାଙ୍କର ପୁତ୍ର ବିୟୋଗ ବୋଲି କୁହାଯାଉଥିଲେ ମଧ ପ୍ରକୃତପକ୍ଷେ ଅନ୍ୟାନ୍ୟ କେତେକ କାରଣ ଥିଲା ଯାହାକି ଏପର୍ଯ୍ୟନ୍ତ ଅପ୍ରକାଶ୍ୟ ଅଛି ।

ଏହି ସମୟରେ କଟକ ମୁନିସିପାଲିଟି ନିର୍ବାଚନ ହୁଏ ଏବଂ କଂଗ୍ରେସ ଦଳହିସାବରେ ପ୍ରତିଦ୍ୱନ୍ଦିତା କରିବ ନାହିଁ ବୋଲି ସ୍ଥିର କରାଗଲା । ବିଜୁବାବୁଙ୍କ ଆର୍ଥିକ ସାହାଯ୍ୟ ଏବଂ କେନ୍ଦ୍ରମନ୍ତ୍ରୀ ହରେକୃଷ୍ଣ ମହତାବଙ୍କ ରାଜନୈତିକ ସହାୟତାରେ ବିରେନ୍‌ବାବୁ ଟାଉନ କମିଟି ପକ୍ଷରୁ ପ୍ରାର୍ଥୀ ହେଲେ । ପୁରାତନ କଂରେସ ଲୋକେ ଆଉ ଏକ ଗୋଷ୍ଠୀ ଗଠନକରି ପ୍ରାର୍ଥୀ ଠିଆ କରାଇଲେ ଏବଂ ସେହିଠାରୁ ଓଡ଼ିଶାର ରାଜନୀତି ଅନ୍ୟ ଏକ ମୋଡ଼ ନେଲା ।

ସ୍ୱାଧୀନ ଭାରତର ନୂତନ ସମ୍ବିଧାନ ପ୍ରଚଳନ ଫଳରେ ୧୯୫୨ ସାଧାରଣ ନିର୍ବାଚନରେ ନିତ୍ୟାନନ୍ଦବାବୁ ଓ ମହତାବବାବୁ କେନ୍ଦ୍ର ଲୋକସଭାକୁ ନିର୍ବାଚିତ ହେଲେ ଏବଂ ନବବାବୁ ରାଜ୍ୟ ବିଧାନସଭାକୁ ନିର୍ବାଚିତ ହୋଇ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ ।

ଯୁବକ-ପ୍ରୌଢ଼ ଏବଂ ଅଭିଜ୍ଞ- ଅନଭିଜ୍ଞଙ୍କ ଭିତରେ ଦ୍ୱନ୍ଦ୍ୱ ତ ଏକ ନିରବଚ୍ଛିନ୍ନ ଧାରା । ସେହି ଦ୍ୱନ୍ଦ୍ୱ ଭିତର ଦେଇ କିଏ ବା କାହିଁକି ଗତି ନକରିବ ? ୧୯୫୨ ମନ୍ତ୍ରୀମଣ୍ଡଳରେ ବିଜୁବାବୁଙ୍କୁ ସ୍ଥାନ ଦେବାପାଇଁ ଯୁବକ ମହଲର ଦାବି ସତ୍ତ୍ୱେ ବିଜୁବାବୁ ମନ୍ତ୍ରୀମଣ୍ଡଳର ବାହାରେ ରହିଲେ । ସେହି ସାଧାରଣ ନିର୍ବାଚନରେ ୧୪୦ ଗୋଟି ଆସନରୁ କଂଗ୍ରେସ ୫୬ ଟି ମାତ୍ର ସ୍ଥାନ ପାଇ ସଂଖ୍ୟାନ୍ୟୁନ ହେଲା ଏବଂ ପୁରାତନ ଗଡ଼ଜାତ ଅଞ୍ଚଳର ଭୂତପୂର୍ବ ଶାସକ ମାନଙ୍କ ପକ୍ଷରୁ ବଲାଙ୍ଗିର ଓ କଳାହାଣ୍ଡି ଶାସକ ମାନଙ୍କ ନେତୃତ୍ୱରେ ଗଢ଼ାଯାଇଥିବା ଗଣତନ୍ତ୍ର ପରିଷଦ ୫୧ ଟି ସ୍ଥାନ ଲାଭ କରି ମୁଖ୍ୟ ବିରୋଧୀ ଦଳ ହେଲା । କଂଗ୍ରେସ ପକ୍ଷରେ ମନ୍ତ୍ରୀମଣ୍ଡଳ ଗଠନ ସମ୍ଭବପର ନହେବାରୁ ବିଜୁବାବୁଙ୍କ ପ୍ରଚେଷ୍ଟା ଯୋଗୁ ଝାଡ଼ଖଣ୍ଡ ଦଳ ଓ କେତେକ ସ୍ୱାଧୀନ ସଭ୍ୟଙ୍କ ସମର୍ଥନ କ୍ରମେ ନବବାବୁ ମନ୍ତ୍ରୀମଣ୍ଡଳ ଗଠନ କଲେ ସୁଦ୍ଧା ବିଜୁବାବୁଙ୍କୁ ମନ୍ତ୍ରୀମଣ୍ଡଳରେ ନେଲେ ନାହିଁ । ମହତାବବାବୁ ଲୋକସଭାକୁ ନିର୍ବାଚିତ ହୋଇଥିଲେ ସୁଦ୍ଧା କେନ୍ଦ୍ର ଉପରେ ଓଡିଶାର ଚାପ ପଡି ନ ପାରିବାରୁ ମନ୍ତ୍ରୀମଣ୍ଡଳରେ ସ୍ଥାନ

ପାଇ ପାରିଲେ ନାହିଁ ।

୧୯୫୫ ମସିହାରେ ମହାନଦୀରେ ଅଭୂତପୂର୍ବ ବନ୍ୟାହୋଇ ଦଳେଇଘାଇ ନାମକ ଗୋଟିଏ ପ୍ରକାଣ୍ଡ ଘାଇ ଭାଙ୍ଗି ଗୋବିନ୍ଦପୁର ସଦର, ଜଗତସିଂହପୁର ଏବଂବାଲିକୁଦା ଥାନାମାନଙ୍କର ବହୁ ଅଞ୍ଚଳ ଧ୍ୱସ୍ତବିଧ୍ୱସ୍ତ ହୋଇଗଲା । ସେତେବେଳେ ଶ୍ରୀ ରାଧାନାଥ ରଥ ଓଡିଶାର ଅର୍ଥମନ୍ତ୍ରୀ ଥିଲେ ଏବଂତାଙ୍କ ପ୍ରତ୍ୟକ୍ଷ ନେତୃତ୍ୱରେ ସାହାଯ୍ୟ କାର୍ଯ୍ୟ ଚାଲିଲା ଏପରିକି ସେ ଜିଲ୍ଲାପାଳଙ୍କ ଆସନରେ ବସି ପ୍ରତ୍ୟକ୍ଷ ଭାବେ ସବୁ ଦେଖାଶୁଣା କଲେ । ଭାରତ ସରକାର ସହାୟତା ପାଇଁ ୧୨ କୋଟି ଟଙ୍କା ଦେଇଥିଲେ ସୁଦ୍ଧା ସାହାଯ୍ୟ କାର୍ଯ୍ୟରେ ନାନା ବିଶୃଙ୍ଖଳା ଦେଖାଦେଇ ଲୋକଙ୍କ ଭିତରେ ପ୍ରବଳ ଅସନ୍ତୋଷ ଦେଖାଦେଲା । ମହତାବବାବୁ ବମ୍ବେରେ ରାଜ୍ୟପାଳ ଥିଲେ ସୁଦ୍ଧା ଓଡିଶାଗସ୍ତରେ ଆସି ପ୍ରକାଶ୍ୟରେ ରାଜ୍ୟସରକାରଙ୍କ ବିଫଳତା ସମ୍ପର୍କରେ ସମାଲୋଚନା କଲେ ଏବଂ ଅନ୍ୟଦିଗରେ ଦଳମଧ୍ୟରେ ନେତୃତ୍ୱ ପରିବର୍ତ୍ତନ କରି ମହତାବବାବୁଙ୍କୁ ମୁଖ୍ୟମନ୍ତ୍ରୀ ଭାବେ ଅଣାଯାଉ ବୋଲି ଗୋଟିଏ ଗୋଷ୍ଠୀ ପକ୍ଷରୁ ପ୍ରବଳ ଦାବି ହେଲା । ସେତେବେଳେ ଧେବର ଭାଇ କଂଗ୍ରେସ ସଭାପତି ଥା'ନ୍ତି ଏବଂ ଶ୍ରୀମନ୍ ନାରାୟଣ ସାଧାରଣ ସଂପାଦକ ଥା'ନ୍ତି । କଂଗ୍ରେସ ଉଚ୍ଚକର୍ତ୍ତୃପକ୍ଷ ଅନୁଭବ କଲେ ଯେ ଓଡ଼ିଶା ଶାସନରେ ଯେଉଁ ବିଶୃଙ୍ଖଳା ଦେଖା ଦେଇଛି ତାହାର ନିରାକରଣ ପାଇଁ ନେତୃତ୍ୱ ପରିବର୍ତ୍ତନ ଦରକାର । ମୋରାରଜୀ ଦେଶାଇ ସେତେବେଳେ ଅବିଭକ୍ତ ବମ୍ବେର ମୁଖ୍ୟମନ୍ତ୍ରୀଥିଲେ ସୁଦ୍ଧା ମହତାବଙ୍କ ସହିତ ତାଙ୍କର ସଂପର୍କ ବିଶେଷ ଭଲ ନଥିଲା । ଏହି ପରିସ୍ଥିତିରେ ସେତେବେଳକା ଲୋକ ସଭା ସଭ୍ୟ ଓ କଂଗ୍ରେସର ସାଧାରଣ ସଂପାଦକ ଶ୍ରୀମନ୍ ନାରାୟଣଙ୍କ ବାସଭବନରେ ଗୋଟିଏ ପ୍ରାତଃଭୋଜନରେ ମୋରାରଜୀ ଭାଇ , ଧେବର ଭାଇ ଓ ଶ୍ରୀମନ୍ ନାରାୟଣ ପ୍ରମୁଖ ଶ୍ରୀ ନିତ୍ୟାନନ୍ଦଙ୍କୁ ଓଡ଼ିଶାର ରାଜନୀତିରେ ପ୍ରବେଶ କରି ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଦେବାକୁ ପ୍ରବର୍ତ୍ତାଇଲେ । ଡ଼ାକ୍ତର ବିଧାନଚନ୍ଦ୍ର ରାୟଙ୍କର ମଧ୍ୟ ଏଥିପ୍ରତି ଅପ୍ରକାଶ୍ୟ ସମର୍ଥନ ଥିଲା । କିନ୍ତୁ ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ଓଡ଼ିଶାର ବାଦବିବାଦରେ ଭାଗିଦାର ହେବାକୁ ମନା କରିବାରୁ ୧୯୫୬ ମସିହାରେ ମହତାବବାବୁ ଓଡ଼ିଶା ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେଇ ୧୯୫୭ ସାଧାରଣ ନିର୍ବାଚନ ପରିଚାଳନା ଦାୟିତ୍ୱ ନେଲେ । ସେତେବେଳେ ଯେଉଁମାନେ

ତାଙ୍କୁ ଦଳ ଭିତରେ ଚାହୁଁନଥିଲେ ବିଶେଷତଃ ଭୈରବଚନ୍ଦ୍ର ମହାନ୍ତିଙ୍କୁ ମନ୍ତ୍ରୀମଣ୍ଡଳରେ ସ୍ଥାନ ଦେଲେ ନାହିଁ । ୧୯୫୭ ନିର୍ବାଚନରେ କଂଗ୍ରେସ ଅବସ୍ଥା ଆହୁରି ଖରାପ ହେଲା । କଂଗ୍ରେସ ଦଳ ଏକକ ସଂଖ୍ୟାଗରିଷ୍ଠତା ଲାଭ କରିଥିଲେ ସୁଦ୍ଧା ବ୍ୟବସ୍ଥାପକ ସଭାରେ ସଂଖ୍ୟାଧିକ ହୋଇପାରିଲା ନାହିଁ । ଏହି ଅବସ୍ଥାରେ ବିଜୁବାବୁ ଓ ବୀରେନ୍ ବାବୁଙ୍କ ଉଦ୍ୟମରେ ଝାଡ଼ଖଣ୍ଡ ଦଳର ନେତା ଜୟପାଲ ସିଂହଙ୍କୁ ପ୍ରବର୍ତ୍ତାଇ ତାଙ୍କ ଦଳର ୧୨ ଜଣ ସଭ୍ୟ କଂଗ୍ରେସକୁ ସମର୍ଥନ କରିବାରୁ ମହତାବବାବୁ ମନ୍ତ୍ରୀମଣ୍ଡଳ ଗଠନ କଲେ । ଏଥର ମଧ୍ୟ ବିଜୁବାବୁଙ୍କୁ ମନ୍ତ୍ରୀମଣ୍ଡଳରେ ସ୍ଥାନ ଦେବାକୁ ଦାବୀ ହେବା ସତ୍ୱେ ବି ସେ କେତେକ ଚକ୍ରାନ୍ତର ଶିକାର ହୋଇ ମନ୍ତ୍ରୀମଣ୍ଡଳରେ ସ୍ଥାନ ପାଇଁ ପାରିଲେ ନାହିଁ । ଏହି ମନ୍ତ୍ରୀମଣ୍ଡଳ ବେଶିଦିନ ଚାଲି ପାରିଲା ନାହିଁ । ବିଜୁବାବୁ ଓ ବିରେନ୍ ବାବୁଙ୍କ ଉଦ୍ୟମରେ ୧୯୫୮ ମସିହାରେ କଂଗ୍ରେସ ଓ ଗଣତନ୍ତ୍ର ଉଭୟ ଦଳ ମିଶି ଗୋଟିଏ ଶକ୍ତିଶାଳୀ ମିଳିତ ମନ୍ତ୍ରୀମଣ୍ଡଳ ଗଠନ କଲେ ଏବଂ ବିରେନ୍‌ବାବୁ ପ୍ରଦେଶ କଂଗ୍ରେସ କମିଟିର ସଭାପତି ହେଲେ । ଏହି ମନ୍ତ୍ରୀମଣ୍ଡଳରେ ମହତାବବାବୁ ମୁଖ୍ୟମନ୍ତ୍ରୀ ଏବଂ ବଲାଙ୍ଗିର ମହାରାଜା ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଉପ ମୁଖ୍ୟମନ୍ତ୍ରୀ ହେଲେ ଏବଂ କଂଗ୍ରେସ ଓ ଗଣତନ୍ତ୍ରଦଳରୁ ଚାରିଜଣ ଲେଖାଏ ମନ୍ତ୍ରୀ ହେଲେ । କିଛିଦିନ ଏହିପରି ଚାଲିବାପରେ ଦେଖାଗଲା ଯେ କଂଗ୍ରେସ ଅନୁଷ୍ଠାନର ଅଧିକରୁ ଅଧିକ କ୍ଷତି ହେଉଛି ଏବଂ ଗଣତନ୍ତ୍ର ଦଳର ସରକାରୀ ପୃଷ୍ଠପୋଷକତାରେ ଲାଭ ହେଉଛି । ଏହି ଅବସ୍ଥାରେ ବିଜୁବାବୁ ଓ ବିରେନ୍‌ବାବୁ ମିଳିତ ମନ୍ତ୍ରମଣ୍ଡଳ ଭାଙ୍ଗି କଂଗ୍ରେସର ସାଂଗଠନିକ ସ୍ୱାତନ୍ତ୍ର୍ୟ ରଖିବା ପାଇଁ ମତ ସୃଷ୍ଟି କଲେ । ଏହି ଅବସ୍ଥା ଦେଖି ଅର୍ଥମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ମିଳିତ ମନ୍ତ୍ରମଣ୍ଡଳ ନିର୍ବାଚନ ପର୍ଯ୍ୟନ୍ତ ଚାଲୁ ରହିବ ବୋଲି କଂଗ୍ରେସ ପକ୍ଷରୁ ପ୍ରତିଶ୍ରୁତି ଦିଆନଗଲେ ୬୧-୬୨ ବାର୍ଷିକ ବଜେଟ୍ ଉପସ୍ଥାପିତ କରିବେ ନାହିଁ ବୋଲି ଜିଦ୍ ଧରିଲେ । ପ୍ରଦେଶ କଂଗ୍ରେସ କମିଟି ଏପରି ଅବସ୍ଥାରେ ପ୍ରତିଶ୍ରୁତି ଦେବାକୁ ଅସ୍ୱୀକାର କଲେ ଏବଂ ମୁଖ୍ୟମନ୍ତ୍ରୀ ହିସାବରେ ମହତାବବାବୁ ବଜେଟ୍ ଉପସ୍ଥାପନ କରିବେ ବୋଲି ଆଶା କରାଯାଉଥିଲା । କିନ୍ତୁ ମହତାବବାବୁ ସେଭଳି କୌଣସି ପଦକ୍ଷେପ ନ ନେଇ ଏବଂ ୧୯୬୧ ପ୍ରଥମ ଭାଗରେ ମନ୍ତ୍ରୀମଣ୍ଡଳରୁ ଇସ୍ତଫା ଦେବାରୁ ରାଜ୍ୟରେ ପ୍ରଥମଥର

ପାଇଁ ରାଷ୍ଟ୍ରପତି ଶାସନ ଜାରି ହେଲା । ଏହି ସମୟରେ ପ୍ରଦେଶ କଂଗ୍ରେସ କମିଟି ସଭାପତି ପଦ ପାଇଁ ନିର୍ବାଚନ ହେଲା ଓ ବିଜୁବାବୁ ନିର୍ବାଚିତ ହେଲେ । ରାଷ୍ଟ୍ରପତି ଶାସନ ଜାରି ପରେ ୧୯୭୧ ଜୁନ୍ ମାସରେ ବିଜୁବାବୁ ନେତୃତ୍ୱରେ କଂଗ୍ରେସ ନିର୍ବାଚନର ସମ୍ମୁଖୀନ ହେଲା ଏବଂ ପୁରାତନ ନେତୃବର୍ଗଙ୍କ ମଧ୍ୟରୁ ଏକମାତ୍ର ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ବିଜୁବାବୁଙ୍କ ନେତୃତ୍ୱକୁ ପୁରାପୁରି ସମର୍ଥନ କଲେ । ମହତାବବାବୁ ଓ ରାଧାନାଥ ବାବୁ ପ୍ରମୁଖ ସାହାଯ୍ୟ କରିବା ତ ଦୂରର କଥା, ଏଭଳି ମତିଗତି କଲେ ଯାହା ଫଳରେ କି ସେମାନେ କଂଗ୍ରେସକୁ ବିରୋଧ କରୁଥିବା ଭଳି ଧାରଣା ସୃଷ୍ଟି ହେଲା । ଏହି ନିର୍ବାଚନରେ ପ୍ରଥମଥରପାଇଁ ୧୪୦ ସ୍ଥାନ ମଧ୍ୟରୁ କଂଗ୍ରେସ ୮୨ଟି ସ୍ଥାନ ଦଖଲ କରି ସଂଖ୍ୟାଗରିଷ୍ଠତା ଲାଭକରି କଂଗ୍ରେସ ମନ୍ତ୍ରୀମଣ୍ଡଳ ରାଜ୍ୟରେ ପ୍ରତିଷ୍ଠା କଲା ଓ ବିଜୁବାବୁ ମୁଖ୍ୟମନ୍ତ୍ରୀ ହେଲେ । ଏହି ମନ୍ତ୍ରୀମଣ୍ଡଳ ସୁଦୃଢ଼ ହୋଇଥିବାରୁ ରାଜ୍ୟରେ ନାନାପ୍ରକାର ଉନ୍ନତିମୂଳକ କାର୍ଯ୍ୟ ସମ୍ଭବ ହେଲା । ଏଥିମଧ୍ୟରୁ ପ୍ରଧାନ କାର୍ଯ୍ୟ ଥିଲା ପାରାଦ୍ୱୀପରେ ବୃହତ୍ତ ବନ୍ଦର ଏବଂ ବନ୍ଦରକୁ ଲୁହା ଖଣିରୁ ରପ୍ତାନୀ ପାଇଁ ଲୁହା ନେବା ଉଦ୍ଦେଶ୍ୟରେ କଟକ-କେଉଁଝର ଜିଲ୍ଲାରେ ଥିବା ଦୈତାରି ଖଣିରୁ ପାରାଦ୍ୱୀପ ପର୍ଯ୍ୟନ୍ତ ଏକ୍‌ସପ୍ରେସ୍ ହାଇୱେ ନିର୍ମାଣ । ସେତେବେଳେ ଭାରତ ସରକାର ଏହି ବୃହତ୍ ବନ୍ଦର ପ୍ରତିଷ୍ଠାପାଇଁ ଅନୁକୂଳ ମତ ପ୍ରକାଶ କଲେ ନାହିଁ ଏବଂ ଓଡ଼ିଶାର ପାରାଦ୍ୱୀପ ଓ ପଶ୍ଚିମବଙ୍ଗରେ ହଳଦିଆ ମଧ୍ୟରେ କେଉଁଠାରେ ହେବ ତାହା ସ୍ଥିର କରିପାରିଲେ ନାହିଁ । ବିଜୁବାବୁ ଭାରତ ସରକାରଙ୍କ ନିଷ୍ପତ୍ତିକୁ ଅପେକ୍ଷା ନ କରି ଓଡ଼ିଶା ସରକାରଙ୍କ ଅର୍ଥବିନିଯୋଗକରି ବନ୍ଦର ଏବଂ ଏକ୍‌ସପ୍ରେସ ହାଇୱେ ଏପରି ଭାବେ ନିର୍ମାଣ କଲେ ଯାହାଫଳରେ କି ଭାରତ ସରକାର ଏହି ବନ୍ଦରକୁ ବାଧ୍ୟହୋଇ ବୃହତ୍ତ ବନ୍ଦର ବୋଲି ଘୋଷଣାକରି ଓଡ଼ିଶା ସରକାର ଖର୍ଚ୍ଚ କରିଥିବା ୪୦ କୋଟି ଟଙ୍କା ଦେବେବୋଲି ପ୍ରତିଶ୍ରୁତି ଦେଲେ । ପାରାଦ୍ୱୀପ ବନ୍ଦର ପ୍ରତିଷ୍ଠା ହେଉଛି ବିଜୁବାବୁଙ୍କ ଓଡ଼ିଶାକୁ ସର୍ବଶ୍ରେଷ୍ଠ ଦାନ ଏବଂ ସେଥିପାଇଁ ସେ ଚିର ସ୍ମରଣୀୟ ହୋଇ ରହିବେ । ଏହାପରେ ନାନା ଘାତ ପ୍ରତିଘାତଜନକ ଘଟଣାମାନ ଘଟି ୧୯୬୮-୬୯ ମସିହାରେ ଇନ୍ଦିରାଗାନ୍ଧୀ ଅବିଭକ୍ତ ପୁରାତନ କଂଗ୍ରେସ

ଅନୁଷ୍ଠାନକୁ ନିଜର ନେତୃତ୍ୱ ବଜାୟ ରଖିବାପାଇଁ ବିଭକ୍ତ କଲେ ଏବଂ କିଛିଦିନ ପାଇଁ କେନ୍ଦ୍ରରେ କମ୍ୟୁନିଷ୍ଟମାନଙ୍କ ସାହାଯ୍ୟରେ ଶାସନ ଚଳାଇଲେ । ଏହି ବିଭକ୍ତି ଓ ଓଡ଼ିଶାର ନୂତନ ନେତୃତ୍ୱ ପାଇଁ ବିଜୁବାବୁ ଓ ନିଳମଣି ବାବୁ ପ୍ରମୁଖ ଇନ୍ଦୀରାଙ୍କ କଂଗ୍ରେସରେ ଯୋଗ ନ ଦେଇ ଉତ୍କଳ କଂଗ୍ରେସ ବୋଲି ଗୋଟିଏ ସ୍ୱତନ୍ତ୍ର କଂଗ୍ରେସ ଅନୁଷ୍ଠାନ ଗଢ଼ିଲେ । ବିଜୁବାବୁଙ୍କ ଅନୁଗ୍ରହରେ ରାଜ୍ୟସଭାକୁ ନିର୍ବାଚିତ ହୋଇଥିବା ନନ୍ଦିନୀ ଶତପଥୀ ଓ ଜାନକୀବଲ୍ଲଭ ପଟ୍ଟନାୟକ ଇନ୍ଦୀରା କଂଗ୍ରେସର ଦାୟିତ୍ୱ ନେଲେ । ୧୯୭୫ର ଆପଦକାଳ (Emergency)ରେ ଭାରତର ବହୁ ପ୍ରଖ୍ୟାତ ରାଜନୈତିକ ବ୍ୟକ୍ତିମାନଙ୍କପରି ମହତାବବାବୁ, ନବବାବୁ ଓ ବିଜୁବାବୁ ପ୍ରମୁଖ କାରାରୁଦ୍ଧ ହେଲେ । ୧୯୭୭ରେ ବିଜୁବାବୁଙ୍କ ନେତୃତ୍ୱରେ ଜନତାଦଳ ଗଠିତ ହୋଇ କେନ୍ଦ୍ର ତଥା ରାଜ୍ୟରେ କଂଗ୍ରେସ ମନ୍ତ୍ରୀମଣ୍ଡଳକୁ ଗାଦିଚ୍ୟୁତ କଲେ ଏବଂ ଜନତା ମନ୍ତ୍ରୀମଣ୍ଡଳ ଗଠନ କରାଗଲା । ବିଜୁବାବୁ କେନ୍ଦ୍ରରେ ଇସ୍ପାତ ମନ୍ତ୍ରୀ ଏବଂ ନୀଳମଣି ବାବୁ ରାଜ୍ୟର ମୁଖ୍ୟମନ୍ତ୍ରୀ ହେଲେ । ସେହି ମନ୍ତ୍ରୀମଣ୍ଡଳ ସମୟରେ ଯଥେଷ୍ଟ ଉନ୍ନତି ମୂଳକ କାର୍ଯ୍ୟ ରାଜ୍ୟରେ ହୋଇଛି । ନିଖିଳ ଭାରତୀୟ ସ୍ତରରେ କେତେକ ବାଦବିବାଦ ଯୋଗୁଁ ଜନତା ମନ୍ତ୍ରୀମଣ୍ଡଳ କ୍ଷମତାଚ୍ୟୁତ ହେଲା ଏବଂ ପୁନର୍ବାର କଂଗ୍ରେସ ମନ୍ତ୍ରୀମଣ୍ଡଳ ଗଠିତ ହେଲା । ବର୍ତ୍ତମାନ ବିରୋଧିଦଳମାନଙ୍କୁ ଏକତ୍ର କରି ଆସନ୍ତା ନିର୍ବାଚନରେ କଂଗ୍ରେସ ସହିତ ପ୍ରତିଦ୍ୱନ୍ଦୀତା କରିବାପାଇଁ ପ୍ରଗାଢ଼ ଉଦ୍ୟମ ଚାଲି ପ୍ରଥମ ପଦକ୍ଷେପ ରୂପେ ଯେଉଁ ଜନତା ଦଳ ପ୍ରତିଷ୍ଠିତ ହୋଇଛି, ତହିଁରେ ବିଜୁବାବୁଙ୍କ ଅବଦାନ ଅତୁଳନୀୟ । ବର୍ତ୍ତମାନ ନିଖିଳ ଭାରତ ବିରୋଧିଦଳ ନେତାମାନଙ୍କ ମଧ୍ୟରୁ ସେ ଜଣେ ମୁଖ୍ୟସ୍ଥାନର ଅଧିକାରୀ । ରାଜନୀତିର ଉଠ୍ ପଡ୍ ଓ ମୋଡ଼ ପାରହେବା ଭିତରେ ତାଙ୍କ ଉତ୍ସାହ, ତାଙ୍କ ଚେତନା ସୃଷ୍ଟି କରିବାର ଉଦ୍ୟମ ଏବଂ ସର୍ବୋପରି ତାଙ୍କ ସାହସ ତାଙ୍କ ଉଜ୍ଜ୍ୱଳ ଭବିଷ୍ୟତର ସୂଚନା ଦେଉଛି ।

# ସମ୍ରାଟ ଜାତକ

## ଜ୍ୟୋତିର୍ବିଦ୍ ଅଜୟ୍‌କୁମାର ବେହେରା

"ସୁପ୍ତ ସିଂହର ନିଦ୍ରାଭଙ୍ଗ ଚୀନ କରିଛି" ସନ ୧୯୬୨ ମସିହାର ସେପ୍‌ଟେମ୍ବର-ଅକ୍ଟୋବର ମାସରେ ହୋଇଥିବା ଚୀନା ଆକ୍ରମଣ ବେଳେ ବିବ୍ରତ ଜନତାଙ୍କୁ ଉଦ୍‌ବୋଧନ ଛଳରେ ଯେ କହିଥିଲେ, ସେ ବ୍ୟକ୍ତିଙ୍କ ଜାତକ ଜ୍ୟୋତିଷୀ ପାଇଁ ଦେଖିଲାଭଳି ଜାତକଟିଏ ନିଶ୍ଚୟ । ରଣରଙ୍କ କଳିଙ୍ଗ ସନ୍ତାନର ରକ୍ତ ଏବେ ବି ପ୍ରବହମାନ ଏହା ତାଙ୍କ ଜାତକରୁ ତଥା କଥାରୁ ଧରାପଡ଼ି ଯାଉଛି । ନ୍ୟାୟପାଇଁ ନିଜ ଜୀବନକୁ ବାଜି ଲଗାଇ ଯେ ପରଜୀବନକୁ ରକ୍ଷା କରେ, ଦେଶ ପାଇଁ ଜାତିପାଇଁ ଯେ ଅନେକ କିଛି ତ୍ୟାଗ କରିବାକୁ ଅହରହ ଚେଷ୍ଟାରତ, ସେପରି ଜାତକ ନିଶ୍ଚେ ରଙ୍କର ଧନ ।

ତାଙ୍କର ଜାତକ ବିବରଣୀ ଦେଖିଲେ ଜଣାଯାଏ, ସେ ଶୁକ୍ଳପକ୍ଷ ଆରମ୍ଭ ଦୃଶ୍ୟଚନ୍ଦ୍ର ୨ୟାରେ ଶୁଭଯୋଗରେ ବାଳବକରଣରେ ରବିବାର ଇଂରାଜୀ ତା ୫/୩/୧୯୧୬ ରିଖରେ ଜନ୍ମ, ଜନ୍ମସ୍ଥଳ କଟକ ସହର । ତାଙ୍କ ଜନ୍ମ ବେଳକୁ ଶୀତଋତୁଯାଇ ବସନ୍ତ ଋତୁ ପ୍ରବେଶ କରିଛି । କୃଷ୍ଣପକ୍ଷ ଯାଇ ଶୁକ୍ଳପକ୍ଷ ପ୍ରବେଶ କରିଛି । ଛୋଟଦିନ ଯାଇ ବଡ଼ ଦିନ ଆରମ୍ଭ ହୋଇଛି । ଏପରିକି ସମଦିବସ ଆଉ କେଇଦିନ ବାକି, ପୃଥିବୀ ପୃଷ୍ଠର ପ୍ରକୃତିରେ ବିପ୍ଳବାତ୍ମକ ପରିବର୍ତ୍ତନ, ନାଲି ରଙ୍ଗର ଫୁଲମାନେ ଫୁଟିବାକୁ ଆରମ୍ଭ କରିଛନ୍ତି । ଏହା ଅକାଳ ବସନ୍ତ ନୁହେଁ ସତ୍ୟ, ବସନ୍ତର ଆଗମନୀରେ ତାଙ୍କର ଜନ୍ମ । ତାଙ୍କର କୁଣ୍ଡଳୀରେ ଗଣିତ ଦୃଷ୍ଟିରୁ ସେ ପାଇଛନ୍ତି ଶୁକ୍ରକ୍ଷେତ୍ରୀ ବୃଷଲଗ୍ନ, ୨ୟରେ ବକ୍ରଭାବରେ ୧୦ମ ଓ ୯ମ ପତି ଭାବରେ ମିଥୁନ ରାଶିରେ ଶନି, ୩ୟ ଭାବରେ କର୍କଟ ରାଶିରେ କେତୁଯୁକ୍ତ ହୋଇ ୧୨ଶ ଓ ୭ମ ପତି ବକ୍ରୀ ମଙ୍ଗଳ ରହିଛନ୍ତି । ୪ର୍ଥ ଭାବରୁ ୮ମ ଭାବ ସିଂହ ରାଶିରୁ ଧନୁ ରାଶି ସଂପୂର୍ଣ୍ଣ ଗ୍ରହ ଶୂନ୍ୟ । ୯ମ ଭାବରେ ମକର ରାଶିରେ ରାହୁଯୁକ୍ତ ହୋଇ ୨ୟ ଓ ୫ମ ପତି ବୁଧ, ସେ ଶନିଙ୍କ ସହିତ ବିନିମୟ ଯୋଗପ୍ରାପ୍ତ । ୧୦ମ ଭାବରେ ଟାଇଁ ଟାଇଁ ଖରା ଦେଉଥିବା ସେ ଦିନର ସୂର୍ଯ୍ୟ । ୧୧ଶରେ ୩ୟ ପତି ଚନ୍ଦ୍ର ସ୍ୱଗୃହୀ ବୃହସ୍ପତି ସହିତ ମୀନ ରାଶିଗତ ଆଉ ୧୨ଶ

ଭାବରେ ମେଷ ରାଶିରେ ଲଗ୍ନ ଓ ୬ଷ୍ଠ ପତି ମେଷ ରାଶି ହେଉଛି ମଙ୍ଗଳ ଗ୍ରହଙ୍କ ତେଜ ପ୍ରକାଶର ସ୍ଥାନ ।

ଗ୍ରହସ୍ଥିତି ତର୍ଜମା କଲେ ଜଣାଯିବ ଯେ, ତାଙ୍କର ୩ୟ ଭାବସ୍ଥାନକୁ ବୁଧ, ବୃହସ୍ପତି, ରାହୁ ପୂର୍ଣ୍ଣ ଦୃଷ୍ଟି ଦେଉଛନ୍ତି । ଏହି ସ୍ଥାନରେ କେତୁ ଓ ବକ୍ରୀ ମଙ୍ଗଳ ୩ୟ ଭାବପତି କ୍ଷୀଣଚନ୍ଦ୍ର ୧୧ଶରେ ସ୍ୱଗୃହୀ; ବୃହସ୍ପତି ଯୁକ୍ତ । ଫଳତଃ ଏହି ଜାତକଙ୍କ ବାହୁ ବଡ଼ ମଜଭୁତ, ବଳିଆରଭୁଜ ଏହାଙ୍କ ବାହୁରେ ଅମିତ ବଳ ଦେଇଛନ୍ତି । ଏପରି ଜାତକ ଅସୀଧରୁ କି ମସିଧରୁ ତାକୁ ଦୃଢ଼ଭାବରେ ଚଳାଇ ପାରେ । ସେ ଯୁଦ୍ଧକ୍ଷେତ୍ରରେ ଥିଲେ ବଳବାନ୍ ଶତ୍ରୁ ମଧ ପ୍ରମାଦ ଗଣେ । ହଠାତ୍ ସିଦ୍ଧାନ୍ତ ମୁଣ୍ଡକୁ ଆସେ, ସର୍ବଦା ଯାତ୍ରା ଲାଗି ରହେ । ବହୁ ଦୂତ ବା ସମ୍ବାଦ ଦାତା ଗୃହରେ ନିୟୋଗ ଥାନ୍ତି । ଫୁସ୍‌ଫୁସ୍‌ରେ ବା ଶ୍ୱାସ ପ୍ରଶ୍ୱାସରେ ପୀଡ଼ା ହୁଏ । ଯୁବସୁଲଭ ଗୁଣ ପ୍ରଚଣ୍ଡ, ଖେଳ ପ୍ରତି ଆଗ୍ରହ, ଭଲ ଖେଳୁଆଡ଼, ସାମ୍ବାଦିକତା କାର୍ଯ୍ୟ ବା ସମ୍ପାଦନା କାର୍ଯ୍ୟ ପ୍ରତି ଆଗ୍ରହ । ଏହି ୩ୟ ସ୍ଥାନଗତ ଉଗ୍ରଗ୍ରହ ଯୋଗୁ ଜାତକ ଜଣେ ଉଗ୍ର କ୍ଷତ୍ରୀୟ, ହୁଁକାରରେ ଶତ୍ରୁ ଭୟଭୀତ ହୋଇଯିବେ । ୩ୟ ବାହୁର ନିର୍ଦ୍ଦେଶକ ଏଠାରେ କର୍କଟରାଶି ପଡୁଥିବାରୁ ଓ ୩ୟ ପତି ମୂଲ୍ୟବାନ ଗ୍ରହଯୁକ୍ତ ଯୋଗୁ ଜାତକଙ୍କର ଆଜାନୁଲମ୍ବିତ ବାହୁ ତ ନିଶ୍ଚୟ, କିନ୍ତୁ ହାତରେ ବହୁ ଆୟୁଧ ଥିବା ପୌରାଣିକ ବ୍ୟକ୍ତି ସଦୃଶ, ପୁଣି ଶକ୍ତି ସନ୍ତାନ ସଦୃଶ । ଚରଛ ୧୨ଶ ପତି କେତୁଯୁକ୍ତ ଯୋଗୁ ଜୀବନରେ ନିଦ କମ୍ ହେବ । କେବେ କେଉଁଠାରେ ଶୋଇବେ, ରହିବେ ତାର ଠିକଣା ନାହିଁ । ଏପରିକି ସମୟ ଆସିବ ଯହିଁରେ Sleeping pill ଖାଇ ଶୋଇବାକୁ ବାଧ ହେବେ । ସର୍ଜନଙ୍କ ଅଧୀନରେ ଅନେକଥର ବାଧ ହୋଇ ରହିବେ । ଯାହା ପାଇବେ ହଠାତ୍ ଦାନ କରିବେ । ଜଟିଳ ରାଜକୀୟ ଅଭିଯୋଗ ମଧ ହେବ । ବହୁ ଖର୍ଚ୍ଚ କରି ଦେଇଛନ୍ତି ଯାହାର ହିସାବ ନାହିଁ - ଏପରି ଅଭିଯୋଗ ଆସିବ, କିନ୍ତୁ ଜଣେ ଦାନୀ ରୂପେ ସଂସାରରେ ଖ୍ୟାତି ପାଇବେ ।

୭ମ ପତି ୩ୟରେ ଥିବାରୁ ବାଣିଜ୍ୟରୁ ବଳବୃଦ୍ଧି, ଯେତେଦିନ ବ୍ୟବସାୟ କରିବେ ସେତେଦିନ ପ୍ରତିଷ୍ଠିତ । ହଠାତ୍ ବ୍ୟବସାୟ ଆରମ୍ଭରୁ ହଠାତ୍ ବ୍ୟବସାୟ

ପଳାୟନ, ଦୂରଦୂରାନ୍ତରେ ବ୍ୟବସାୟ ସମ୍ପର୍କ, ଦୂରରେ ବିବାହ । ହଠାତ୍ ବିବାହ । ପ୍ରବଳ କ୍ଷତ୍ରୀୟ ପଦ୍ଧତିରେ ବିବାହ । ଗମନାଗମନରେ ବିକ୍ରମୀ, ପ୍ରତିଷ୍ଠିତ ସାଗରପାରି ଯାତ୍ରା । ମଉଜରେ ସମୟ ଅତିକ୍ରମକାରୀ ହେବ । ୭ମ ଭାବରୁ ପ୍ରତିବାଦୀ ବିଚାର କରାଯାଏ । ପ୍ରତିବାଦୀ ଜାତକଙ୍କର ଅଳ୍ପବୟସ୍କ, ସ୍ତ୍ରୀଲୋକ ଓ କ୍ଷେତ୍ର ବିଶେଷରେ ଭ୍ରଷ୍ଟବ୍ୟକ୍ତି । ଲଢ଼େଇରେ ଯାହାକୁ ହେୟଜ୍ଞାନ କରିବେ, ସେହି ଦୁଃଖର କାରଣ ହେବ । ଭୀଷ୍ମଦେବ ଶୀଖଣ୍ଡିକୁ ଦେଖି ଅସ୍ତ୍ରତ୍ୟାଗ କଲାପରି ଅବସ୍ଥା ଉପୁଜିବ । ୭ମାଧିପର ଦଶା କ୍ଷତିକର । ତାଙ୍କର ଏହିଦଶା ସ୍ୱାସ୍ଥ୍ୟପ୍ରତି କ୍ଷତିକାରକ ହେବ, ୧୯୯୩ ମସିହାଠାରୁ ୭ବର୍ଷ ଧରି ଚାଲିବ ।

୧୨ଶ ପତି ୩ୟରେ ରହିଥିଲେ ଜୀବନରେ ବୃଥା ଅଭିଯୋଗମାନ ଆସିବ, ଗୁଜବ ହେବ, ଗୁପ୍ତ ଶତ୍ରୁତା ହେବ । ଶ୍ୱାସପ୍ରଶ୍ୱାସ ଯୋଗୁ, ଦୁଶ୍ଚିନ୍ତା ଯୋଗୁ ପ୍ରବଳ କଷ୍ଟ । ଭଲ ନିଦ୍ରା ହେବ ନାହିଁ । ରକ୍ତରେ ରୋଗ ଜଡ଼ ରହିବ । ଜୀବନସାରା ବ୍ୟସ୍ତତା ଓ କେତେକ ଗୁରୁତ୍ୱ ପୂର୍ଣ୍ଣ କାର୍ଯ୍ୟରେ ଚିନ୍ତାଶୀଳ ରହିବାକୁ ହେବ । ଆଗାମୀ ୧୯୯୩ ମସିହାଠାରୁ ଆଗତଦଶା ଶ୍ୱାସପ୍ରଶ୍ୱାସ, ରକ୍ତ, ମାଂସପେଶୀ ଉପରେ କଷ୍ଟପ୍ରଦ ଓ ଆଶଂକାପ୍ରଦ ।

କର୍କଟ ରାଶି ୩ୟ ଭାବ, ଏହା ଗୁପ୍ତରାଶି । ବହୁପଦ ରାଶି ୩ୟ ପତି, କ୍ଷୀଣଚନ୍ଦ୍ର ଓ ବୃହସ୍ପତି ଯୁକ୍ତ । ୩ୟ ସ୍ଥାନରେ ୧୨ଶ ଭାବପତି ଓ ୭ମ ପତି ଭାବରେ ନୀଚସ୍ଥ ବକ୍ରୀ ଗ୍ରହ କେତୁଯୁକ୍ତ । ନବାଗତ ସହଯୋଗୀ ହେବେ । ନିଜର ଯୁବ ସହଯୋଗୀ ବିଶୃଙ୍ଖଳ ହେବେ । ନିଜ ନିଜ ମଧ୍ୟରେ ଗୁପ୍ତ ସଂଗଠନ କରିବେ । ଏପରିକି କେତେଜଣ (ଗଣ ମୁଖ୍ୟ) ବିଶ୍ୱାସଘାତକ ହେବେ । ୩ୟ ପତି ଚନ୍ଦ୍ର ବୃହସ୍ପତି ଯୁକ୍ତ । ଏହି ଦଶା ଅଦ୍ଭୁତ ଫଳ ଦିଅନ୍ତା କିନ୍ତୁ ଏହା ଲଗ୍ନର ବାଧକାଧିପ ଶନି ଦୃଷ୍ଟିରେ ଥିବାରୁ ନିଜର ବ୍ୟକ୍ତିମାନଙ୍କ ମଧ୍ୟରେ ଅର୍ନ୍ତବିବାଦ, ସେ ଫଳକୁ କମାଉଛି । ଦ୍ୱାମ୍ନିକ ରାଶିରେ ୩ୟ ଓ ୧୧ଶ ପତି ଥିବାରୁ ନବଦଳ ହେବ ଓ ବିଭିନ୍ନ ରାଜନୈତିକ ଦଳୀୟ ଧର୍ମୀ ଏକ ନିୟମରେ ବନ୍ଧାଯିବେ । ଏହା ଏକ ଯୌଥ ଦଳ ତଥାପି ତନ୍ମଧ୍ୟରେ ଥିବା ଯୁବଗୋଷ୍ଠୀ ମଧ୍ୟରେ ବକ୍ର ଉଦ୍ୟମ ଓ ପରସ୍ପର ବକ୍ରୋକ୍ତି ଆସିବ । ଯୌଥଦଳରେ ସୁନାମ ଜାତକଙ୍କ ଚେଷ୍ଟାରୁ ୧୯୯୩

ମଧ୍ୟରେ ହିଁ ମିଳିବ । ରାଶିଚକ୍ରର ଡ଼ାକ୍ତରଖାନା ମୀନ ରାଶି ଓ କନ୍ୟା ରାଶି, ଏଠାରେ ଅର୍ଥାତ୍ ଏହି ଦୁଇ ରାଶିରେ ଗ୍ରହଥିଲେ ବା ୬ଷ୍ଠ ଓ ୬ଷ୍ଠର ୬ଷ୍ଠ (୧୧ଶ) ତଥା ଅଷ୍ଟମାଧିପ ସଂଶ୍ଳିଷ୍ଟ ଦଶାପତିର ଦଶା ଭୁକ୍ତିରେ ଜାତକ ଚିକିତ୍ସାଧୀନ ରୁହନ୍ତି । କଷ୍ଟରେ ଶରୀର ଚର୍ଯ୍ୟା କରିବାକୁ ସେ ସମୟରେ ପଡ଼େ, ଯାହାକି ଏବେ ଚନ୍ଦ୍ରଦଶାରେ ଭୋଗ ହେଉଛି । ତାଙ୍କ ପାଇଁ ନୂତନ ଚିକିତ୍ସାପ୍ରଣାଳୀ ଲାଗୁ ହେବ । ୬ଷ୍ଠ ପତି ଲଗ୍ନର ପାଖାପାଖି ଚରରାଶିସ୍ଥ ହଠାତ୍ ବା ଆକସ୍ମିକ ଶରୀର ଅସୁସ୍ଥତା ଦେଖାଦେବ ।

୮ମ ପତି ବୃହସ୍ପତି ଶନି ଦୃଷ୍ଟ, ଚନ୍ଦ୍ରଯୁକ୍ତ ଓ ରବିଙ୍କ ୨ୟସ୍ଥ ଯୋଗୁ ତାଙ୍କର କୃତି କଣ ତାଙ୍କର ଅନୁପସ୍ଥିତିରେ 'ପରିସ୍ଥିତି' ଲୋକେ ଭାଳିବେ ସିନା ତାଙ୍କ ଉପସ୍ଥିତି ଜନ୍ମରେ ଭ୍ରାନ୍ତି ହେଉଥିବ ।

ରବି ଶନି ୪ର୍ଥ ସ୍ଥାନକୁ ଦୃଷ୍ଟି କରୁଛନ୍ତି ୧୦ମ ପତି ୧୦ମ କାରକ ୪ର୍ଥ ସ୍ଥାନକୁ ଦୃଷ୍ଟି କଲେ ପୁଅକୁ ବାପ ରକ୍ଷାକଲାପରି । ପ୍ରଜାକୁ ରାଜା ରକ୍ଷା କଲାପରି, ସେ ତାଙ୍କର ଅନୁଗତ୍ୟମାନଙ୍କୁ ରକ୍ଷା କରନ୍ତି । ତାଙ୍କର ବାସଭୂମି ପାଇଁ ସର୍ବଦା ଚିନ୍ତିତ ରହିବେ । ତାଙ୍କର ଜନ୍ମସ୍ଥାନ ରାଜ୍ୟରେ, ଜନ୍ମରାଜ୍ୟ ଦେଶରେ, ଜନ୍ମ ଦେଶ ଜନ୍ମ ମହାଦେଶରେ ଓ ଜନ୍ମ ମହାଦେଶ ପୃଥିବୀରେ, ତାଙ୍କ ଯୋଗୁ ସମ୍ମାନ ପାଇବ । ଆଉ ଜନ୍ମ ବଂଶ କଥା କଣ କହିବା, ପାତାଳ ସ୍ୱର୍ଗ ହେବ, ସେ ଆଉ ଏକ ସ୍ୱର୍ଗଚିନ୍ତକ କିନ୍ତୁ ମହାରାଜ ତ୍ରିଶଙ୍କୁଙ୍କର ଭୁଲ ତାଙ୍କ ପାଖରେ ସଂସ୍କାରପୂର୍ଣ୍ଣ । ସେ ଗ୍ରହ ପ୍ରଭାବରୁ ସଙ୍କଟାପନ୍ନକୁ ଅନୁରକ୍ଷାକରି, ଶିଳ୍ପ ବାଣିଜ୍ୟରେ ଆଲୋଚନା କରି, ପୁରସ୍କାର ଦାତା ରୂପେ ସେ ପୃଥିବୀ ପ୍ରଖ୍ୟାତ । ପରୋକ୍ଷରେ ବହୁଜନଙ୍କର ଅନ୍ନ ସଂସ୍ଥା ଦାନକାରୀ । ଜଣେ ରହିଲେ ସିନା ଶାସନ ଚଳିବ ? ଓଡ଼ ଭୂମିରେ ଚାଷର ଉନ୍ନତି ପାଇଁ ସେ କୃଷି ବିଶ୍ୱବିଦ୍ୟାଳୟ ପରି ଉଚ୍ଚତର କୃଷିଶିକ୍ଷା ପ୍ରତିଷ୍ଠାନ କରାଇଛନ୍ତି । ତାଙ୍କର ଧନ ସ୍ଥାନରେ ଅଧୋମୁଖୀ ଧାତୁ ସୃଷ୍ଟିକାରୀ ଗ୍ରହ ଓ ୧୦ମ (ପାହାଡ଼) ପତି ଓ ଧନପତି ପୃଥ୍ୱୀରାଶିରେ ଓ ସୌଦାଗରୀ ଗ୍ରହ ପୁଣି ପୃଥ୍ୱୀଗ୍ରହ ଫଳରେ ଭୂମିଜ ଦ୍ରବ୍ୟକୁ ନିଜେ ଅବଲମ୍ବନ କରି ଅନେକଙ୍କୁ ସେହି ଦ୍ରବ୍ୟରେ ପୋଷିବାର କ୍ଷମତା ଓ ଦକ୍ଷତା ତାଙ୍କର ରହିଛି । ଏଥିପାଇଁ ପଥର ଲୁହା କୋଇଲା ଖଣିଜ ଦ୍ରବ୍ୟ ଆଦି ଯକ୍ଷଧନରେ

ଆମ ଲୋକଙ୍କୁ ବଡ଼ କରିବାକୁ ପଦକ୍ଷେପ ନେଇଛନ୍ତି । ରାଉରକେଲା ଇସ୍ପାତ କାରଖାନା ହେଲା କିନ୍ତୁ ପାରାଦ୍ୱୀପ ଇସ୍ପାତ କାରଖାନା ନ ହେବାରୁ ସେ ପ୍ରବଳ ଦୁଃଖିତ । କୁଣ୍ଡଳିରେ ୭ମ ଭାବ ବହୁପ୍ରଦ ଜଳ ରାଶିସ୍ଥ ୨ ବୈଶ୍ୟଗ୍ରହ ଚନ୍ଦ୍ର ଜଳଜ ମୀନ ରାଶିରେ ବୁଧ ଜଳଜ ମକର ରାଶିରେ ୭ମ ପତି ମଙ୍ଗଳ ଜଳଜ କର୍କଟ ରାଶିରେ, ଫଳରେ ବହୁଜନଙ୍କପାଇଁ ଜଳ ସହିତ କିଛି ବ୍ୟବସାୟ ଆରମ୍ଭ କରିବା କଥା । ଏହା ଏତେ ବଡ଼ ଘଟଣା ହେଲା ଯେ ଓଡ଼ିଆ ପିଲାଙ୍କ 'କଳିଙ୍ଗ ସାଧବ' କଥାର ନବୀକରଣ ହୋଇଗଲା । ସାଗର କନ୍ୟା ମହାଲକ୍ଷ୍ମୀ ଆମ ଜଗନ୍ନାଥ ପାଟରାଣୀ ସାଗର ବ୍ୟବସାୟରେ ଆମର ଲକ୍ଷ୍ମୀ ଆସିଥିଲେ, ହୀରା ଜହ୍ନରତକୁ ସାଥିରେ ନେଇ ଏବେ ବୈଦେଶିକ ମୁଦ୍ରା ଆସୁଛି ଆହୁରି ଆସିବ ଏଇ ପାରାଦ୍ୱୀପର କିର୍ତ୍ତୀ କାଇଁ କେତେଦୂର ରହିଯିବ ।

ସବୁ ରାସ୍ତା ରୋମ୍ ସହରକୁ ପଡ଼ିଛି 'ଭୁଲ' । ବର୍ତ୍ତମାନ ସବୁ ବନ୍ଦରରୁ ରାସ୍ତା ଆମ ପାରାଦ୍ୱୀପ ବନ୍ଦରକୁ ଆଉ ପାରାଦ୍ୱୀପ ବନ୍ଦରରୁ ରାସ୍ତାଯାଇ ପୁଣି ସେହି ବଡ଼ ଦାଣ୍ଡ ସହିତ ଯୋଡ଼ିହୋଇଯାଇଛି । ଆଜି ପୃଥିବୀର ସବୁ ବ୍ୟକ୍ତିଙ୍କ ଦାଣ୍ଡ ସହିତ ବଡ଼ଦାଣ୍ଡ ଜଡ଼ିତ । ରାସ୍ତା ନିର୍ମାଣରେ ଶେରସାହା ଗୌରବ ପାଇଥିଲେ । ସେ "ଗ୍ରାଣ୍ଡ ଟ୍ରଙ୍କ ରୋଡ଼" କରାଇଥିଲେ । ଆଉ ଏହି ଜାତକ "ଏକସ୍‌ପ୍ରେସ୍ ସଡ଼କ" କରାଇଛନ୍ତି ଯାହାଙ୍କ କଷ୍ଟ କାର୍ଯ୍ୟ ବା ଦୁସାଧ୍ୟକାର୍ଯ୍ୟ, ଲଗ୍ନର ୩ୟ ସ୍ଥାନରେ ୧୦ମର ୩ୟ ସ୍ଥାନ ଗତ (୧୨ଶ ପତି କେତୁ ଯୁକ୍ତ ହୋଇଥିବାରୁ ଏପରି ଯୋଗ ସୃଷ୍ଟି ହୋଇଛି । ଠିକ୍ ଏହି କାରଣରୁ ସେ ବିଶ୍ୱବିଖ୍ୟାତ ବୈମାନିକ, ବାଳକ ସୁଲଭ ଗୁଣରେ ବାରବାଟି ପଡ଼ିଆର ଉଡ଼ାଜାହାଜ ଦେଖା ବେଳେ ଗୋରା ପୋଲିସ୍‌ର ତାଡ଼ନାରେ ଉତ୍ତେଜିତ ହୋଇ କରିଥିବା ଶପଥ ସେ ଅକ୍ଷରେ ଅକ୍ଷରେ ପାଳନ କରିଛନ୍ତି । ସେ କେବଳ ବୈମାନିକ ନୁହନ୍ତି ବିମାନମାଲିକ ଆଉ ଓଡ଼ିଆଙ୍କ ପାଇଁ ବିମାନ ଯାତ୍ରାର ସୁଗମପନ୍ଥା ସେ ସୃଷ୍ଟି କରିଛନ୍ତି । ଓଡ଼ିଆପିଲା ଉଡ଼ାଜାହାଜ କିଣିବା ବ୍ୟବସ୍ଥା ମଧ୍ୟ ସେ କରିପାରିଛନ୍ତି ।

ଧନ ସ୍ଥାନସ୍ଥ ବକ୍ରୀଶନି ଧନପତି ବୁଧ ରାହୁଯୁକ୍ତ ୧୨ଶ ପତି ବା ବ୍ୟୟଭାବ ପତି ମଙ୍ଗଳ କେତୁଯୁକ୍ତ ଏହି ଜାତକଙ୍କର ଧନବଳରେ ବିଚିତ୍ର

ଗତି, ପ୍ରବଳ ବ୍ୟୟ ଯୋଗୁ ଧନସବୁ ଅଣହାତ । ଯିଏ ପ୍ରାର୍ଥୀ ହେଲା ସେ କିଛି ନିଶ୍ଚୟ ପାଇବ ଯେଉଁ ପଥରେ ହେଉ ପାଇବ । ତାଙ୍କର ପ୍ରାପ୍ତିସ୍ଥାନ ମଜଭୂତ ବୋଲି ସେ ଚଳିପାରୁଛନ୍ତି ସିନା, ନଚେତ୍ ଆୟ ସାଥିକୁ ହଠାତ୍ ବ୍ୟୟ ତାଙ୍କୁ ଶେଷ କରିଦିଅନ୍ତା । ପୁଣି ୮ମ ପତି ୧୧ଶରେ ଥିବାରୁ ସେ ଏପରି ଅର୍ଜନ କରିଛନ୍ତି ଯାହା ତାଙ୍କର ବଂଶଧର କେବଳ ନୁହଁନ୍ତି ତାଙ୍କର ଆଶ୍ରିତ ମାନେ ମଧ୍ୟ ସେ ଧନର ଅସରନ୍ତି ବୁଝୁଥିବେ । ତାଙ୍କର ଅନୁଭୂତି ସବୁବେଳେ ତାଙ୍କୁ ଧନ ଦେଉଥିବ । ମ୍ଳେଚ୍ଛ ଗ୍ରହ ଶନି ୨ୟରେ ପୁଣି ବୁଧ ୨ୟ ପତି ରାହୁଯୁକ୍ତ ୧୦ମ ପତି ୨ୟରେ ଫଳତଃ ସେ ଯାହା ସହିତ ସମ୍ଭାଷଣ କରନ୍ତୁ ନିଜେ ତାଙ୍କର ମୁରବୀ ଭଳି ଆଚରଣ କରିବେ ଏପରିକି ଗୋରା ଅମଳରେ ଲାଟ୍ ସାହେବଙ୍କୁ ମଧ୍ୟ ସେହିପରି କହିଛନ୍ତି । ଏବେ ତ କେଇଜଣଙ୍କୁ ଛାଡ଼ିଦେଲେ ସେ ସମସ୍ତଙ୍କର ମୁରବୀ ସ୍ଥାନୀୟ କହିବା ସ୍ୱାଭାବିକ ।

ଭୂମିପୁତ୍ର ମଙ୍ଗଳ ଗ୍ରହ ରାଶିରେ ଲଗ୍ନପତି ରହୁଛନ୍ତି ସେ ନିଜେ 'ଭୂମିପୁତ୍ର' ହୋଇ ପାରିଛନ୍ତି । କ୍ଷତ୍ରୀୟ ବୃତ୍ତିରେ ସେ ପ୍ରତିଷ୍ଠିତ ଓ ସର୍ବୋଚ୍ଚଶ୍ରମ କରିଥିବା ବ୍ୟକ୍ତିଙ୍କୁ ପୁରସ୍କାର ମିଳିବା ପାଇଁ ସେ ସୃଷ୍ଟି କରିଛନ୍ତି 'କଳିଙ୍ଗ ପୁରସ୍କାର' ଠିକ୍ ଶରୀର ଚର୍ଚ୍ଚା ପ୍ରତିଯୋଗିତାରେ ଯେପରି ପୂର୍ବେ ରାଜାମାନେ ଦେଉଥିଲେ ।

ଏପରି ଜାତକଙ୍କୁ କିଏ ଦୀର୍ଘଜୀବୀ ନ କହିବ ? ୮ମ ପତି ଚନ୍ଦ୍ରଯୁକ୍ତ ଓ ୧୧ଶ ଭାଗବତ, ଏବେ ଚନ୍ଦ୍ରଦଶା ଚାଲୁଛି ଏହି ବ୍ୟକ୍ତିଙ୍କର ବ୍ୟକ୍ତିତ୍ୱ ପରିସ୍ଫୁଟ ସମୟ ଆସିଛି । ସେ କଣ ? ସେ କଣ କରିପାରିବେ ? ଲୋକେ ପୁଣି ବୁଝିଲେଣି ଆହୁରି ପରେ ମଧ୍ୟ ବୁଝିବେ । ଆଗାମୀ ଆଗତ ଦଶା ଭାବରେ ମଙ୍ଗଳ ଗ୍ରହ ଆସୁଛନ୍ତି । ଏହି ମହାନ କ୍ଷେତ୍ରୀୟଙ୍କ ନାମ ତ ଆପଣ ଜାଣି ସାରିଥିବେ ତେବେ କହିଦେଲେ କ୍ଷତି ନାହିଁ- ଶ୍ରୀଯୁକ୍ତ ବିଜୁବାବୁ । ତାଙ୍କୁ ତ ଆମେ ଆର୍ଶୀବାଦ କରିପାରିବୁ ନାହିଁ ତେବେ ଶ୍ରୀ ଜଗନ୍ନାଥଙ୍କୁ ଜଣାଇଲି ଆଗାମୀ ଦଶାରେ ମଙ୍ଗଳ ଗ୍ରହ ତାଙ୍କୁ ମଙ୍ଗଳରେ ରଖନ୍ତୁ । ତାଙ୍କ ଜାତକ କଥା ଅନେକ ଲମ୍ବା, ସେ ସରିବ ନାହିଁ । ତାହା 'କଥାସରିତ ସାଗର' । ତାଙ୍କର ବିଜୟ ହେଉ । ଇତିଶମ୍ ।

# ମଣିଷର ବିଜୁବାବୁ

## ଶ୍ରୀକାନ୍ତ ପଣ୍ଡା

ନେପୋଲିୟନ ଥରେ କହିଥିଲେ- ପୃଥିବୀର ଇତିହାସରେ ନେପୋଲିୟନର ସ୍ଥାନ ଅଧ ପୃଷ୍ଠା ମଧ୍ୟ ନୁହେଁ । ଇତିହାସ ଅଧ୍ୟୟନ କଲେ ତୁମେ ବି ଅନୁଭବ କରିବ ଯେ, ଊନବିଂଶ ଶତାବ୍ଦୀର ୟୁରୋପୀୟ ଇତିହାସର ପୁରୁଷୋତ୍ତମ ହିଁ ନେପୋଲିୟନ୍ । ଭାରତୀୟ ଇତିହାସ କଂଗ୍ରେସରେ ବିଜୁବାବୁ ପ୍ରଶ୍ନ କରିଥିଲେ ଐତିହାସିକମାନଙ୍କୁ, ଯେଉଁ ମୟୂରପଂଖୀ ବୋଇତ ଲାଗୁଥିଲା ଇଣ୍ଡୋନେସିଆ, ଜାଭା, ବାଲି, ସୁମାତ୍ରା ଭଳି ଅନେକ ଦ୍ୱୀପ ପୁଞ୍ଜରେ, ଯେଉଁ କଳିଙ୍ଗର ବୀରସେନାନୀ କଳିଙ୍ଗ ଯୁଦ୍ଧରେ ଏ ଜାତିର ଉନ୍ନତମାନର କଳାର ନିଦର୍ଶନ ଏବେ ବି ବିଭିନ୍ନ ମନ୍ଦିରଗୁଡ଼ିକରେ ବିରାଜୁଛି, ଆଜିର ଓଡ଼ିଆ ବଂଶଧରମାନେ କଣ ସେଇ କଳିଙ୍ଗର ଉତ୍ତରାଧିକାରୀ ? Read between the lines.ଅଲିଖିତ ଇତିହାସ କ'ଣ କହେ ?

ପ୍ରାୟ ୧୯୬୯ ଘଟଣା ଡ଼ଃ ମାୟାଧର ମାନସିଂ ମୋତେ ପାରାଦ୍ୱୀପ ବନ୍ଦର ଉପରେ ପ୍ରକାଶ ପାଇଥିବା 'ସ୍ମରଣିକା'ଟିଏ ବଢ଼ାଇଦେଇ କହିଲେ-"ଦେଖ ଶ୍ରୀକାନ୍ତ, ଯେଉଁ ଲୋକଟି ଏଇ ବନ୍ଦରର ଜନ୍ମଦାତା, ପ୍ରଥମ ପୃଷ୍ଠାରୁ ଶେଷ ପୃଷ୍ଠା ପର୍ଯ୍ୟନ୍ତ ଖୋଜିଲ ଦେଖି- ତାଙ୍କ ନାମ କେଉଁଠି ଶ୍ରୀ ନିଶାମଣି ଖୁଣ୍ଟିଆ ରଖିଛନ୍ତି କି ?"

ବାସ୍ତବିକ୍, କୌଣସି ପୃଷ୍ଠାରେ ବିଜୁବାବୁଙ୍କ ନାମ ନଥିଲା । ଇତିହାସ ପୃଷ୍ଠାରୁ ନୂତନ ଓଡ଼ିଶାର ଏଇ ପୁରୁଷୋତ୍ତମର ଅବଦାନ, ଆମେ ସଭିଏଁ ମିଳି ଲିଭାଇବାରେ ବ୍ୟସ୍ତ ଥିବାବେଳେ, ତାଙ୍କରି ବିଷୟରେ ଜାଣିବାର ଶରଧା କେଉଁ ଓଡ଼ିଆର ଅଛି ? କେତେଜଣ ଓଡ଼ିଆ, "ଗୋରାକବରକୁ ରାସ୍ତା ଜାଣନ୍ତି-ଅବା କିଏ ମନେରଖିଛି-କୁଳବୃଦ୍ଧ ମଧୁସୂଦନଙ୍କୁ ?

ଓଡ଼ିଶା ଓ ଓଡ଼ିଆଙ୍କୁ ବିଜୁବାବୁଙ୍କର ବଡ଼ ଅବଦାନ କଣ କହିଲ ? ଅନେକ କହିବେ ପାରାଦ୍ୱୀପ ବନ୍ଦର, ମିଗ୍ କାରଖାନା, ଚୌଦ୍ୱାର ସହର, ନେଲକୋ ଇତ୍ୟାଦି ଅନେକ । ମୋ ମତରେ ଓଡ଼ିଆଙ୍କୁ ତା'ର ସ୍ୱାଭିମାନର ଚିନ୍ତା ଦେଇଛନ୍ତି ବିଜୁବାବୁ । କୋରାନର ଇନାୟତ ୧୧ରେ ଲେଖାଅଛି-"ମୁଁ

ସେମାନଙ୍କୁ ସାହାଯ୍ୟ କରେନା ଯିଏ ନିଜକୁ ନିଜକୁ ସାହାଯ୍ୟ କରି ଜାଣେନା-ତୁମେ ପ୍ରଥମେ ପଦକ୍ଷେପ ନିଅ । ଦ୍ୱିତୀୟ ପଦକ୍ଷେପର ପ୍ରେରଣା ତୁମକୁ ଦେବି।'' ମୋ ଚିନ୍ତାରେ ସେଇ ପ୍ରଥମ କଦମ୍ ଉଠାଇବାର ପ୍ରେରଣା ଏ ଜାତିକୁ ଦେଇଛନ୍ତି ବିଜୁବାବୁ । ପ୍ରତିଦାନରେ ଆମେ ଓଡ଼ିଆ ତାଙ୍କୁ କଣ ଦେଇଛୁ ? ହତାଶା, କମିଶନ୍, ନିର୍ଯ୍ୟାତନା ଓ ବିଡ଼ମ୍ବନା । ଓଡ଼ିଆ ବାହାରେ ବିଭିନ୍ନ ସ୍ତରର ଲୋକଙ୍କୁ ଭେଟିଛି । ବିଜୁ ପଟ୍ଟନାୟକଙ୍କ ପ୍ରତି ତାଙ୍କର ଶ୍ରଦ୍ଧାଞ୍ଜଳି ମୋତେ ଅଭିଭୂତ କରିଛି । ସେମାନଙ୍କର ଦେଖା, ବିଜୁପଟ୍ଟନାୟକଙ୍କ କଥା ତୁମକୁ କିଛି ଲେଖୁଛି । ସେତେବେଳେ ଆସାମର ରାଜଧାନୀ ଥିଲା ସିଲଂ ୧୯୬୯ ମସିହାର କଥା-ବ୍ୟବସାୟିକ କାମରେ ଯାଇଥିଲି ସିଲଂ- ରହୁଥିଲି ପାଇନ୍ ଉଡ୍ ହୋଟେଲରେ । ହୋଟେଲର ଭୋଜନଶାଳାରେ ପରିଚିତ ହେଲା ଜଣେ ସ୍ଥାନୀୟ ଅଧ୍ୟାପକଙ୍କ ସହିତ । ଗୌହାଟି ବିଶ୍ୱବିଦ୍ୟାଳୟର ଇତିହାସ ଅଧ୍ୟାପକ-ନାମ ଶ୍ରୀ ଫୁକନ (ପୁରା ନାମଟି ପାଶୋରି ଯାଇଛି) । ପରିଚୟରୁ ଆତ୍ମୀୟତା । ନୀଳପର୍ବତର କାମାକ୍ଷୀ ମନ୍ଦିରର ଇତିହାସରୁ ଆରମ୍ଭ କରି ଚନ୍ଦ୍ରଭାଗାର କୋଣାର୍କ ପର୍ଯ୍ୟନ୍ତ ବହୁ ବିଷୟରେ ଆଲୋଚନା କରିଥିଲୁ । ମୋତେ ହଠାତ୍ ପଚାରିଲେ-'ତୁମେ ଓଡ଼ିଶାର ଲୋକ, ବିଜୁ ପଟ୍ଟନାୟକଙ୍କୁ ଜାଣ ?' ଉତ୍ତର ଦେଇଥିଲି ମୁଁ ତାଙ୍କ ଶିଳ୍ପ ସଂସ୍ଥାରେ କାମକରେ ବୋଲି। ସେ କହିଲେ ତୁମେ କଳିଙ୍ଗ ଟିଉବସ୍ ରେ କାମ କର, ତେଣୁ ବିଜୁ ପଟ୍ଟନାୟକଙ୍କୁ ନିଶ୍ଚିତ ଭାବରେ ଦେଖିଥିବ-ଦେଖିବା ଓ ଜାଣିବା ଭିତରେ ପାର୍ଥକ୍ୟ ନାହିଁକି? - ପୁଣି ପଚାରିଥିଲେ, ''ତୁମ ଓଡ଼ିଶାର ଲୋକ, ଯେଉଁ ଲୋକଟି ନୂତନ ଓଡ଼ିଶାର ରୂପରେଖ ଦେଲା, ଶିଳ୍ପ କ୍ଷେତ୍ରରେ ନୂତନ ଚିନ୍ତା ଓ ଚେତନା ଆଣିଲା ତାହାରି ବିରୁଦ୍ଧରେ କମିଶନ୍ ବସାଗଲା । ଇଣ୍ଡୋନେସିଆର ସ୍ୱାଧୀନତା ପାଇଁ ବିଜୁବାବୁଙ୍କର ଅବଦାନ, ପାକିସ୍ଥାନର କାଶ୍ମୀର ଆକ୍ରମଣ ସମୟରେ ବିଜୁବାବୁଙ୍କର ସାହସିକତାର କଥା ମଧ୍ୟ ଭୁଲିଗଲେ ଆପଣଙ୍କର ଦେଶର ଲୋକେ ? କଳିଙ୍ଗ ଯୁଦ୍ଧରୁ ଆରମ୍ଭ କରି, ବୌଦ୍ଧ ସଂସ୍କୃତି, କପିଳେନ୍ଦ୍ର ଦେବ, ଚୈତନ୍ୟରୁ ମଧୁସୂଦନ ଦାସ ଓ ବିଜୁବାବୁଙ୍କ ବିଷୟରେ କହିଚାଲିଥିଲେ ଶ୍ରୀ ଫୁକନ । ନୂତନ କରି ଶୁଣିଲି ଓଡ଼ିଶା ଓ ଓଡ଼ିଆର ଇତିହାସ । ଯିବାବେଳେ ବ୍ୟଙ୍ଗକରି କହିଥିଲେ- ଆଗାମୀ ୧୦୦

ବର୍ଷ ମଧ୍ୟରେ ଓଡ଼ିଶାରେ ବିଜୁବାବୁଙ୍କ ଭଳି ପୁଅଟିଏ ଜନ୍ମ ହେବ କି ନା ସନ୍ଦେହ ।

ଆଉ ଦିନେ ୧୯୭୦ ମସିହା । କାନପୁରରୁ ଦିଲ୍ଲୀ ଯିବାବେଳେ। ଉଡ଼ାଜାହାଜରେ ମୋ ପାଖ ସିଟ୍‌ରେ ଆସନ ଗ୍ରହଣ କଲେ ଜଣେ ହୃଷ୍ଟପୁଷ୍ଟ ମଧ୍ୟମବୟସ୍କ ଭଦ୍ରଲୋକ । ପରିଚୟ ହେଲା । ଜାଣିଲେ ମୁଁ ଓଡ଼ିଶାର ଲୋକ । କ'ଣ ଭାବିଲେ କେଜାଣି, ସେ ହଠାତ୍ କହିଉଠିଲେ-

"You Oriyas are fools". ନିର୍ବାକ ହୋଇ ତାଙ୍କୁ ପ୍ରଶ୍ନ କଲି What do you mean ? ତାପରେ ସେ କହିଥିଲେ ବିଜୁ ପଟ୍ଟନାୟକଙ୍କ କଥା; ଆଉ ଓଡ଼ିଶା ବାସୀଙ୍କର ତାଙ୍କ ପ୍ରତି ନିଷ୍ଠୁରତାର କଥା । ଯେତେଦୂର ମନେ ପଡ଼େ ସେ କହିଥିଲେ, "How closely you know Biju Patnaik? He is big a man for a small state like Orissa. Had he been born in Punjab, we would have put him as Prime Minister of the Country. How many leaders you find of his calibre? In Orissa, he is being sent to the gallows by his own people instead.

କିଛି ସମୟ ପରେ ସେ ବୋଧେ ଅନୁଭବ କରିଥିଲେ ଯେ ମୋତେ ଏମିତି କହିବାଟା ତାଙ୍କ ପକ୍ଷେ ଅବାନ୍ତର ହୋଇଛି । ପରେ ପରେ ସେ କହିଥିଲେ-କିଛି ମନେ କରିବେନି, ଯେ କୌଣସି ଓଡ଼ିଆକୁ ଭେଟିଲେ ମୁଁ ଏହି କଥାହିଁ କହିବି । - ସେ ଜଣେ ସାମରିକ ଅଫିସର, ନାମ ବ୍ରିଗେଡ଼ିୟର ଚଡ୍‌ଡ଼ା (Chadda)

୧୯୬୭ ମସିହାରେ ବିହାର ଏକ ବିଭୀଷିକାପୂର୍ଣ୍ଣ ମରୁଡ଼ି ଭିତରେ ହିଁ ଗତି କରୁଥାଏ । Bihar Draught Relief Committeeର ଚେୟାରମେନ୍ ଥାନ୍ତି ଜୟପ୍ରକାଶଜୀ । ପାଟଣାର ସଦାକତ୍ ଆଶ୍ରମରେ ତାଙ୍କୁ ଭେଟିଥିଲି କିଛି ବ୍ୟବସାୟିକ ଆଦେଶ ସଂଗ୍ରହ କରିବା ପାଇଁ । ମିସେସ୍ କ୍ୟାମିଲା ଇଂଲଣ୍ଡରୁ ଆସିଥାନ୍ତି ବିହାରର ଏହି ମରୁଡ଼ି ପାଇଁ ସେବାର ମନୋବୃତ୍ତି ନେଇ । ମୁଁ ତାଙ୍କୁ ଭେଟିଥିଲି । ଆମର ଶିଳ୍ପସଂସ୍ଥା ବିଷୟରେ ଜାଣିବାକୁ ଚାହିଁଲେ। ଶିଳ୍ପଟି ଓଡ଼ିଶାରେ, ଏହାର ପ୍ରତିଷ୍ଠାତା ଶ୍ରୀ ବିଜୁ ପଟ୍ଟନାୟକଙ୍କ ନାମ ଶୁଣି ସେ ପ୍ରାୟ ଚପଳତା ହିଁ ପ୍ରକାଶ କରିଥିଲେ । କଳିଙ୍ଗ ପୁରସ୍କାରର ପ୍ରତିଷ୍ଠାତା ଶ୍ରୀ ପଟ୍ଟନାୟକଙ୍କୁ ସେ ଅନେକ ଥର ଲଣ୍ଡନରେ ଭେଟିଛନ୍ତି ।

ସେ ଜଣେ ନିର୍ଭୀକ ପାଇଲଟ୍ ଏବଂ ଏକ ବିରାଟ ବ୍ୟକ୍ତିତ୍ୱର ଅଧିକାରୀ। ମୋତେ କହିଥିଲେ ତାଙ୍କର ସମ୍ମାନ ବିଜୁବାବୁଙ୍କୁ ଜଣାଇବା ପାଇଁ। ଆଶା ରଖିଥିଲି ଲଣ୍ଡନ ଫେରିବା ପୂର୍ବରୁ ଓଡ଼ିଶା ଆସିବେ ଓ ବିଜୁବାବୁଙ୍କୁ ଭେଟିବେ।

ଅନ୍ୟ ଜଣେ ଲୋକଙ୍କ କଥା କହୁଛି ଜୀବନଲାଲ ବଂଦୋପାଧ୍ୟାୟ- କଲିକତାର ବହୁଳ ପ୍ରଚାରିତ ଓ ବିତର୍କିତ ସମ୍ବାଦ ପତ୍ର ''ସତ୍ୟଯୁଗ''ର ସଂପାଦକ । ନିର୍ଭୀକ ସାମ୍ବାଦିକତା ପାଇଁ ଭାରତୀୟ ସାମ୍ବାଦିକତାରେ ଗୋଟିଏ ଉଜ୍ଜ୍ୱଳ ନାମ । ଛାତ୍ରଜୀବନ ପରେ ଏଇ ନିର୍ଭୀକ ସାମ୍ବାଦିକତାର ଶିକ୍ଷାଲାଭ ପାଇଁ ଯୋଗ ଦେଇଥିଲେ 'ଦୈନିକ ବସୁମତୀ' କାଗଜରେ । ଶ୍ରୀ ବିବେକାନନ୍ଦ ମୁଖୋପାଧାୟ ସେତେବେଳେ ଏଇ ବସୁମତୀ କାଗଜର ସଂପାଦକ । ସାମ୍ବାଦିକତା କ୍ଷେତ୍ରରେ ଶ୍ରୀ ବିବେକାନନ୍ଦ ମୁଖୋପାଧାୟ ଯେ ଜଣେ ନିର୍ଭୀକ ସାମ୍ବାଦିକ କେବଳ ନୁହନ୍ତି, ସେ ଥିଲେ ଅଜେୟ । ଜୀବନଲାଲ ବହୁ ସାମ୍ବାଦିକ ସମ୍ମିଳନୀରେ ଯୋଗ ଦେଇଛନ୍ତି ଶ୍ରୀ ମୁଖୋପାଧ୍ୟାୟଙ୍କ ସହିତ । ବହୁ ଭାରତୀୟ ଜନନାୟକ, ମନ୍ତ୍ରୀ, କୁଟନୀତିଜ୍ଞ ଓ ବିଦେଶର ସମ୍ମାନିତ ରାଜନୈତିକ ନେତାଙ୍କର ସମ୍ମିଳନୀରେ ଦେଖିଛନ୍ତି ଜୀବନଲାଲ ତାଙ୍କର ଆଦର୍ଶ ଶ୍ରୀ ବିବେକାନନ୍ଦ ମୁଖୋପାଧ୍ୟାୟଙ୍କୁ। ଘଟଣାଟି ଘଟିଥିଲା କଲିକତାର ଗ୍ରାଣ୍ଡ ହୋଟେଲରେ । ବିଜୁବାବୁ ସେତେବେଳେ ଓଡ଼ିଶା ରାଜନୀତିର ନିର୍ବାସିତ । ଗ୍ରାଣ୍ଡ ହୋଟେଲରେ ସାମ୍ବାଦିକ ସମ୍ମିଳନୀ ଡ଼ାକିଥାନ୍ତି । କଲିକତା ପ୍ରେସ୍ କ୍ଳବର ବହୁ ନାମି, ଦାମୀ ସାମ୍ବାଦିକଙ୍କ ସମାରୋହ ଏଇ ସମ୍ମିଳନୀରେ । ଜୀବନଲାଲ ମଧ୍ୟ ଯାଇଥାନ୍ତି ଶ୍ରୀ ମୁଖୋପାଧ୍ୟାୟଙ୍କ ସହିତ । ବିଜୁବାବୁଙ୍କର ଆସିବାର କିଛି ଡ଼େରି ଥାଏ। ବିଭିନ୍ନ ସାମ୍ବାଦିକମାନେ ଶ୍ରୀ ମୁଖୋପାଧ୍ୟାୟଙ୍କ ଚାରି ପାଖରେ ବସି ତାଙ୍କର ବିଭିନ୍ନ ସାମ୍ବାଦିକ ସମ୍ମିଳନୀରେ କିଏ କେମିତି ବିଚଳିତ, ଅପଦସ୍ତ ହୋଇଥାନ୍ତି, ସେ ଗଳ୍ପରେ ହିଁ ମସ୍‌ଗୁଲୁ ।

ଜୀବନଲାଲ ଦେଖିଲେ କିଛି ସମୟ ପରେ ସମ୍ମିଳନୀ ଗୃହକୁ ପଶି ଆସିଲେ ଧୋତି, ପଞ୍ଜାବି ପିନ୍ଧା ଜଣେ ଦୀର୍ଘକାୟ ସୁପୁରୁଷ । ହଲରେ ନିସ୍ତବ୍ଧତା- 'ବିବେକ, କେମନ ଆଛ' ବିଜୁବାବୁଙ୍କର ପ୍ରଥମ ପ୍ରଶ୍ନ । ଶ୍ରୀ ମୁଖୋପାଧାୟ ଉଠି କୃତଜ୍ଞତାର ସହିତ ମୁଣ୍ଡ ନୋଇଁ ପ୍ରଣତି ଜଣାଇଲେ।

ଜୀବନଲାଲ କେବେ କେହି ମୁଖୋପାଧ୍ୟାୟଙ୍କୁ ବିବେକ ବୋଲି ଡାକିବାର ଶୁଣିନଥିଲେ କିମ୍ବା ଶ୍ରୀ ମୁଖୋପାଧ୍ୟାୟ ଏମିତି ମୁଣ୍ଡ ନୋଇଁ କାହାକୁ ପ୍ରଣାମ କରିବାର ମଧ୍ୟ ଦେଖି ନଥିଲେ । ଜୀବନଲାଲ ସେହି ସାମ୍ୟାଦିକ ସମ୍ମିଳନୀରେ ବିଜୁବାବୁଙ୍କର ବିଚକ୍ଷଣତାର ମଧ୍ୟ ନମୂନା ପାଇଥିଲେ । ବିଜୁବାବୁଙ୍କର ଭାରତବର୍ଷ ପ୍ରତି ଅବଦାନ, ସାହାସିକତା, ଇଣ୍ଡୋନେସିଆର ସ୍ୱାଧୀନତା, ଓଡ଼ିଶାର ଶିଳ୍ପବିପ୍ଳବର କଥା ସେ ମୁଖୋପାଧ୍ୟାୟଙ୍କ ପାଖରୁ ଶୁଣିଥିଲେ । ଆଜି ତାଙ୍କର ବ୍ୟକ୍ତିତ୍ୱ ହିଁ ତାଙ୍କୁ ବିମୋହିତ କଲା ।

ମୋ ସହିତ ଓଡ଼ିଶାର ବିଭିନ୍ନ ଅଞ୍ଚଳ ସେ ବୁଲିଛନ୍ତି । ରାହାମାର ଗୋଟିଏ ଗାଁଉଲୀ ଚାହା ଦୋକାନରେ ବସି ସେ ମୋତେ ଏଇ ଗଳ୍ପ ଶୁଣାଇଥିଲେ ।

କେଦାର ସିଂ, ବିହାର ମୁଜାଫରପୁରର ଜଣେ ଟ୍ୟାକ୍‌ସିଚାଳକ । ମୁଜାଫରପୁର ଷ୍ଟେସନରେ ଓହ୍ଲାଇଲେ ଯେଉଁ ପ୍ରତିମା ଉପରେ ନଜର ପଡେ, ତାହା ଗୌତମବୁଦ୍ଧ ଓ ଆମ୍ରପାଲୀର । ବୈଶାଳୀର ନଗରବଧୂ ଏଇ ଆମ୍ରପାଲୀ । କାମ ସରିଲେ ବୈଶାଳୀ ଯାଇ ବୁଲି ଆସିବାର ଅଭିପ୍ରାୟ ଆମର ସ୍ଥାନୀୟ ସଦସ୍ୟଙ୍କୁ ଜଣାଇଲି । ତହିଁ ଆରଦିନ ବୈଶାଳୀ ଯାତ୍ରା କରିବା କଥା ଠିକ କଲୁ । ବୈଶାଳୀ ଯିବାପାଇଁ ଟ୍ୟାକ୍‌ସିଷ୍ଟାଣ୍ଡକୁ ଆସିଲୁ । ଯେଉଁ ଲୋକଟି ଆମ ପାଖକୁ ଆଗେଇ ଆସିଲା, ତାର ନାମ କେଦାର ସିଂ । ଘଣ୍ଟାକୁ ୩୦ ଟଙ୍କା ନେବ ବୋଲି ସେ କହିଲା । ଅରାଜି ହେବାରୁ ସେ ସମସ୍ତଙ୍କୁ ପାଟିକରି ଜଣାଇ ଦେଲା-'ଆଜକା ଭାଓ ଘଣ୍ଟାକେ ତିଶ୍ ରୂପୟା'। ଯେଉଁ ଟ୍ୟାକ୍‌ସିବାଲା ପାଖକୁ ଗଲେ ସେ କହିଲା, ଶୁଣିଲେନି- କେଦାର ସିଂ ଭାଇ ଠିକ୍ କହିଛି-ଏଠାରେ ତା'ର ହୁକୁମ ଚାଲେ । ଆମକୁ ନେବାପାଇଁ ମଧ୍ୟ କେହି ରାଜି ହେଲେନି । ଅଗତ୍ୟା ସେଇ କେଦାର ସିଂ ପାଖକୁ ଫେରିଆସିଲୁ ଆମର Representative ଶ୍ରୀ ଓଝାଙ୍କ ସହିତ । ଯାତ୍ରା ଆରମ୍ଭ ହେଲା ବୈଶାଳୀ ଅଭିମୁଖେ । ରାସ୍ତାର ଅବସ୍ଥା ଭଲ ନୁହେଁ କିନ୍ତୁ କେଦାର ସିଂର ଏକ୍‌ସିଲେଟର ପଞ୍ଚମରେ, ୮୦-୯୦ କିଲୋମିଟର ବେଗରେ ଗାଡ଼ି ଚାଲିଛି । କେଉଁଠି ଉଠୁଛି, କେଉଁଠି ପଡୁଛି । ଦୁହେଁ ମନେ ମନେ ପ୍ରମାଦ ଗଣିଲୁ । ଶ୍ରୀ ଓଝା କହିଉଠିଲେ, 'ସିଂଜୀ ଜେରା ସମ୍ଭାଲକେ'। ଉତ୍ତର ଆସିଲା-

ବେଫିକର ରହୋ-• ଗାଡ଼ି କେଦାର ସିଂ କେ କଣ୍ଟ୍ରୋଲ୍‌ମେ ।

ପଛ ସିଟ୍‌ରେ ବସି କଥାବାର୍ତ୍ତା ହେଉଛୁ । ବିହାର ସରକାର କେମିତି ଅର୍ଡ଼ର ଦେବାରେ ପାତର ଅନ୍ତର କରୁଛନ୍ତି । କର୍ପୁରୀ ଠାକୁରଙ୍କୁ ସାକ୍ଷାତ କଲାପରେ ସେ କେମିତି କଳିଙ୍ଗକୁ ଅର୍ଡ଼ର ଦିଆ ନଯାଉ, ତାହାକୁ ଆହୁରି ସୁଦୃଢ଼ କରିଦେଲେ, ବିଜୁବାବୁଙ୍କୁ କେମିତି ଓଡ଼ଶାର ଲୋକେ ହଇରାଣରେ ପକାଇବାରେ ଚକ୍ରାନ୍ତ କରୁଛନ୍ତି, ଇତ୍ୟାଦି ।

ହଠାତ୍ ୮୦ କିଲୋମିଟର ବେଗରେ ଚାଲୁଥିବା ଗାଡ଼ିରେ ସଡ଼ନ୍ ବ୍ରେକ୍ । ଥରେ ଦୁଇଥର ଝୁଙ୍କି ହେବା ପରେ ଗାଡ଼ି ବନ୍ଦ । କେଦାର ସିଂ ପଛକୁ ମୁହଁ ବୁଲାଇ ପ୍ରଶ୍ନ କଲା- 'କିସ୍‌ସେ ନାମ୍ ଲିୟେ ବାବୁଜୀ? ବିଜୁପଟ୍ଟନାୟକ ଜୀ କା ନାମ ଲିୟେ ?'

ମୁଁ ହତବାକ୍ ହୋଇଯାଇଥାଏ । ବିହାରରେ ସେତେବେଳେ ଅଣକଂଗ୍ରେସୀ ଶାସନ ।(ବିଜୁବାବୁ ସେତେବେଳେ କଂଗ୍ରେସରେ ଥାନ୍ତି) ମୁଁ ତାଙ୍କରି ସଂସ୍ଥାରେ କାମ କରେ । ବିଶ୍ୱାସ କରିପାରିଲିନି । ସେ ମୋ ସହିତ ହାତ ମିଳାଇବାପାଇଁ ତା ସିଟ୍‌ରୁ ଅଧା ଉଠିପଡ଼ିଲା- ମୋତେ କହିଲା-' ଆପ୍ ତବ୍‌ତୋ ମେରା ଗୁରୁଭାୟା ହେଁ । ପଟ୍ଟନାୟକ ସାବ୍ ବଡ଼ା ହିମ୍ମତ୍‌ବାଲା, ଦିଲ୍‌ବାଲା ଆଦମୀ, ମୁଲାକାତ ହୋନେସେ ସଲାମ ଦିଜିୟେ, ଔର କହିୟେ, ଚକ୍ରଧରପୁରକା କେଦାର ସିଂ ଆପକୋ ବହୁତ ୟାଦ କରତା ହେଁ । ହୁକୁମ ମିଲନେସେ ଜାନ୍ ଦେନେକେ ଲିୟେ କେଦାର ସିଂ ହାଜିର ହୋଗା ।''

ନିର୍ବାକ ହୋଇ ଶୁଣୁଥିଲି ବୈଶାଳୀର ଗାଁଉଲୀ ରାସ୍ତାରେ ଜଣେ ଟ୍ୟାକସି ଚାଳକର ବିଜୁବାବୁଙ୍କ ପ୍ରତି ଅଗାଧ ଭକ୍ତି ଓ ଶ୍ରଦ୍ଧା ନିବେଦନର କାହାଣୀ । ସେ ମୋ ପାଖରୁ ଟ୍ୟାକ୍‌ସି ଭଡ଼ା ନେଇନଥିଲା । ମୁଜାଫ୍‌ଫରପୁର ଛାଡ଼ିବା ପର୍ଯ୍ୟନ୍ତ ସେ ମୋ ପାଖେ ରହିଥିଲା । ରାତ୍ରି ଭୋଜନରେ ମଧ୍ୟ ମୋତେ ଓ ଶ୍ରୀ ଓଝାଙ୍କୁ ଆପ୍ୟାୟିତ କରିଥିଲା ।

ଏମିତି ଶହ ଶହ ଲୋକଙ୍କୁ ଭାରତର ରାସ୍ତାଘାଟରେ ଭେଟିଛି । ରାଜନୀତିର ବଡ଼ପଣ୍ଡାଙ୍କଠାରୁ ଆରମ୍ଭକରି ସାଧାରଣ ଲୋକ ପର୍ଯ୍ୟନ୍ତ । ମୁଁ ଲେଖିବି-ମୋର ଦେଖିବାର ବିଜୁ ପଟ୍ଟନାୟକଙ୍କ କଥା। ଟିକିଏ ସମୟ ମିଳିଲେ ଲେଖିବି । କିନ୍ତୁ ଆମେ ଓଡ଼ିଆମାନେ କଣ ପାଇବୁ ସେ ମଣିଷର କଥା ଜାଣି ? ଯାହାଙ୍କୁ ପ୍ରତିଦିନ ଏବଂ ପ୍ରତି ମୁହୂର୍ତ୍ତରେ ହିଁ ଆମେ ନିଃସଙ୍ଗତାର ଇଲାକାକୁ ଠେଲି ଦେଉଛୁ ।

# ବିଜୁ ପଟ୍ଟନାୟକ

**ବିଭୁଦତ୍ତ ମିଶ୍ର**

ବିଜୁ ପଟ୍ଟନାୟକ । ଏ ଶବ୍ଦ ଦି'ଟାରେ କି ଏକ ଚମକ୍ ଅଛି, ଝଲକ ଅଛି । ଶୁଣିଲା ମାତ୍ରେ ଆଖି ଆଗରେ ଭାସିଉଠେ, ଏକ ତେଜୀୟାନ ଅଭିଜାତ ବ୍ୟକ୍ତିତ୍ୱ । ଶାଳପ୍ରାଂଶୁ ଋଜୁ ଦେହ, ମୁହଁରେ ବେଖାତିର୍ ବେପରୱା ହସ । କଥାବାର୍ତ୍ତା, ଚାଲିଲେ ଯୁବକର ଦାମ୍ଭିକତା ଓ ଅଟଳ ଆତ୍ମବିଶ୍ୱାସ । ହାତରେ ଜଳନ୍ତା ସିଗାରେଟ୍ । ଦୁନିଆଁକୁ ମୁହୂର୍ତ୍ତକରେ ଜିଣିବାର ଠାଣି । ସ୍ୱାଭିମାନ ଓ ଆତ୍ମସମ୍ମାନର ଏକ ଉଜ୍ଜ୍ୱଳ ଅଗ୍ନିଶିଖା । ଧୋତି ଆଉ ପଞ୍ଜାବୀର ସାଧାରଣ ପରିଧାନ ଭିତରେ ଏକ ଅସାଧାରଣ ମଣିଷ, ବୟସ ସେଠି ପରାସ୍ତ, ପରାଜିତ । ଜୀବନର ଶତ ବିପର୍ଯ୍ୟୟର ମ୍ଳାନିମା ଭିତରେ ଯୌବନର ଦର୍ପ, ଦମ୍ଭ, ସାହାସ, ଶକ୍ତି ଏବେ ବି ଦପ୍ ଦପ୍ ହୋଇ ଜଳୁଛି ।

ସେହି ବିଜୁ ପଟ୍ଟନାୟକ, ରେଭେନ୍‌ସା କଲେଜର ନାମକରା ସ୍ପୋର୍ଟସ୍ ଚାମ୍ପିଅନ୍ । ସେଇ ଖେଳଓ୍ୱାଡ୍ ମନୋବୃତ୍ତି ନେଇ ଜୀବନସାରା ଖେଳିଛନ୍ତି । କ୍ଳାନ୍ତି ନାହିଁ, ଅବସାଦ ନାହିଁ, ଗ୍ଳାନି ନାହିଁ କି ଅନୁଶୋଚନା ନାହିଁ....ଆଗେଇ ଯିବାର, ମାଡ଼ିଯିବାର ଲୋକ । ଏକ ଅଗ୍ରଗାମୀ ଉଜ୍ଜ୍ୱଳ ବ୍ୟକ୍ତିତ୍ୱ । ସେ ତାରୁଣ୍ୟର ପ୍ରତୀକ, ଅଦମ୍ୟ ପ୍ରାଣପ୍ରାଚୁର୍ଯ୍ୟ ଓ କର୍ମପ୍ରେରଣାର ଅଫୁରନ୍ତ ଉତ୍ସାହ ଡ଼ଚ୍ ସେନାବାହିନୀର ଶ୍ୟେନଦୃଷ୍ଟିକୁ ଏଡ଼ାଇ ସେ ଦିନେ ଇଣ୍ଡୋନେସିଆ ମୁକ୍ତି ଆନ୍ଦୋଳନର ନେତୃତ୍ୱବୃନ୍ଦଙ୍କୁ ଦିଲ୍ଲୀ ଉଡ଼େଇ ଆଣିଥିଲେ । ନାଁ ରହିଯାଇଛି, ପ୍ରସିଦ୍ଧ ପାଇଲଟ୍ । ବିଖ୍ୟାତ ଶିଳ୍ପପତି, ଚୌଦ୍ୱାର ଲୁଗାକଳ, କଳିଙ୍ଗ ଟ୍ୟୁବସ୍, କଳିଙ୍ଗ ଏୟାର ଏଇନସ୍‌ର ପ୍ରତିଷ୍ଠାତା, ଦୁଃସାହସୀ ରାଜନୀତିଜ୍ଞ । ସେ ଡ଼କ୍ଟର ହରେକୃଷ୍ଣ ମହତାବଙ୍କ ସହିତ ବାଜି ଲଗେଇ ଓଡ଼ିଶାରେ କଂଗ୍ରେସକୁ ପ୍ରଥମଥର ପାଇଁ ବିପୁଳ ସଂଖ୍ୟାଗରିଷ୍ଠତା ଦେଇପାରିଥିଲେ । ସାହିତ୍ୟ, ସାମ୍ବାଦିକତା ଓ ବିଜ୍ଞାନର ସେ ପୃଷ୍ଠପୋଷକ । 'ଦୈନିକ କଳିଙ୍ଗ','କଳିଙ୍ଗ ପୁରସ୍କାର' ପ୍ରଭୃତିର ସେ ପ୍ରତିଷ୍ଠାତା । ଓଡ଼ିଶାରେ ନିର୍ମାଣ ଯୁଗର ଅଗ୍ରଦୂତ । ପାରାଦ୍ୱୀପ ବନ୍ଦର, ସୁନାବେଡ଼ା ମିଗ୍ କାରଖାନା, ଆଞ୍ଚଳିକ ଇଂଜିନିୟରିଂ କଲେଜ

ସବୁ ତାଙ୍କରି କୃତି ଓ କୀର୍ତ୍ତି ।

କଳିଙ୍ଗବୀର ବିଜୁ ପଟ୍ଟନାୟକ, ରାଜନୀତିର ଶତ ଘନଘଟା ପତନଉତ୍‌ଥାନ ବି ଯାହାଙ୍କୁ ମଳିନ କରିପାରିନାହିଁ କ୍ଷମତାରେ ନଥାଇ ବି ସେ କ୍ଷମତାଶାଳୀ। ଓଡ଼ିଶାର ରାଜନୈତିକ ଆକାଶର ଏକମାତ୍ର ଧ୍ରୁବତାରା । ଅଗଣିତ ଜନତାର ଶେଷ ଆଶା ଓ ଭରସା ।

୧୯୬୮ ମସିହା, ବୁର୍ଲା ଇଂଜିନିୟରିଂ କଲେଜର ବାର୍ଷିକ ସମାରୋହ। ସେ ମୁଖ୍ୟ ଅତିଥି, ମୁଁ ମୁଖ୍ୟବକ୍ତା । ତାଙ୍କର ଆଗ କହିବା କଥା। କହିଲେ - "No, No, The professor should speak first."ମୋର ବକ୍ତବ୍ୟ "ଆଧୁନିକ ଓଡ଼ିଆ କବିତା" ମୋ ଭାଷଣ ସାରିଲି । ଯେଉଁଠାରୁ ଛାଡ଼ିଥିଲି, ଠିକ୍ ସେଇଠୁଁ ଖିଅଧରି ସେ ଆରମ୍ଭ କଲେ ତାଙ୍କର ଭାଷଣ । ଆଧୁନିକ କବିତାରେ 'ଚନ୍ଦ୍ର' କିପରି ତା'ର ପାରମ୍ପାରିକ ମର୍ଯ୍ୟାଦା ଓ ସୌନ୍ଦର୍ଯ୍ୟ ହରାଇ ବସିଛି, ସେଉଠୁଁ । ଭାବିଥିଲି ଶିଳ୍ପପତି ଲୋକ, ରାଜନୀତିରେ ତ ବୁଡ଼ିକରି ଅଛନ୍ତି । ସାହିତ୍ୟ ! ପୁଣି କବିତା!! ଆଶ୍ଚର୍ଯ୍ୟ ହେଲି । କବିତାରୁ ହିଁ ତାଙ୍କ ଭାଷଣ ଆରମ୍ଭ ହେଲା । ଚମତ୍କାର ବିଶ୍ଳେଷଣ, ସାହିତ୍ୟରୁ ସମାଜ, ସମାଜରୁ ବିଜ୍ଞାନ, ଶିଳ୍ପ ବିକାଶ-ଭବିଷ୍ୟତ ଓଡ଼ିଶାର ଏକ ସମୃଦ୍ଧ ଚିତ୍ର । ଯୁବ ସମାଜକୁ ଆହ୍ୱାନ । ରାଜନୀତିର ପାଖ ମାଡ଼ିନାହାନ୍ତି ।

ତିନି ବର୍ଷ ପରେ । ୧୯୭୧, ମଧ୍ୟବର୍ତ୍ତୀ ନିର୍ବାଚନ । ଆମ ନିର୍ବାଚନମଣ୍ଡଳୀରୁ (ଭୁବନେଶ୍ୱର) ଠିଆହୋଇଥାନ୍ତି ବିଜୁବାବୁ । ଗାଁରେ ଥାଏ । ଖବର ପାଇଲି, ବିଜୁବାବୁ ଆସୁଛନ୍ତି। ବାପୁଜୀ ପାଠାଗାରକୁ ଆଗତୁରା ଖବର ଆସିଥାଏ। ମୁଁ ପାଠାଗାରର ସଭାପତି। ଗାଁ ମୁଣ୍ଡକୁ ଗଲି । ଉଦୁଉଦିଆ ଦ୍ୱି'ପହର, ପ୍ରଚଣ୍ଡ ଖରା । ସଦଳବଳେ ବିଜୁବାବୁ ପହଞ୍ଚିଲେ । ୫/୬ଟା କାର, ୮/୧୦ଟା ମଟର ସାଇକେଲ୍, ଜିପ୍, ଷ୍ଟେସନ୍ ୱ୍ୟାଗନ୍‌ରେ ବିଜୁବାବୁ, ସତ୍ୟପ୍ରିୟ ମହାନ୍ତି, ବିଭୁଧେନ୍ଦୁ ମିଶ୍ର ପ୍ରଭୃତି ଅନେକ ଲୋକ । ଗାଁଟାଯାକ ଲୋକଙ୍କ ଭିତରେ ହାତେ ଉପରେ ବାରି ହୋଇ ଦିଶୁଥାନ୍ତି ବିଜୁବାବୁ । ପାଠାଗାର ସାମନା ମଞ୍ଚ ଉପରକୁ ପାଛୋଟି ନେଲି, ସରବତ୍ ପିଇଲେ । ଡାକିଲେ- "Professor, Come here. You speak ".ସେଇ ପୁରୁଣା ଢ଼ଙ୍ଗ, ଆଦେଶ ଦେବାର ଠାଣି।

ନମ୍ରଭାବରେ କହିଲି-‘‘ନାଇଁ ସାର୍‌, ଏଇଟା ପରା ନିର୍ବାଚନ ସଭା । ଏଠି ମୁଁ କିମିତି କହିବି, ଆପଣ କହନ୍ତୁ ।’’ ହସିଲେ । ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ଡ଼କ୍ଟର ମହତାବ୍‌ କହିଲେ- Alright, you are in double mind''.

ଆରମ୍ଭ କଲେ ତାଙ୍କର ସଂକ୍ଷିପ୍ତ ଭାଷଣ । ତାଙ୍କ ଦଳର ଚିହ୍ନ ଚକଲଙ୍ଗଳ। ଚମତ୍କାର Symbol. ଯେ ଯେମିତି ବୁଝିଲା, ଯେପରି ବୁଝିଲା, ସବୁଆଡ଼କୁ ପାଇବ । ସବୁରି ମନକୁ ଛୁଇଁବ । ଆଧୁନିକ ଦୃଷ୍ଟିରୁ ଦେଖିଲେ ଚାଷୀ ଆଉ ମଜଦୁର ଚିହ୍ନ । କାରଖାନାରେ ଚକ, ବିଲରେ ଲଙ୍ଗଳ । ଧର୍ମଭୀରୁ ଓଡ଼ିଆ ଲୋକଙ୍କ ପାଇଁ ଓଡ଼ିଶାର ଇଷ୍ଟଦେବତା ଜଗନ୍ନାଥ ବଳଭଦ୍ରଙ୍କ ଚିହ୍ନ। ଜଗନ୍ନାଥଙ୍କର ଚକ, ହଳଧର (ବଳଭଦ୍ର)ଙ୍କ ଲଙ୍ଗଳ ଓଡ଼ିଆ ଭାବପ୍ରବଣତାକୁ ସ୍ପର୍ଶ କଲାଭଳି କଥା ।

କଳିଙ୍ଗର ଗୌରବଦୀପ୍ତ ଅତୀତ ଇତିହାସର ସୂଚନା ଦେଲେ । ଆହ୍ୱାନଦେଲେ ଏକ ନୂତନ ଓଡ଼ିଶା; ଶିଳ୍ପ, ଶିକ୍ଷା, କୃଷି ବିଜ୍ଞାନ ସବୁ କ୍ଷେତ୍ରରେ ସମୃଦ୍ଧ ଏକ ଓଡ଼ିଶା ଗଢ଼ିତୋଳିବା ପାଇଁ ଚାହିଁଲେ ଜନତାର ସମର୍ଥନ । ସେଇ ହିଁ ଶକ୍ତି, ସେଇ ହିଁ ସମ୍ବଳ । ବିପୁଳ କରତାଳି ଧ୍ୱନି ଭିତରେ ସଭା ସରିଲା । ଗଲାବେଳେ ମୋତେ କଣେଇ ଚାହିଁ ପୁଣିଥରେ କହିଲେ-‘‘You don't be in double mind'.

ନିର୍ବାଚନର ଛକାପଂଝା ଖେଳରେ ସେ କେବେ ଜିତିଛନ୍ତି ତ କେବେ ହାରିଛନ୍ତି। ବୋଧେ ବେଶୀ ହାରିଛନ୍ତି । ସେଥିରେ ଲାଭ କେତେ, କ୍ଷତି କେତେ ତା'ର ହିସାବ ମୁଁ ଏଠି କରିବାକୁ ଯାଉନି । କିନ୍ତୁ ଏକଥା ସତ ଯେ, ଆଜକୁ ଦୀର୍ଘ ୩୦ ବର୍ଷ ହେଲା ସେ ରହିଆସିଛନ୍ତି ଯୁବଶକ୍ତିର ପ୍ରଚଣ୍ଡ ପ୍ରତୀକ ରୂପେ । ତାଙ୍କର ଦୁଃସାହସିକତା, ନିର୍ଭିକତା, ଦୂର ଦୃଷ୍ଟି ସଂପର୍କରେ ଗଢ଼ିଉଠିଛି ଅଜସ୍ର କାହାଣୀ ଓ କିମ୍ବଦନ୍ତୀ । ସେ ଯୁବଜନତାର ଆଦର୍ଶ। ବେପରଓ୍ୱାୟ ଭାବରେ, ଖେଳଓ୍ୱାର୍ଡ଼ ମନବୃତ୍ତି ନେଇ ସେ ଜୀବନକୁ ସାମନା କରିଛନ୍ତି। ଜୟ ପରାଜୟର ଚିନ୍ତାରେ ଘାରି ହୋଇନାହାନ୍ତି । ପଛକୁ ଫେରି ଚାହିଁନାହାନ୍ତି। ଆଗକୁ ଆଗକୁ ମାଡ଼ିଚାଲିଛନ୍ତି । ଏକ ଅଗ୍ରଗାମୀ ବ୍ୟକ୍ତିତ୍ୱ ।

ବୋଧେ ୧୯୭୦ ମସିହା । ବ୍ରହ୍ମପୁର ଖଲିକୋଟ କଲେଜରେ ସାଂପ୍ରତିକ ରାଜନୈତିକ ପରିସ୍ଥିତି ସମ୍ବନ୍ଧରେ ଏକ ଆଲୋଚନା ଚକ୍ର ହେଉଥାଏ । ଅଧ୍ୟକ୍ଷ

ଥାଆନ୍ତି ଡ଼କ୍ଟର ମହେନ୍ଦ୍ର କୁମାର ରାଉତ । ବିଭିନ୍ନ ରାଜନୈତିକ ଦଳର ବିଶିଷ୍ଟ ନେତୃବୃନ୍ଦ ନିଜ ନିଜ ଦଳର ଉଦ୍ଦେଶ୍ୟ, ଆଦର୍ଶ ଓ ଆଭିମୁଖ୍ୟ ସଂପର୍କରେ ଭାଷଣ ଦେବାର କାର୍ଯ୍ୟକ୍ରମ ଥାଏ । ବିଜୁବାବୁ ଠିଆହେଲେ। ସଭାସ୍ଥଳ, ସମଗ୍ର କଲେଜ ହତା ଭରପୁର । ଜନସାଧାରଣ ଉଦ୍‌ଗ୍ରୀବ ।ଭାଷଣ ଚାଲିଥାଏ । ହଠାତ୍ ପ୍ରଚଣ୍ଡ ଶବ୍ଦକରି ସଭା ମଝିରେ ଏକ ବିସ୍ଫୋରଣ ହେଲା । ଛାନିଆଁରେ ସମସ୍ତେ ଏଣେତେଣେ ଧାଇଁବାକୁ ଲାଗିଲେ । ସବୁଠି ବିପର୍ଯ୍ୟୟ ବିଶୃଙ୍ଖଳା । ଧୂଆଁ ଭିତରେ ଧାଁଧାପଡ଼ । କାହା ଚପଲ ହଜିଲାଣି ତ, କାହାଲୁଗା ଚିରିଛି । କିଏ ତଳେ ପଡ଼ି ଆଣ୍ଠୁଗଣ୍ଠି ଖଣ୍ଡିଆ, ତୁମୁଳ କାଣ୍ଡ । ମଞ୍ଚ ଉପରେ ମାଇକ୍ ପାଖରେ ବିଜୁବାବୁ ସେହିଭଳି ବେଖାତିରି ଭାବରେ ଠିଆହୋଇଥାନ୍ତି । ମୁହଁରେ ବେପରୱା ହସ ଟିକେ । ସଭା ଭାଙ୍ଗିଗଲା; ଭୟରେ ଆତଙ୍କରେ । ଯେ ଯୁଆଡ଼େ ପଳାଇଲେ । ପ୍ରିନ୍‌ସିପାଲ୍ ଡ଼କ୍ଟର ରାଉତ ବିଜୁବାବୁଙ୍କୁ ବଳେଇ ଦେବାକୁ କଲେଜ ଗେଟ୍‌ଯାଏ ଆସିଲେ, ଗାଡ଼ିପାଖକୁ । ସେ କହିଲେ, "ଆପଣ କାହିଁକି ଆସୁଛନ୍ତି, I can very well go". ଗଲାବେଳେ ଗାଡ଼ିରେ ବସି ସାରି କହିଲେ-"Don't mind, this is nothing." ଆମେ ସବୁ ପାଖରେ ଠିଆହୋଇଥାଉ ।

ଯୁଦ୍ଧକ୍ଷେତ୍ରରେ ସେ ସଦାବେଳେ ଲଢୁଆ ସୈନିକ । ଓଡ଼ିଆ ବୋଲି ମନରେ ତାଙ୍କର ଭାରି ଅଭିମାନ । ଏ ଜାତିକୁ ଚେତାଇ ଦେବାକୁ ପଡ଼ିବ, ଉଠେଇବାକୁ ପଡ଼ିବ, ବାହାର ଦୁନିଆରେ ବଡ଼ କରିବାକୁ ହେବ । ଶିଳ୍ପ, ସାହିତ୍ୟ, ବିଜ୍ଞାନ ରାଜନୀତି, ସବୁଥିରେ ଓଡ଼ିଆ ପିଲାଏ ନାଁ କରିବେ । ସେଥିଲାଗି 'କଳିଙ୍ଗ ପୁରସ୍କାର', 'ଦୈନିକ କଳିଙ୍ଗ', 'କଳିଙ୍ଗ ଏୟାରଲାଇନ୍‌ସ', 'କଳିଙ୍ଗ ଟ୍ୟୁବସ୍' । ସବୁ କଳିଙ୍ଗ ।

ଆଖିରେ ସେଇ ନିଶା । ଖାରବେଳ, କପିଳେନ୍ଦ୍ରର ଏ ଦେଶ ପଛୁଆ ହୋଇ ଗରିବ ହୋଇ ପଡ଼ିରହିବନି । ଏହାର ପିଲାଏ କଲିକତା, କାଳିମାଟିରେ କୁଲି ହେବା ସେ ଦେଖି ପାରିବେନି । ଅନ୍ୟମାନଙ୍କର ତାଚ୍ଛଲ୍ୟ, ଅପମାନ ସହି ହେବନି । ସେଇ ସଂକଳ୍ପ, ସେଇ ସ୍ୱପ୍ନ ନେଇ, ସେ ଦିନର କୋଟିପତି, ଶିଳ୍ପପତି ବିଜୁ ପଟ୍ଟନାୟକ, ଆଗପଛ ବିଚାର ନକରି, ଦିନେ ରାଜନୀତିର ନିଆଁକୁ ଡ଼େଇଁଥିଲେ ।

ଇତିହାସ କହିବ ସେ ଠିକ୍ କଲେ କି ଭୁଲ୍ କଲେ । ଭିବଷ୍ୟତ

ବିଚାର କରିବ ଏ ଜାତିପାଇଁ ଏ ଦେଶ ପାଇଁ ତାଙ୍କର୍‌ ଦାନ କେତେ? ଆଜିର ରାଜନୈତିକ ଝଡ଼ଝଞ୍ଜା, କାଦୁଅ ଫୋପଡ଼ା, ନିନ୍ଦା ପ୍ରଶଂସା, ଶଠତା ପ୍ରତାରଣାର ଅବସାନ ହେବାପରେ, ଧୀର ବୁଦ୍ଧି ସ୍ଥିର ଚିତ୍ତରେ ଚିନ୍ତା କଲାବେଳେ ଦିଶିବ- ଓଡ଼ିଆ ଭଳି ଓଡ଼ିଆ ଜଣେ ଏ ଦେଶରେ ଥିଲା । ଏ ଜାତିକୁ ଭଲ ପାଇଥିଲା, ଏହାକୁ ଉଠାଇବା ପାଇଁ ସ୍ୱପ୍ନ ଦେଖିଥିଲା, ସଂଗ୍ରାମ କରିଥିଲା। କ୍ଷମତାରେ ନଥାଇ ବି କ୍ଷମତାଶାଳୀ ଥିଲା; ଥିଲା ଜନଗଣମନର ଅଧିନାୟକ। ତା'ନାରେ କିମିଆଁ ଥିଲା, ଯାଦୁକରି ଶକ୍ତି ଥିଲା । ସେ ବିଜୁ ପଟ୍ଟନାୟକ, 'The magic man of Orissa'.

# ବିଜୁବାବୁଙ୍କୁ ପ୍ରଣାମ

## ବିନୋଦ କାନୁନଗୋ

ଯେଉଁମାନେ ବଡ଼ ଲୋକଙ୍କ ବିଷୟରେ କିଛି ଲେଖନ୍ତି ସେମାନଙ୍କୁ ଦୁଇ ଶ୍ରେଣୀରେ ବିଭକ୍ତ କରି ଦିଆଯାଇ ପାରେ । ବଡ଼ଲୋକଙ୍କ ଘନିଷ୍ଠ ସଂପର୍କରେ ଆସିବାର ସୁଯୋଗ ନଥାଏ, ବାହାରୁ ଭଲଭାବରେ ଲକ୍ଷ୍ୟ କରନ୍ତି, ଅନେକ କଥା ସଂଗ୍ରହ କରନ୍ତି । ସେସବୁର ବିଶ୍ଳେଷଣ ବିଜ୍ଞାନ ସମ୍ମତି ପ୍ରଣାଳୀରେ କରନ୍ତି-ତାହାପରେ ଲେଖିଦିଅନ୍ତି । ସେହି ଲେଖା ହୁଏତ ସୁନ୍ଦର ହୋଇଥାଏ । ଗୋଟିଏ ବିପଦ ହେଉଛି ସେମାନେ ଧରିନିଅନ୍ତି କେବଳ ପ୍ରଶଂସା କରିବାକୁ ହେବ-ସାମାନ୍ୟ ଟିକିଏ ସମାଲୋଚନା କରିପାରେ- କିନ୍ତୁ ତାହାର ମାତ୍ରା ଯେମିତି ବେଶୀ ନ ହୋଇଯିବ ଓ ଯାହାଙ୍କ ବିଷୟରେ ଲେଖାଯାଉଛି ସେ ଯେପରି ମନକଷ୍ଟ କରିବେ ନାହିଁ । ଏହିମାନେ ଗୋଟିଏ ଶ୍ରେଣୀର ଲେଖକ ।

ଆଉ ଗୋଟିଏ ଶ୍ରେଣୀର ହେଲେ- ସଂପୃକ୍ତ ଲେଖକଙ୍କୁ ବହୁଦିନ ହେଲା ଜାଣନ୍ତି, ତାଙ୍କ ଘନିଷ୍ଠ ସଂପର୍କରେ ଆସିଛନ୍ତି, ସାଧାରଣ କ୍ଷେତ୍ରରେ ତାଙ୍କ ସହିତ କାନ୍ଧକୁ କାନ୍ଧ ମିଳାଇ କାମ କରିଛନ୍ତି, ସୁଖ ଦୁଃଖରେ ଭାଗୀ ହୋଇଛନ୍ତି, ମତଭେଦ ହୋଇଥିବାରୁ କଳି କରିଛନ୍ତି, ପୁଣି ଏକାଠି ହୋଇଯାଇଛନ୍ତି, ନିଜର ଦୋଷ ଦୁର୍ବଳତା ସ୍ୱୀକାର କରିଛନ୍ତି, କାହିଁକି ଏଭଳି କଲେ ବୋଲି କୈଫିୟତ୍ ଦେଇଛନ୍ତି, ଅତି ଘନିଷ୍ଠ ବୋଲି ଅନ୍ୟମାନେ ଲକ୍ଷ୍ୟ କରିଛନ୍ତି । ଏହିଭଳି ପରିଚୟ ଥିବାରୁ ବହୁ କଥା ସେମାନଙ୍କ ଲେଖାରେ ପ୍ରକାଶ ପାଏ - ଯାହା ନ ପାଇଥିଲେ ଭଲ ହୋଇଥାନ୍ତା ବୋଲି ଅନ୍ୟମାନେ କୁହନ୍ତି । କିନ୍ତୁ ଯାହାଙ୍କ ବିଷୟରେ ଲେଖାଯାଇଛି ସେ କିଛି ଭାବନ୍ତି ନାହିଁ ।

ବିଜୁବାବୁଙ୍କ ବିଷୟରେ ଲେଖିବାବେଳେ ଟିକିଏ ସ୍ପଷ୍ଟ କରିଦେବାକୁ ଇଚ୍ଛା କରୁଛି ଯେ ମୁଁ ହେଉଛି ଏହି ଦ୍ୱିତୀୟ ଶ୍ରେଣୀର । ଗୋଟାଏ ସମୟରେ ମୁଁ ତାଙ୍କ ବିରୁଦ୍ଧରେ କଲମ ଚଳାଇଥିଲି । ସେ ମୋ ନାଁରେ ମାନହାନୀ ମକଦ୍ଦମା କଲେ । କିଛିକାଳ ମକଦ୍ଦମା ଚାଲିଲା ପରେ ବିଜୁବାବୁ ବିଚାରିଲେ-'ବିନୋଦ ନାଁରେ ଆଉ ମକଦ୍ଦମା ଚଳାଇବିନାହିଁ' । ସେହି ମକଦ୍ଦମା ଚାଲିଥିଲାବେଳେ ମୁଁ ଆହୁରି କେତେକ ଲେଖା ପ୍ରକାଶ କରିଦେବାରୁ ମୋ ନାଁରେ ତାଙ୍କ ପକ୍ଷରୁ

ଚାରି ପାଞ୍ଚଟା ଅଦାଲତ ଅବମାନନା ମକଦ୍ଦମା ହାଇକୋର୍ଟରେ ହେଲା । ସେ ସବୁର ବିବରଣୀ ବହୁ ଆଇନ୍ ପୁସ୍ତକରେ ଅଛି । ଆମ ଦି'ଜଣଙ୍କ ନାଁ ସେଥିସହିତ ଯୋଡ଼ିହୋଇ ରହିଛି । କିନ୍ତୁ ମୁଁ ଓ ଅନ୍ୟମାନେ ବିସ୍ମିତ ହୋଇ ଲକ୍ଷ୍ୟ କରିଛୁ ଯେ ଏହି ମକଦ୍ଦମା ଦୀର୍ଘ କେତେବର୍ଷ ଚାଲିଥିଲା ବେଳେ ବିଜୁବାବୁଙ୍କ ମୋ ସହିତ ସେତେବେଳେ ଭେଟ ହୋଇଯାଏ, ସେ କୁଣ୍ଢାଇ ପକାନ୍ତି । କି ଶ୍ରଦ୍ଧା ! କି ଆଦର ! ଆମ ଦି'ଜଣଙ୍କର ପିଲାଦିନର କଥା ମନେ ପଡ଼ିଯାଏ। ୧୯୨୯ରେ କେମିତି କଲେଜିଏଟ୍ ସ୍କୁଲରେ ଏକାଠି ପଢୁଥିଲୁ- ତା' ଚମତ୍କାର ଫୁଟ୍‌ବଲ ଖେଳ ଦେଖି ମୁଁ କେମିତି ଆନନ୍ଦରେ ନାଚିଯାଉଥିଲି, ଖେଳରେ ମୋର ଭୁଲ୍ ହେଲେ ସେ କେମିତି ମୋତେ ଥରେ ଥରେ ଚଟକଣା ମାରିଦିଏ, ସେଇକଥା ପକାଇ ହସୁ ।

ଯେଉଁଦିନ ୧୯୩୦ ଏପ୍ରିଲ୍ ୧୦ରେ ମୁଁ ସ୍କୁଲ୍ ଛାଡ଼ି ସ୍ୱାଧୀନତା ସଂଗ୍ରାମରେ ଯୋଗଦେଲି, ସେ ଦିନ ବିଜୁ କେମିତି ବିଚଳିତ ହୋଇ ବସିଥିଲା, ସେକଥା ମନେପଡ଼ିଯାଏ । ୧୯୩୨ ରେ କଟକ ସ୍ୱରାଜ୍ୟ ଆଶ୍ରମରେ ମୋର ଏସ୍.ପି. ,ଲେନ୍ ସାହେବ ଯେଉଁଦିନ ଲାଠିରେ ପିଟି ବହୁ ସଂଖ୍ୟକ ସତ୍ୟାଗ୍ରହୀଙ୍କୁ ଲହୁଲୁହାଣ କରିଦେଲା, ସେଦିନ ଛାତ୍ର ବିଜୁ ଉତ୍ୟକ୍ତ ହୋଇ ଲେନ୍ ସାହେବ ଆଡ଼କୁ ମାଡ଼ିଯାଉଥିଲା ଓ ଲାଠି ପ୍ରହାର ଖାଇ ନଳାରେ ପଡ଼ିଗଲା ଇତ୍ୟାଦି ମନେ ପକାଇ । ଆମେ ଦିଜଣ ଯେ କଚେରୀରେ ମକଦ୍ଦମାର ଦୁଇ ବିରୋଧୀ ଲୋକ ସେ କଥା ମୁଁ ଯେତେ ଭୁଲି ଯାଇନଥାଏ, ତା'ଠାରୁ ସେ ଅଧିକ ଭୁଲିଯାଇଥାଏ । ବିଜୁବାବୁଙ୍କର ଓ ମୋର ପ୍ରଥମ ଭଲ ପରିଚୟ ୧୯୨୮ରେ । ସେ ମୋଠାରୁ ତିନି ବର୍ଷ ସାନ ସତ; କିନ୍ତୁ ପଢ଼ିଲେ ଆସି ମୋର ଠିକ୍ ଗୋଟିଏ କ୍ଲାସ ତଳେ । ସେତେବେଳକୁ ତାଙ୍କ ବଡ଼ ଭାଇ ଜର୍ଜ ପଟ୍ଟନାୟକ ମୋ'ଠାରୁ ଦୁଇବର୍ଷ ଉପର ଶ୍ରେଣୀର ଛାତ୍ର । ଆମେ ଦି'ଜଣ ସେ ସମୟର ଗୋଟିଏ ରୀତିକୁ ଭାଙ୍ଗିଦେଲୁ। ଆମ ସ୍କୁଲ ପଢ଼ାବେଳେ ଯିଏ ଉପର କ୍ଲାସରେ ପଢୁଥାନ୍ତି, ତାଙ୍କୁ ତୁମେ ବୋଲି କହୁ- ନହେଲେ 'ବାବୁ' ବୋଲି ସମ୍ବୋଧନ କରୁ । କେବେହେଲେ ତୁ ବୋଲି କୁହାଯାଏ ନାହିଁ। କିନ୍ତୁ ବିଜୁ ମୋତେ 'ତୁ' ବୋଲି କୁହେ। ସେହି ଅଭ୍ୟାସ ଆମ ଦି'ଜଣଙ୍କର ଗଲା ପ୍ରାୟ ଷାଠିଏ ବର୍ଷ ହେଲା ରହି ଆସିଛି। ବିଜୁ ଯେତେ ବଡ଼ ହେଲେ ମଧ୍ୟ ମୋର ସେହିଁ 'ତୁ'

ଡ଼ାକ ରହିଛି-ମୁଁ ତା'ଠାରୁ ତିନିବର୍ଷ ବଡ଼ ହେଲେ ମଧ୍ୟ 'କିରେ ବିନୋଦ, ତୁ କେମିତି ଅଛୁ'ବୋଲି ସମସ୍ତଙ୍କ ଆଗରେ ସେ ମୋତେ କୁହେ । ଅନ୍ୟମାନେ ଟିକିଏ ବିସ୍ମିତ ହୁଅନ୍ତି ।୧୯୮୭ରେ ବିଜୁବାବୁ ଓ ମୋତେ 'ତୁ' ବୋଲି କହିବା ଲୋକଙ୍କ ସଂଖ୍ୟା ଏତେ ଅଳ୍ପ ଯେ, ଆମ ଦି'ଜଣଙ୍କ ଭିତରେ କଥାବାର୍ତ୍ତା ହେଲାବେଳେ ବହୁ ଲୋକ ବିସ୍ମିତ ହୋଇଯାଆନ୍ତି । ଏହିଭଳି ସଂପର୍କ ଥିବାରୁ ତାଙ୍କ ବିଷୟରେ ଟିକିଏ ଲେଖିଦେଉଛି । ସେ ପସନ୍ଦ କରିବେ କି ନାହିଁ ଜାଣେ ନାହିଁ ।

ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ ଜାଣିଶୁଣି ମରଣ ମୁହଁ ଭିତରକୁ ପଶିଯିବା ଓ ମରଣ ସହିତ ସଂଗ୍ରାମ କରି ପଦାକୁ ବାହାରି ଆସିବା ଲୋକଙ୍କୁ ଚିରଦିନ ପାଇଁ ସମସ୍ତେ ମନେ ରଖିବେ-ଏ ବିଷୟରେ କାହାରି ମନରେ ସନ୍ଦେହ ନାହିଁ । ବିଜୁବାବୁ ହେଉଛି ଓଡ଼ିଶାର ଏକମାତ୍ରଲୋକ ଯାହାଙ୍କ ବିଷୟରେ ଏହି କଥା କୁହାଯାଇପାରେ । ଦ୍ୱିତୀୟରେ ବିଶ୍ୱଯୁଦ୍ଧବେଳେ ସେ ଥିଲେ ସରକାରଙ୍କର ଜଣେ ଦକ୍ଷ ଉଡ଼ାଜାହାଜ ଚାଳକ । ଭାରତବାସୀଙ୍କ ସର୍ବୋଚ୍ଚ କର୍ତ୍ତା ଓ ସେନାପତିଙ୍କ ଭଳି ଲୋକଙ୍କ ଜାହାଜକୁ ସେ ଚଳାଉଥିଲେ । ଟିକିଏ ସୁଦ୍ଧା ଗୋପନୀୟତା କଲେ କଠିନ ଶାସ୍ତି-ମୃତ୍ୟୁଦଣ୍ଡ ମଧ୍ୟ ମିଳିପାରେ । ସିନ୍ଧୁ ପ୍ରଦେଶର ଅଳ୍ପବୟସର ଜଣେ କଲେଜଛାତ୍ର ତ ପୁଣି ରେଳଲାଇନ୍ ଉଠାଇଦେବା ଭଳି ସାମାନ୍ୟ ଅପରାଧରେ ଫାସି ପାଇଥିଲା ! ଏହା ଜାଣିବା ସତ୍ତ୍ୱେ ବିଜୁବାବୁ ବିପଜ୍ଜନକ ବିପ୍ଳବୀ ଜୟପ୍ରକାଶଙ୍କୁ ସରକାରଙ୍କ ସେହି ଜାହାଜରେ ବସାଇ ଏଠୁଁ ସେଠିକି ନେଇଯିବାପାଇଁ ତ ପୁଣି ଆଗେଇ ଆସିଲେ । କଂଗ୍ରେସର ଗୋପନୀୟ କାଗଜପତ୍ର ପୁଣି ତାଙ୍କରି ହାତରେ ଏଠିକି ସେଠିକି ପଠାଯାଉଥାଏ । ଶେଷରେ ସେ ଧରାପଡ଼ିଲେ । ତାଙ୍କଠାରୁ ଗୋପନ ତଥ୍ୟ ପାଇବା ପାଇଁ ଉଦ୍ୟମ କରି ବିଫଳ ହେଲାରୁ ଭାରତସରକାରଙ୍କ ଘରୋଇ ବିଭାଗର ଦାୟିତ୍ୱରେ ଥିବା ଚନ୍ଦୁଲାଲ ତ୍ରିବେଦିଙ୍କ ନିର୍ଦ୍ଦେଶରେ ତାଙ୍କୁ ଯେଭଳି ଶାରୀରିକ ଯନ୍ତ୍ରଣା ଦିଆଗଲା, ଭାରତର କୌଣସି ସ୍ୱାଧୀନତା ସଂଗ୍ରାମୀଙ୍କୁ ତ ସେଭଳି ଦିଆଯାଇନାହିଁ । ବିଜୁ ବାବୁ ବୋଲି ସେହିଯନ୍ତ୍ରଣା ସମ୍ଭାଳି ନେଲେ-ତାଙ୍କଠାରୁ କୌଣସି ଗୋପନ ଖବର ସରକାର ଆଦାୟ କରିପାରିଲେ ନାହିଁ ।

ଭାରତ ସ୍ୱାଧୀନ ହେଲା । ପ୍ରବଳ ପ୍ରତାପୀ ବ୍ରିଟିଶ୍ ସାମ୍ରାଜ୍ୟବାଦୀ ଶକ୍ତି ଏ ଦେଶରୁ ହଟିଗଲା । କିନ୍ତୁ ଡ଼ଚ୍ ସାମ୍ରାଜ୍ରବାଦୀମାନେ ଇଣ୍ଡୋନେସିଆରେ

ରହିବେବୋଲି ଜିଦ୍ ଧରିଲେ । ଡ଼ଚ୍ ସ୍ୱାଧୀନତା ସଂଗ୍ରାମର ନେତାଙ୍କୁ ହତ୍ୟାକରି ଦିଆଯିବ ବୋଲି ନିଶ୍ଚିତ ଖବର ପାଇଲା ପରେ ପଣ୍ଡିତ ନେହେରୁ ବିଚଳିତ ହୋଇ ଉଠିଲେ । କିଏ ଯାଇ ସାହସ କରି ଇଣ୍ଡୋନେସିଆର ସେହି ବିପ୍ଳବୀଙ୍କୁ ଉଦ୍ଧାର କରି ଆଣି ଭାରତରେ ପହଞ୍ଚାଇଦେବ ? ବାହାରି ପଡ଼ିଲେ ବିଜୁ ପଟ୍ଟନାୟକ । ଧରାପଡ଼ିଲେ ନିଶ୍ଚିତ ମୃତ୍ୟୁ ବୋଲି ଜାଣି ମଧ୍ୟ ସେ ଖଣ୍ଡେ ଉଡ଼ାଜାହାଜ ନେଇ ବାହାରିପଡ଼ିଲେ ଓ ଡ଼ଚ୍ ସାମରିକ ଉଡ଼ାଜାହାଜମାନେ ତାଙ୍କୁ ଗୋଡ଼ାଉଥିବା ସତ୍ତ୍ୱେ ସେ ତାଙ୍କୁ ଆଣି ନେହେରୁଙ୍କ ପାଖରେ ପହଞ୍ଚାଇ ଦେଲେ । ସଶରୀରରେ ବିଜୁବାବୁ ଫେରିବେ ଏକଥା କେହିହେଲେ ବିଶ୍ୱସ କରୁ ନଥିଲେ । ଆଜି ଜଣେ ଇଣ୍ଡୋନେସିଆର ରାଜଧାନୀକୁ ଗଲେ ଦେଖିବ, ବିଜୁବାବୁଙ୍କ ମୂର୍ତ୍ତି ଗଢ଼ି ସେଠାରେ ପୂଜା କରାଯାଉଛି ।

ଆହୁରି ଅଛି-ଲେଖିବା ପାଇଁ ସ୍ଥାନର ଅଭାବ । ତେବେ ଯେତିକି କୁହାଗଲା ସେଥିରୁ ଯେ କୌଣସି ଲୋକତ ଏହି ସିଦ୍ଧାନ୍ତରେ ପହଞ୍ଚିବ ଯେ ବିଜୁବାବୁ ହେଉଛନ୍ତି ବିଂଶ ଶତାବ୍ଦୀର ସର୍ବଶ୍ରେଷ୍ଠ ସାହସୀ, ସ୍ୱାଧୀନତା ସଂଗ୍ରାମୀ ଓ ବୀର । ସେହି ଲୋକକୁ ପ୍ରଣାମ କରିବାପାଇଁ ଆଜି ଯେ ଓଡ଼ିଆ ଯୁବକମାନଙ୍କ ଭିତରେ ପ୍ରତିଯୋଗିତା ଚାଲିଛି, ଏଥିରେ ବିସ୍ମିତ ହେବାର କଣ ଅଛି ।

### ବିରାଟ ସ୍ୱପ୍ନ ଦେଖିପାରନ୍ତି

ବିରାଟ ସ୍ୱପ୍ନ ଦେଖିବାର ସାମର୍ଥ୍ୟ ଥିବା ଲୋକ ଏ ସଂସାରରେ ବିଶେଷତଃ ଭାରତରେ ତ ଆହୁରି ଅଭାବ । କିନ୍ତୁ ଏହି ବିଜୁ ପଟ୍ଟନାୟକ ହେଉଛନ୍ତି ଏଭଳି ଜଣେ ଲୋକ, ଯାହାଙ୍କର ବିରାଟ ସ୍ୱପ୍ନ ଦେଖିବାର ସାମର୍ଥ୍ୟ ରହିଛି । ସେହି ବୈଜ୍ଞାନିକମାନଙ୍କ ଅମରବାଣି ତାଙ୍କୁ ବରାବର ପ୍ରେରଣା ଦେଇଛି । ବିଜ୍ଞାନିମାନେ କହନ୍ତି-Sow Fantasis and Reap Realities-ଉଦ୍ଭଟ କଳ୍ପନା ରୂପକ ବିହନ ବୁଣିଦିଅ ଓ ବାସ୍ତବତା ରୂପର ଫସଲ କାଟିଆଣ ।  ବିଜୁବାବୁ ବିଚାରିଲେ ଓଡ଼ିଶାର ପାରାଦ୍ୱୀପରେ ଗୋଟିଏ ବନ୍ଦର ହେବ । ଭାରତର ଓ ଓଡ଼ିଶାର ବହୁ ଲୋକ ହସିଲେ । କଳିଙ୍ଗବାସୀଙ୍କ ସମୁଦ୍ର ଯାତ୍ରାର ସ୍ୱପ୍ନତାଙ୍କୁ ପାଗଳ କରିଦେଉଥାଏ । ଆଜି ଆମେ ଦେଖୁଛୁ ପାରାଦ୍ୱୀପ ବନ୍ଦର ହେଉଛି ଗୋଟିଏ ବିରାଟ ବାସ୍ତବତା । ବଡ଼ ବଡ଼ ନଈରେ ଦଶଟା

ପୋଲ ବା ଘାଟ ତିଆରି ଯୋଜନା ଓ ଗୋଟାଏ ଆଧୁନିକ ବନ୍ଦର ତିଆରି ଯୋଜନା ଭିତରେ ନିଶ୍ଚୟ ପାର୍ଥକ୍ୟ ରହିଛି । ଏଇଠି ଆସିଯାଉଛି ବିଜୁବାବୁଙ୍କ ବିଶେଷତ୍ୱ ।

ଆମ ସମସ୍ତଙ୍କ ଅଲକ୍ଷ୍ୟରେ ସେ ଗୋଟାଏ କାମ କରିଯାଉଛନ୍ତି । ସ୍ୱାଧୀନତାର ଆରମ୍ଭବେଳେ ଜଣେ ସ୍ୱାଧୀନତା ସଂଗ୍ରାମୀଙ୍କର କେବେ ସଂପତ୍ତି ଥିଲା ଓ କ୍ଷମତାର ସୁଯୋଗ ନେଇ ଆଜି କେତେ ହୋଇଛନ୍ତି, ସେ ବିଷୟରେ ବରାବର ଆଲୋଚନା ଚାଲେ । ବିଜୁବାବୁ ସେ ଆଲୋଚନାରୁ ବାଦ୍ ଯାଇନାହାନ୍ତି । କିନ୍ତୁ ସମସ୍ତେ ସ୍ୱୀକାର କରୁଛନ୍ତି ଯେ ସେ ନିଜର ଧନସଂପତ୍ତିକୁ ସାଧାରଣ କାର୍ଯ୍ୟରେ ଲଗାଇ ଆଜି ଜଣେ ଅଭାବି ଲୋକ । ତାଙ୍କର ଯାହାକିଛି ଅଛି ତାଙ୍କୁ କେମିତି ସେ ସଂସାରରୁ ବିଦାୟ ନେଲା ପୂର୍ବରୁ ସାଧାରଣ କାର୍ଯ୍ୟରେ ଲଗାଇ ଦେଇଯିବେ ତାହାହିଁ ଯେପରିକି ସେ ବରାବର ଚିନ୍ତା କରୁଛନ୍ତି ।

ଇତିହାସ ନିଶ୍ଚୟ ନିରପେକ୍ଷ-ସମୟେ ସମୟେ ନିର୍ମମ । ଏକ ସମୟରେ ଖୁବ୍ ବଡ଼ ବୋଲି ଜଣାପଡୁଥିବା କେତେଲୋକଙ୍କୁ ଇତିହାସ ତାହାର ଅଳିଆ ଟୋକେଇ ଭିତରକୁ ପକାଇ ସାରିଲାଣି । କିନ୍ତୁ ଇତିହାସର ସାହସ ନାହିଁ ବିଜୁବାବୁଙ୍କୁ ହଜାରେ ବର୍ଷ ପରେ ମଧ୍ୟ ଭୁଲିଯିବାପାଇଁ ।

ଆଜି ଯେତେବେଳେ ମୋଠାରୁ ବୟସରେ ସାନ ହୋଇଥିବା ଜଣେ ବୀର ସ୍ୱାଧୀନତା ସଂଗ୍ରାମୀଙ୍କୁ ମୁଁ ଦୂରରୁ ପ୍ରଣାମ ଜଣାଉଛି, ସେତେବେଳେ କେହି ବିସ୍ମିତ ହୁଅନ୍ତୁ ନାହିଁ-ମୋ ଦୃଷ୍ଟିରେ ମୋର ସେହି ବାଲ୍ୟବନ୍ଧୁ ତଥା ସାନଭାଇ ବିଜୁ ଆଉ ବ୍ୟକ୍ତିବିଶେଷ ହୋଇ ରହିନାହିଁ । ନିଜର ତ୍ୟାଗ, ସାଧନା, ଦକ୍ଷତା, ବୀରତ୍ୱ ଓ ସାହସଦ୍ୱାରା ସେ ନିଜକୁ ଗୋଟିଏ ତତ୍ତ୍ୱ ବା କନ୍‌ସେପଟ୍ (Concept)ରେ ପରିଣତ କରି ଦେଇପାରିଛି । ସେହି ତତ୍ତ୍ୱକୁ ହିଁ ମୁଁ ପ୍ରଣାମ କରୁଛି । ସେହି ତତ୍ତ୍ୱର ଅର୍ଥ ହେଉଛି- କେବଳ ବଡ଼ କଥାହିଁ ଚିନ୍ତାକର, ବଡ଼ କାମ କରିବାକୁ ଆସ, ପରାଜୟକୁ ବିଜୟରେ ପରିଣତ କରିଦେବାର କଳା ଆୟତ୍ତ କର ।

# ଓଡ଼ିଶାର ଭବିତବ୍ୟ

## ମନମୋହନ ମିଶ୍ର

ବିଜୁବାବୁଙ୍କର ୭୨ ବର୍ଷ ଜନ୍ମଦିନରେ ତାଙ୍କର ଦୀର୍ଘାୟୁ କାମନା ବେଳେ ଓ ତାଙ୍କର ନେତୃତ୍ୱ ଓ ସେବା ପାଇଁ ଅଭିନନ୍ଦନ ଦେଲାବେଳେ, ଯେଉଁ କୃତିତ୍ୱ କଥା ମନରେ ପଡ଼େ, ତାହା ରାଉରକେଲା ଇଞ୍ଜିନିଅରିଂ କଲେଜ ନୁହେଁ, ଚଉଦ୍ୱାର ନୁହେଁ, ଏକସ୍‌ପ୍ରେସ ହାଇୱେ ନୁହେଁ, ସୁନାବେଡ଼ା ନୁହେଁ, 'କଳିଙ୍ଗ'ର ବିଭିନ୍ନ ସଂସ୍ଥା ନୁହେଁ, ତାହା ହେଉଛି ପାରାଦ୍ୱୀପ । ଯେତେଦିନଯାଏ ପାରାଦ୍ୱୀପ ଥିବ, ସେତେଦିନଯାଏ ବିଜୁବାବୁଙ୍କୁ ଓଡ଼ିଶା ଓ ଭାରତ ଯୁଗ ଯୁଗ ଧରି ପାଶୋରି ପାରିବ ନାହିଁ ।

୧୯୬୧ର ଅକ୍ଟୋବର ୨ ତାରିଖ ଗାନ୍ଧୀଜୟନ୍ତୀରେ କଟକରୁ ପ୍ରକାଶିତ ''ଦୈନିକ କଳିଙ୍ଗ''ର ପ୍ରଥମ ସପ୍ତାହର ଗୋଟିଏ ସଂଖ୍ୟାରେ ଏକ ଲେଖା ପ୍ରକାଶ ପାଇଥିଲା । ସେ ଲେଖାଟିର ଶୀର୍ଷକ ଥିଲା, ''ଓଡ଼ିଶାର ଭବିତବ୍ୟ'' । ଲେଖକ: ବିଜୁ ପଟ୍ଟନାୟକ । ଓଡ଼ିଆ ଭାଷାରେ ଲେଖା, ଓଡ଼ିଶାର ଭବିତବ୍ୟ, ପୁଣି ବିଜୁ ପଟ୍ଟନାୟକଙ୍କର ଏହା ଅଦ୍ଭୁତ ଓ ଅସାଧାରଣ ବୋଲି ମନେ କରି ଅନେକ ମୋତେ ପଚାରିଥିଲେ । ଏହା କ'ଣ ପ୍ରକୃତରେ 'ଆମ ବିଜୁ ପଟ୍ଟନାୟକ' ଲେଖିଛନ୍ତି ?''

ସେତେବେଳେ ବିଜୁ ପଟ୍ଟନାୟକ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିଲେ; କାରଣ ଯେଉଁ ନିର୍ବାଚନରେ ସେ କେବଳ କଂଗ୍ରେସ ପାର୍ଟି ବିଜୁବାବୁଙ୍କ ନେତୃତ୍ୱରେ ଓଡ଼ିଶାରେ ସଂଖ୍ୟା ଗରିଷ୍ଠ ହୋଇଥିଲା; ସେହି ନିର୍ବାଚନ ହେବାକୁ ଆହୁରି ୪/୫ ମାସ ବାକିଥିଲା । ତେବେ ଏହି ଲେଖା ଯିଏ ଲେଖିଥିଲେ, ତାଙ୍କର ପୃଷ୍ଠଭୂମି କ'ଣ ଥିଲା ସେ କଥା ବୋଧ ହୁଏ ମୋତେ ପ୍ରଶ୍ନ କରିବା ବ୍ୟକ୍ତିମାନେ ଭଲକରି ଜାଣିନଥିଲେ । ଏହାର ପ୍ରମାଣ ଅନେକ ।

## ॥ ଦୁଇ ॥

ବିଜୁ ପଟ୍ଟନାୟକ ଆଜି ଜଣେ ବିଶ୍ୱବିଶ୍ରୁତ ବ୍ୟକ୍ତି । ତାଙ୍କର ପରିଚୟ କେବଳ ଓଡ଼ିଶାର ପୁରପଲ୍ଲୀ ନଗର ଜନ ପଦରେ ନୁହେଁ, କୁମାରୀକାଠାରୁ ହିମାଳୟ, କାଶ୍ମୀରଠାରୁ ତ୍ରିପୁରାଯାଏ ସର୍ବତ୍ର । ପୃଥିବୀରେ କାହିଁ ଫ୍ରାନ୍ସର ପ୍ୟାରିସ-ୟୁନେସ୍କୋର (UNESCO) 'କଳିଙ୍ଗ ପୁରସ୍କାର' ପ୍ରବର୍ତ୍ତକଠାରୁ-ଇଣ୍ଡୋନେସିଆର ରାଷ୍ଟ୍ରନାୟକ ଓ ମୁକ୍ତି ସଂଗ୍ରାମୀଙ୍କର ସହଯୋଦ୍ଧାଭାବରେ ତାଙ୍କର ଅଛି ବିଶ୍ୱ-ପରିଚିତି । ଆମର ଆଜି ମାମୁଲି ସଭାସମିତିରେ ଯେଭଳି ସମ୍ମାନନୀୟ ଅତିଥିମାନଙ୍କର ପରିଚୟ ଦିଆଯାଏ, ସେପରି ପରିଚୟ ବିଜୁପଟ୍ଟନାୟକଙ୍କର ହେଲା- ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ, ବର୍ତ୍ତମାନ ବିରୋଧୀ ଦଳର ନେତା, ଜନନାୟକ । ଆହୁରି ଟିକିଏ ଦିଗ୍‌ବଳୟ ପ୍ରସାରିତ କଲେ, 'ଓଡ଼ିଶା ରାଜ୍ୟର ଆଧୁନିକ ନିର୍ମାତା ଓ ଓଡ଼ିଶାର ବହୁ ଅନୁଷ୍ଠାନର ପ୍ରତିଷ୍ଠାତା ।'

ଦେଶ-କାଳ-ପାତ୍ର ଭେଦରେ ଅବଶ୍ୟ ପରିଚୟ ବିଭିନ୍ନ ହେବାକୁ ବାଧ୍ୟ । ତେବେ ଓଡ଼ିଶାରେ ଆଜି ତାଙ୍କୁ ଯେଉଁମାନେ ନିବିଡ଼ ଭାବରେ ଜାଣନ୍ତି, ସେମାନେ ମଧ୍ୟ ସମୟଭେଦରେ ତାଙ୍କୁ ନାନା ଭାବରେ ଚିତ୍ରଣ କରନ୍ତି । ଥରେ ପଶ୍ଚିମବଙ୍ଗର ପୂର୍ବତନ ମୁଖ୍ୟମନ୍ତ୍ରୀ ଡ଼ଃ: ବିଧାନ ଚନ୍ଦ୍ର ରାୟଙ୍କ ମୁହଁରୁ 'ଦୈନିକ ସମାଜ'ର ସମ୍ପାଦକ ଏବଂ ଲୋକସେବକ ମଣ୍ଡଳର ଅଧ୍ୟକ୍ଷ ଶ୍ରୀ ରାଧାନାଥ ରଥ ଶୁଣିଥିବାର ସେ ମୋତେ କହିଛନ୍ତି- ଜବାହାରଲାଲ ନେହେରୁ ବିଧାନ ରାୟଙ୍କୁ କହିଥିଲେ ବିଜୁ ଜଣେ କରିତ୍‌କର୍ମା ବ୍ୟକ୍ତି; କିନ୍ତୁ ସେ ତୁମକୁ ନେଇ କେଉଁଠି ଓହ୍ଲାଇଦେବ ତାହା ଭଗବାନ ଜାଣନ୍ତି ।(Biju is a dynamic person, but heaven knows where he will land you) ଓଡ଼ିଶା ସରକାରଙ୍କଠାରୁ ବିଜୁ ପଟ୍ଟନାୟକ ଯେଉଁ ଛଅ ଲକ୍ଷ ଟଙ୍କା ଉଧାର ନେଇ ଚାରିଜଣ ଓଡ଼ିଆ ଯୁବକଙ୍କୁ କୋଇଲାରୁ ପେଟ୍ରୋଲ ବାହାର କରିବା ଟ୍ରେନିଂ ପାଇଁ ପଠାଇଥିଲେ; ସେହି ସଂକ୍ରାନ୍ତ ପତ୍ରାବଳୀ ଯାହା ସେତେବେଳେ

ମହତାବ ବାବୁଙ୍କୁ ପଣ୍ଡିତ ନେହେରୁ ଦେଇଥିଲେ ସେଥିରେ ମଧ୍ୟ ଏକଥା ଉଲ୍ଲେଖ ଅଛି ।

କାଲିପରି ଲାଗୁଛି, ୧୯୫୯ ମସିହା । ଦଶହରା ଦିନ । ଓଡ଼ିଶାର ମୁଖ୍ୟମନ୍ତ୍ରୀ ମହତାବ, (ଆଜି ସିଏ ନାହାନ୍ତି) ଭାରତର ଉଦ୍ୟାନରେ ଏକ ମହା ମହୀରୁହ ସିଏ- ଦେଶ ବିଦେଶର ସହସ୍ର ସହସ୍ର ବ୍ୟକ୍ତି ଓ ଭାରତର ସମସ୍ତ ତୁଙ୍ଗ ନେତାଙ୍କ ସହିତ କାନ୍ଧ ମିଳେଇଥିବା ବ୍ୟକ୍ତିତ୍ୱ ଯାହାଙ୍କର- ସକାଳ ୮.୩୦ ବା ୯ଟାବେଳ । କଟକ ଚାନ୍ଦିନୀଚୌକରେ ଦଶହରା ଉତ୍ସବର ସମାରେହ । କିନ୍ତୁ ମୋତି ପଣ୍ଡିତଙ୍କର ଏକାବେଳେକେ ଶାନ୍ତ ସମାହିତ। ସେଇଠି ସେ ଦୁହିଁଙ୍କ ଛଡା ମୁଁ କେବଳ ଉପସ୍ଥିତ ଥିଲି । ମହତାବବାବୁ ବିମର୍ଷ ଭାବରେ କହିଲେ, 'ମୋତିବାବୁ, ବୀରେନ୍‌ବାବୁଙ୍କର ଖବର କ'ଣ ? ' ମୋତିବାବୁ ସ୍ୱଭାବସୁଲଭ ପିଲାଳିଆ ଖନା ପାଟିରେ କହିଲେ, 'ଆଜ୍ଞା ଆପଣ କୁହନ୍ତୁ' । ମହତାବବାବୁ କହିଲେ ସେ ମୋତେ ଲେଖିଛି (ସେତେବେଳେ ବନ୍ଧୁ ବୀରେନ ମାନସିକ ରୋଗ ଯୋଗୁଁ କଲିକତାରେ ବିଧାନ ରାୟଙ୍କର ଚିକିତ୍ସାରେ ଥିଲେ ) ପିଲାମାନେ ଲାଗିଲେ । ମୋ ଆଶା ଛାଡନ୍ତୁ । ମୋତିବାବୁ ବିସ୍ମୟରେ ବଡ ବଡ ଆଖି କରି ଚାହିଁ ରହିଲେ । ମହତାବବାବୁ କହିଲେ 'ସେ ପାଗଳ ହୋଇ ଗଲା ।' ସାମାନ୍ୟ ଅପେକ୍ଷା କରି କହିଲେ, 'ଆଉ ଜଣକର ବି ସେହି ଦଶା। ମୋତିବାବୁ ପଚାରିଲେ 'କିଏ' ? ମହତାବବାବୁ-'ବିଜୁ'। ମୁଁ ଅବାକ୍। ମୋତିବାବୁ କହିଲେ, 'ଆଜ୍ଞା ଆମର ବିଜୁବାବୁ ?' ମହତାବବାବୁ ଟିକିଏ ରହିଗଲେ । କହିଲେ,'ମଧ୍ୟପ୍ରଦେଶର କୁମ୍ଭରାମ ଆର୍ଯ୍ୟ- ଏବେ ସେଠା ପିସିସିର ସଭାପତି ପଦରୁ ବାହାରିଯାଇଛନ୍ତି। ମୋ ପୁରୁଣା ସହକର୍ମୀ । ତାଙ୍କପ୍ରତି ମୋର ସହାନୁଭୂତି ଆଶ୍ୱାସନା ଜଣାଇଲା ବେଳେ ସେ କହିଲେ, ଏବେ ଯୁବକଙ୍କର ପାଳି । ଯାହାହେଉ ଆପଣଙ୍କର ଓଡିଶା ପିସିସି (ପ୍ରାଦେଶିକ କଂଗ୍ରେସ କମିଟି) ରେ ମଧ୍ୟ ଜଣେ ଯୁବକ ଆସିଛନ୍ତି । ବେଶ୍ ତେଜିୟାନ ଲୋକ । ବହୁତ ଦୂର ଅଗ୍ରସର ହେବେ'। ମହତାବବାବୁ ଆଶ୍ଚର୍ଯ୍ୟ ହୋଇ ପଚାରିଲେ- କାହା କଥା କହୁଛନ୍ତି ? କୁମ୍ଭରାମ ଆର୍ଯ୍ୟ, କାହିଁକି ? 'ବିଜୁ ପଟ୍ଟନାୟକ ।'

ମହତାବବାବୁ ଆମକୁ କହିବାରେ ଲାଗିଲେ । ମୁଁ ଆଶ୍ଚର୍ଯ୍ୟ ହେଲି ।

ଆମର ପିସିସିର ସଭାପତି ତ ରାମକୃଷ୍ଣ ବୋଷ । ବିଜୁ କିପରି ଏକଥା କହିଲେ ? ତାଙ୍କ ସଂଗରେ ଦେଖାହେବାରୁ ପଚାରିଲି- ତୁମେ କହିଚ ମୁଁ ପିସିସି ସଭାପତି । ବିଜୁ କହିଲେ, 'ଆଉ ୬ ମାସ ଅପେକ୍ଷା କରନ୍ତୁ, ମୁଁ ସଭାପତି ହେବି ।' ତା'ପରେ ସେ ମୋତେ ଯେଉଁ ଖସଡ଼ାଯୋଜନା ଦେଲେ ତାହାର ସାରାଂଶ ହେଲା ''ପିସିସି ସଭାପତିରୁ କଂଗ୍ରେସ ସଭାପତି ଓ ତାହାପରେ ଆସନ୍ତା ନିର୍ବାଚନରେ କଂଗ୍ରେସ ଟିକେଟ ଦେବାର ଅଧିକାରୀ.... ତେଣିକି ଚାଲିବ । ଏସବୁ ପାଇଁ ଆଠ କୋଟି ଟଙ୍କା ମୋଟ ଖର୍ଚ୍ଚ ହେବ। କ'ଣ କହୁଚ କହ ? ଯଦି ଏହା ସମ୍ଭବ ତେବେ ବିରଳା ତ ଭାରତର ପ୍ରଧାନନ୍ତ୍ରୀ ହୋଇଯିବ । ପାଗଳ ଛଡ଼ା ଏପରି ଚିନ୍ତା କାହା ମୁଣ୍ଡରେ ପଶେ ?''

ସେଠାରୁ ଫେରିବାବଳେ ମୋର ବସାଘରେ ମୁଁ ଓହ୍ଲାଇବାଯାଏ ମହତାବ ବାବୁ ଏ ବିଷୟରେ ଆଉ କିଛି କହିନଥିଲେ । ମୋତେ ଡ଼ାକିନେଇ ମୋ ସାମନାରେ ଏକଥା କହିବାର ଉଦ୍ଦେଶ୍ୟକୁ ମୁଁ ଯାହା ବୁଝିଥିଲି ତାହା ହେଉଛି, ବିଜୁ ଓ ବିରେନଙ୍କ ସହିତ ମୋର ନିକଟତା ଦୃଷ୍ଟିରୁ ସେମାନେ ନିଶ୍ଚୟ ସେ କଥା ମୋଠାରୁ ଶୁଣିବେ । କିନ୍ତୁ ସେମାନଙ୍କୁ ଏକଥା କହି ନାହିଁ। କାରଣ ବିଜୁବାବୁଙ୍କ ବିଷୟରେ ଏକଥା ଏକ ନିନ୍ଦା ବୋଲି ମୁଁ ମନେ କରିନାହିଁ।

## ତିନି

ପଣ୍ଡିତ ନେହେରୁଙ୍କର ସେହି ଆଶଙ୍କା ଯେ, ବିଜୁ (ଜଣେ ଉଡ଼ାଜାହାଜର ଦକ୍ଷ ପାଇଲଟ୍) କେଉଁଠି ନେଇ ଆପଣଙ୍କୁ ଓହ୍ଲାଇବ ତାହା କେବଳ ଭଗବାନଙ୍କୁ ଗୋଚର । ଏକଥା ଯଦି ପ୍ରକୃତରେ ଘଟି ନଥାନ୍ତା, ତେବେ ଆଜି ପାରାଦ୍ୱୀପ ଭାରତରେ ଏକ Major (ପହିଲାଧାଡ଼ି)ର ବନ୍ଦର ହୋଇନଥାନ୍ତା । ଡ଼କ୍ଟର ମହତାବଙ୍କର ଆରୋପିତ ପାଗଳାମି ଯଦିଚ ପୂରାପୂରି ସଫଳ ହୋଇପାରିଲା ନାହିଁ ତଥାପି ତାହାର କିଛି ସଫଳତା ହୋଇପାରିଥିଲା ଓଡ଼ିଶାର ଟିକରପଡ଼ା ଯୋଜନାର ପ୍ରସ୍ତାବ ଓ ତାହାର ସୁଦୂରପ୍ରସାରୀ କଳ୍ପନା, ପାରାଦ୍ୱୀପରେ ଇସ୍ପାତ

କାରଖାନାର ପ୍ରସ୍ତାବ ଓ ତାହାର ଅନ୍ତର୍ନିହିତ ସମ୍ଭାବନା (Potentiality) ପଞ୍ଚାୟତରାଜର ନୂତନ ଦୃଷ୍ଟିକୋଣ, ପ୍ରତ୍ୟେକ ବ୍ଲକର କୋଅପରେଟିଭ୍ ଶିଳ୍ପ, ବିଭିନ୍ନ ଉଦ୍ୟୋଗ, ପରିବହନ ସେବା, ଶିଳ୍ପ ପ୍ରତିଷ୍ଠା ଇତ୍ୟାଦି ପାଇଁ କରପୋରେସନ ଯୋଜନା ଇତ୍ୟାଦି ଯେ କୌଣସି କାର୍ଯ୍ୟ ୨୦ ବର୍ଷ ପଛେଇ ଯାଇଥାଆନ୍ତା ।

ଗତ ବର୍ଷର ବିଜୁ-ଜୟନ୍ତୀ ସଭାରେ ସ୍ୱତଃପ୍ରବୃତ୍ତ ହୋଇ ସଭାପତିମଣ୍ଡଳି ମୋତେ ଦୟାକରି କିଛି କହିବାକୁ ଆଦେଶ ଦେଇଥିଲେ । ସେହି ସଭାରେ ମୁଁ କହିଥିଲି ବିଜୁବାବୁ ଓଡ଼ିଶାର ଶାସନକ୍ଷମତାରେ ନ ରହି ବିରୋଧୀ ଦଳର ନେତାହୋଇ ରହିବା ଉଚିତ । କିନ୍ତୁ ସଭାରେ ଭରପୂର ଲୋକ ଏକଥା ଶୁଣିବାପାଇଁ ଆସି ନଥିଲେ । ସେ ଚାହୁଁଥିଲେ ବିଜୁବାବୁ ଓଡ଼ିଶାର ଶାସନ କ୍ଷମତାକୁ ଆସନ୍ତୁ । ତେଣୁ ସେମାନଙ୍କର ମାନସିକ ଭ୍ରୂକୁଞ୍ଚନ ସ୍ୱଭାବିକ ଥିଲା । ଆଜି ଯେତେବେଳେ ଓଡ଼ିଶାରେ କଂଗ୍ରେସୀ ସାଇନ୍‌ବୋର୍ଡ଼ମରା ମନ୍ତ୍ରିମଣ୍ଡଳର ଅଧଃପତନ ପ୍ରାୟ ନିଶ୍ଚିତ; ସେତେବେଳେ ଶାସନ କ୍ଷମତା ଲାଭରେ ଆଶାୟୀମାନେ ଯେ ଆହୁରି ଉତ୍ସାହିତ ହୋଇଛନ୍ତି, ଏହାର ଲକ୍ଷଣ ଅତି ସ୍ପଷ୍ଟ । ପୁଣି ସେହି ପ୍ରଶ୍ନ ଆସୁଛି ବ୍ୟାଧି ଯେଉଁଠି କ୍ୟାନସର- ସେଇଠି କୋଡ଼ୋପାଇରିନ୍ ବଟିକା ଔଷଧ ଛଡ଼ା ଯଦି ଆଉକିଛି ନାହିଁ, ତେବେ ଚିକିତ୍ସକ ଯେତେ ଧୁରନ୍ଧର ହେଲେ ବି କାହାଁତକ ଯାଇପାରିବ ? ଆଜି ଯେଉଁଠି ନରବଳି, ତନ୍ତ୍ର ଜ୍ୟୋତିଷଗଣନା ଉପରେ ନିର୍ଭର କରି ରାଷ୍ଟ୍ରଯନ୍ତ୍ର ଚାଲେ, ଯେଉଁଠି ମନୁଷ୍ୟର ଜୀବନର ମୂଲ୍ୟ ମୁଠେ କାଠଯୋଡ଼ି ବାଲିଠାରୁ ମଧ୍ୟ କମ୍; ସେଇଠି ଏ ବିଂଶସୂତ୍ରୀ କାର୍ଯ୍ୟକ୍ରମ, କଂପ୍ୟୁଟର ପ୍ରୟୋଗ ଇତ୍ୟାଦି କାହାର ଉପଯୋଗୀ ହେବ ?

## ଚାରି

ଆଜିକୁ ୨୭ ବର୍ଷ ତଳେ ମହତାବବାବୁ ବିଜୁବାବୁଙ୍କ ପାଗଳାମୀ କଥା କହିଲାବେଳେ ଦୁଇଟି କଥା ମୋ ମନଭିତରେ ନାଚି ଯାଇଥିଲା । ଗୋଟିଏ ବିଜୁବାବୁଙ୍କର ସ୍ୱପ୍ନ । ମୋତେ ଥରେ ସେ ପଚାରିଥିଲେ, ଆଦିବାସୀ

ପିଲା ବାଘଟିଏ ମାରିଲେ, ତା'ମନରେ ଯେତେ ଆନନ୍ଦ ହେଉଛି, ସେତିକି ଆନନ୍ଦ ତାକୁ ଗୋଟିଏ ମେସିନ୍ ବା ଟ୍ରାକ୍ଟର ଦେଲେ ହେବ କି ? ଯଦି ନ ହେବ ତେବେ କିପରି ହେବ ? ତାହା ସଂଗେ ସଂଗେ ମନେପଡ଼ିଥିଲା ଦୁନିଆର ବିପ୍ଳବୀମାନଙ୍କର ମହାନ୍ ଶିକ୍ଷକ ଲେନିନଙ୍କର କଥା । ତାହାର ଅବିକଳ ତର୍ଜମା ଏଠାରେ ତାଙ୍କରି ଭାଷାରେ ଦେଉଛି ।''ସ୍ୱପ୍ନ ଓ ଜାଗରଣ ଭିତରେ ବିରୋଧ ଅଛି- ନାନାବିଧ ବିରୋଧ । ମୋର ସ୍ୱପ୍ନ ହୁଏତ ଘଟଣାର ଅଗ୍ରଗତିର ସ୍ୱାଭାବିକ ପ୍ରବୃତ୍ତିଠାରୁ ଆଗକୁ ବଢ଼ିଯାଇପାରେ, କିମ୍ବା ସମକୋଣରେ ଅନ୍ୟ ଦିଗରେ ଯାଇପାରେ (off a tangent) ଯେଉଁ ଦିଗରେ ଘଟଣାର ସ୍ୱଭାବିକ ଗତି ଅଗ୍ରସର ହେବାର କୌଣସି ସମ୍ଭାବନା ନାହିଁ । ପ୍ରଥମ ଧରଣର ସ୍ୱପ୍ନ କୌଣସି ପ୍ରକାର କ୍ଷତିକାରକ ନୁହେଁ । ଏହା ଏପରିକି ଶ୍ରମଜୀବୀ ଜନଗଣଙ୍କର ଶକ୍ତିକୁ ସାହାଯ୍ୟ ଯୋଗାଏ, ତାହାକୁ ବଢ଼ାଇ ଦିଏ । ଏଭଳି ସ୍ୱପ୍ନରେ ଏପରି କିଛି ନାହିଁ ଯାହା ଶ୍ରମିକର ଶକ୍ତିକୁ ବିକଳାଙ୍ଗ ବା ପଙ୍ଗୁ କରିଦେବ । ଓଲଟା ଦିଗରେ ଯଦି ମନୁଷ୍ୟ ସ୍ୱପ୍ନ ଦେଖିବାର ସାମର୍ଥ୍ୟରୁ ସଂପୂର୍ଣ୍ଣ ଭାବରେ ବଞ୍ଚିତ ହୁଏ; ସେ ସମୟରେ ଯେ ଅଗ୍ରଧାବନ କରେ ତାହା ଯଦି କରିବାରେ ସମର୍ଥ ନ ହୁଏ, ମାନସିକ ଭାବରେ ଏକ ସାମୁଦାୟିକ ଓ ସଂପୂର୍ଣ୍ଣ ଚିତ୍ରର ନକ୍ସା ଯଦି ମନ ଭିତରେ ଆଙ୍କି ନ ପାରେ; ଯାହାର ଅଙ୍କନ ପାଇଁ ତାହାର ହାତ ରୂପ ଦେବା ଅବସ୍ଥାରେ ଉନ୍ମୁଖ । ତେବେ ମୁଁ ତ କଳ୍ପନା କରି ପାରୁନାହିଁ ଯେ, ମନୁଷ୍ୟର ସେଭଳି ପରିସ୍ଥିତିରେ କିଭଳି ପ୍ରେରଣା ରହିବ, ଯାହା ଫଳରେ ସେ କଳା, ବିଜ୍ଞାନ ଓ ବ୍ୟାବାହାରିକ କ୍ରିୟାକୃତିରେ ବ୍ୟାପକ ଓ ଆୟାସସାଧ୍ୟ କାର୍ଯ୍ୟରେ ହାତ ଦେବ''।

ସେହି ଶୋଷିତ, ପଦଦଳିତ, ବହୁଜାତିର ଜେଲଖାନା ଜାର୍‌ଶାସିତ ରୁଷିଆର ପ୍ରଜାଗଣଙ୍କର ମହାନ ଅଭ୍ୟୁଦୟର ଓ ଉନ୍ନତିର ବିଦ୍ଧାଣି ପୁଣି ଲେଖିଛନ୍ତି, ''ସ୍ୱପ୍ନ ଓ ବାସ୍ତବ ଭିତରେ ବିରୋଧ କୌଣସି ପ୍ରକାରେ କ୍ଷତିକାରକ ହେବନାହିଁ, ଯଦି ସ୍ୱପ୍ନ ଦେଖୁଥିବା ଲୋକ ଆପଣା ସ୍ୱପ୍ନରେ ନୈଷ୍ଠିକ ବିଶ୍ୱାସ ରଖେ । ଯଦି ସେ ମନଯୋଗ ସହକାରେ ଜୀବନକୁ ପର୍ଯ୍ୟବେକ୍ଷଣ କରେ ତା'ର ପର୍ଯ୍ୟବେକ୍ଷଣକୁ ଆପଣାର କଳ୍ପନାର ନିଳୟ ସହିତ ତୁଳନା କରେ

ଓ ସାଧାରଣ ଭାବରେ କହିଲେ, ସେ ତାହାର କଳ୍ପନାରାଜି ଫଳବତୀ କରିବାକୁ ମନଚୈତନ୍ୟ ସମୁଦାୟ ଦେଇ କାର୍ଯ୍ୟ କରେ ଓ ଯଦି ସ୍ୱପ୍ନଗୁଡ଼ିକ ସେହି ଜୀବନର ଓ ସମାଜର ସଂପର୍କ ରହେ, ତେବେ ତ, ସବୁ ଠିକଣା ବାଟରେ ଚାଲିବ ।''

ଲେନିନ୍ ଅବଶୋଷ କରିଛନ୍ତି, ''ଦୁର୍ଭାଗ୍ୟର କଥା ଏହି ପ୍ରକାର ସ୍ୱପ୍ନ ଦେଖିବା ଆମର ଆନ୍ଦୋଳନ ଭିତରେ କମ୍ ରହିଛି । ଯେଉଁମାନେ ଏଥିପାଇଁ ସର୍ବାଧିକ ପରିମାଣରେ ଦାୟୀ, ସେମାନେ ଏଭଳି ଲୋକ; ଯିଏ ଆପଣାର ମୋହ-ମୁକ୍ତ ମତାମତ ପାଇଁ ଖୁବ୍ ପ୍ରୌଢ଼ି ଦେଖାଇ ହୁଅନ୍ତି । ତାତ୍‌କାଳୀନ ସାକାର ଜିନିଷ ପ୍ରତି ସେମାନଙ୍କର ନିକଟବର୍ତ୍ତିତାରେ ଗର୍ବ କରନ୍ତି ।
ସେମାନେ ହେଉଛନ୍ତି କାନୁନୀ ସମାଲୋଚନା ଓ ଗୈରକାନୁନୀ 'ପୁଛବାଦ'ର ପ୍ରତିନିଧି ।

(ଲେନିନ୍-କ'ଣ କରିବାକୁ ହେବ-ଆମରି ଆନ୍ଦୋଳନର ଜ୍ୱଳନ୍ତ ପ୍ରଶ୍ନ-ନିର୍ବାଚିତ ରଚନାବଳି ରୁଷ ସଂସ୍କରଣ ପୃଷ୍ଠା-୪୮)

## ପାଞ୍ଚ

ଉଲ୍ଲିଖିତ 'ଓଡ଼ିଶାର ଭବିତବ୍ୟ'ର ଲେଖକ ବିଜୁ ପଟ୍ଟନାୟକ ଜଣେ ଲେନିନ୍‌ଙ୍କ ସୂଚିତ ନିଷ୍ଠାପର ଯୋଜନାକାରୀ ସ୍ୱପ୍ନଦ୍ରଷ୍ଟା । ତାହାକୁ ବ୍ୟାବାହାରିକ ତାତ୍‌କାଳୀନ ଲୋକେ ପାଗଳାମି ବୋଲି କହିପାରନ୍ତି । ତାହା ସଫଳ ହେବାରେ କିଛି ବିଘ୍ନ ହେଲେ ସେଥିପାଇଁ ବିଦ୍ରୂପ କରିପାରନ୍ତି କିନ୍ତୁ ସେଥିରେ ନିରୁତ୍ସାହିତ ହେବାର କୌଣସି କାରଣ ନାହିଁ ।

ଓଡିଶାକୁ ଯେତେ ବିଦେଶୀ କିମ୍ବା ପ୍ରବାସୀ ଆସିଛନ୍ତି ସେ ସମସ୍ତଙ୍କ ମୁହଁରେ ଗୋଟିଏ କଥା 'ଏତେ ସୁଦକ୍ଷ ଦେଶ , ମାଟିତଳେ , ପାହାଡ ପର୍ବତରେ ନଦୀର ଧାରାରେ ଏତେ ସମ୍ପତ୍ତି ଓ ଏତେ ଭରପୂର ଅଚଳାଚଳ ସମ୍ପତ୍ତି । ଏତେ ଉର୍ବାର ଉତ୍ସ- କୋଇଲା, ଜଳପ୍ରପାତ ତଥାପି ଏଠାରେ ଲୋକେ ଦରିଦ୍ର, ନିରକ୍ଷର ।'ଅତୀତରେ ଏହାର ଭାଷା,ସଂସ୍କୃତି ନୌଚାଳନା, ବାଣିଜ୍ୟ, କୁଟୀର ଶିଳ୍ପ, କାରିଗରି, ମନ୍ଦିର ସୌଧ ନିର୍ମାଣ କୌଶଳ ସାରା

ବିଶ୍ୱକୁ ଚମତ୍କୃତ କରିଛି...ତଥାପି ଆଜି ଉତ୍କଳମାତାର ନାମ ସାରା ଭାରତରେ ଖ୍ୟାତିଗ୍ରନ୍ଥରେ ପଡ଼ିନାହିଁ କାହିଁକି ?

ଏପରି ମନ୍ତବ୍ୟ ଆଜିର ଓଡ଼ିଶା-ସନ୍ତାନ ପାଇଁ ଏକ ଚାଲେଞ୍ଜ । ଓଡିଶାର ଭବିତବ୍ୟରେ ବିଜୁବାବୁ ଏହି ଚାଲେଞ୍ଜ ଗ୍ରହଣ କରିଥିଲେ । ଆଜି ତାଙ୍କର ମାମୁଲି ବୟସ ୭୨ ବର୍ଷ । କିନ୍ତୁ ତାଙ୍କର ମାନସିକ ବୟସ ୭୨ ନୁହେଁ ତାହା ୨୭ । ଯେଉଁ ମାନସିକ ବୟସରେ ଖୋସଲାଙ୍କର ରାଜ୍ୟପାଳତ୍ୱକୁ ନିର୍ଦ୍ଧାରଣ କଲାବେଳେ ସେ ଆପଣାର ଜୀବନର ପାଥେୟ କରି ନେଇଥିଲେ । ଓଡିଶାରେ ଭୂମି ସଂସ୍କାରକୁ(ramrod)(ତାଙ୍କରି ଭାଷା) ବା ଜବରଦସ୍ତ କରି ଏଠାର କୋଟିରୁ ଅଧିକ ଭୂମିହୀନ ଅଥବା ନାମକୁମାତ୍ର ଚାଷୀ ହାତରେ କିଣିବାର ଶକ୍ତିକୁ ଠୁଳ କରିବା ସଙ୍ଗେ ସଙ୍ଗେ ସେ ଯେଉଁ 'ଭାଗ୍ୟର ଦଶବର୍ଷ' (Decade of Fortune)ର ସ୍ୱପ୍ନ ଦେଖିଥିଲେ, ତାହାକୁ କାର୍ଯ୍ୟକାରୀ କରିବାକୁ ଆଗେଇ ଆସନ୍ତୁ । ଓଡିଶାର ବକସାଇଟ୍ ଖଣିର ଉପଯୋଗ ପାଇଁ ସେ ଯେପରି ୟୁରୋପର ବହୁ ଦେଶ ଯଥା ହଙ୍ଗେରୀ ପ୍ରଭୃତି ସହିତ ଯୋଗସୂତ୍ର ସ୍ଥାପନ କରିଥିଲେ ତାହା ନିଶ୍ଚିତ ଭାବରେ ତାଙ୍କର ମନରେ ଧକ୍କା ଦେଉଥିବ । ସେହି ଚିର ନୂତନ, ନବ ନବ ଉନ୍ମେଷଶାଳିନୀ କର୍ମୋଦ୍ୟମ ପାଇଁ ସେ ଅଗ୍ରସର ହୁଅନ୍ତୁ । ମଧୁବାବୁ ତାଙ୍କ ସମୟର ସୀମିତ ପରିସ୍ଥିତିରେ ବିକଳ ହୋଇ କାନ୍ଦିଥିଲେ:-

"ମାଆ ମାଆ ବୋଲି କେତେ ମୁଁ ଖୋଜିଲି
ମାଆକୁ ପାଇଲି ନାହିଁ,
ଭାଇ ଭାଇ ବୋଲି କେତେ ମୁଁ ଡ଼ାକିଲି
ନ ଦେଲେ ଉତ୍ତର କେହି ।"

କିନ୍ତୁ ଆଜିର ପରିସ୍ଥିତି ଆହୁରି ଅନୁକୂଳ । ଦାମନଯୋଡ଼ି ସହିତ ପଛେ ପାରାଦ୍ୱୀପର ସ୍ଥଳଭାଗରେ ରେଳରାସ୍ତାର ସଂଯୋଗ ନ ହୋଇପାରୁ, କିନ୍ତୁ ରାଉରକେଲା ସହିତ, ସମ୍ବଲପୁର ସହିତ ତାଳଚେରବାଟେ, ଆଉ ବଲାଙ୍ଗିର ସହିତ ପାରାଦ୍ୱୀପର ସଂଯୋଗ ସ୍ଥାପନ ହେବାର ବ୍ୟବସ୍ଥା ହେଉ । ଓଡ଼ିଶାର ଏକତା ହିଁ ଭାରତୀୟ ଅଖଣ୍ଡତା ରକ୍ଷାର ସର୍ବପ୍ରଧାନ ଉପାଦାନ ।

## ।। ଛଅ ।।

ଆଜିର ଏହି ଜୟନ୍ତୀ ଉତ୍ସବରେ ସମସ୍ତ ଦେଶର ଅନୁଯୋଗ । ମୋର ଗତବର୍ଷର ନୈରାଶ୍ୟଜନିତ କଥାର ଅବସାନ ହେଉ । ବିଜୁବାବୁ ଓଡ଼ିଶାର ଶାସନ ସମ୍ଭାଳନ୍ତୁ । ସରକାରିଆ କମିଶନର ସୁପାରିଶ ଯାହାହେଉ ନା କାହିଁକି, ଓଡ଼ିଶାର ଯେଉଁ କାର୍ଯ୍ୟପାଇଁ ସେ ଆଗଭର ହୋଇଥିଲେ ସେହି କାର୍ଯ୍ୟପାଇଁ ତାଙ୍କର ଯୁବକ ସୁଲଭ ମାନସିକ କ୍ରିୟା ପ୍ରୟୋଗ କରନ୍ତୁ । ପାରାଦ୍ୱୀପକୁ ଯେପରି ସେ ଏହି ରାଜ୍ୟର ରାଜକୋଷର ଅର୍ଥ ଦେଇ ସାହସ ସହକାରେ ଏକ ମେଜର ବନ୍ଦରରେ ପରିଣତ କଲେ ଓ ଯାହାପାଇଁ କେନ୍ଦ୍ରସରକାର ସେତେବେଳେ ଓଡ଼ିଶା ପ୍ରତି ସହାନୁଭୂତିଶୀଳ ଥିଲେ ମଧ୍ୟ କହିଥିଲେ, "କେନ୍ଦ୍ର ଯାହା ନାସ୍ତି କରନ୍ତି, ଓଡ଼ିଶା ତାହା ଆସ୍ତି କରେ ।" ଠିକ୍ ସେହିଭଳି ରେଳରାସ୍ତାର ଅସଂପୂର୍ଣ୍ଣତା ଇସ୍ପାତ ଶିଳ୍ପ ଯୋଜନା ଇତ୍ୟାଦିକୁ ଶେଷ କରନ୍ତୁ ।

ଏକବିଂଶ ଶତାବ୍ଦୀ ପାଇଁ ଓଡ଼ିଶାର ପ୍ରସ୍ତୁତିରେ ସେ ଆପଣାକୁ ନିୟୋଜିତ କରନ୍ତୁ । ଏକଥା ନିଶ୍ଚିତ ଯେ ସାରା ଓଡ଼ିଶାର ଜନସାଧାରଣ, ଯୁବକ ଛାତ୍ର,ଶ୍ରମିକ କର୍ମଚାରୀ, ବ୍ୟବସାୟୀ, କୃଷକ ସମସ୍ତେ ତାଙ୍କର ଅଦମ୍ୟ ନିଷ୍ଠାରେ ଅନୁପ୍ରାଣିତ ହେବେ । ଆଉ ୨୦୦୦ ସାଲ କ'ଣ ତା'ଠାରୁ ବହୁ ବର୍ଷ ପର୍ଯ୍ୟନ୍ତ ଏହି ସଂପୂର୍ଣ୍ଣ କାର୍ଯ୍ୟ ପୂର୍ଣ୍ଣ କରିବା ପାଇଁ ତାଙ୍କର ମାନସିକ ପ୍ରସ୍ତୁତି, ତାଙ୍କର ଶାରୀରିକ ଶକ୍ତିକୁ ତେଜିୟାନ ଓ କର୍ମକ୍ଷମ କରିବାରେ ସମର୍ଥ ହେବ । ଇତିହାସରେ ଓଡ଼ିଶାର ଅପରାଧ ଥିଲା ଏହା ଯେ ଓଡ଼ିଶା ବ୍ରିଟିଶ୍ ଶାସନ ବିରୁଦ୍ଧରେ ୧୮୧୭ରେ ପ୍ରଥମେ ପାଇକ ବିଦ୍ରୋହ କରିଥିଲେ । ସେହି ଅପରାଧର ସଜ୍ଜାକୁ ଲୋପ କରି ଓଡ଼ିଶାକୁ ଭାରତର ରୁହର କରିବା ସ୍ୱପ୍ନ ସଫଳ ହେଉ । ଆଜିର ଦିନରେ ଏହା ହିଁ ଏହି ପ୍ରାଚୀନ ପୁରାଣ ଜାତିର ଏକାନ୍ତ ଅଭିଳାଷ ।

# ଶିକ୍ଷାପ୍ରେମୀ ବିଜୁ ପଟ୍ଟନାୟକ

## ଡ଼କ୍ଟର ଶ୍ରୀରାମଚନ୍ଦ୍ର ଦାଶ

ବିଜୁ ପଟ୍ଟନାୟକ ଜଣେ କରିତ୍‌କର୍ମା ବ୍ୟକ୍ତି । ମୁଁ ତାଙ୍କୁ ୧୯୩୨ ମସିହାରୁ ଜାଣେ । ସେ ଗଞ୍ଜାମ ଜିଲ୍ଲାର ଅଧିବାସୀ ହୋଇଥିଲେ ହେଁ ତାଙ୍କ ପିତା ଲକ୍ଷ୍ମୀନାରାୟଣ ପଟ୍ଟନାୟକ କଟକରେ ଉପଜିଲ୍ଲା ନ୍ୟାୟାଧୀଶ ଥିବାରୁ ସେ କଟକରେ ରହୁଥିଲେ ଓ ମୁଁ ୧୯୩୨ରେ ରେଭେନ୍‌ସା କଲେଜିଏଟ ସ୍କୁଲରେ ନାମ ଲେଖାଇବାବେଳେ ସେ ମୋଠାରୁ ଚାରିବର୍ଷ ଉପରେ ପଢୁଥିଲେ । ତାଙ୍କ ଜ୍ୟେଷ୍ଠଭ୍ରାତା ଡ଼କ୍ଟର ଜର୍ଜ ପଟ୍ଟନାୟକ ଜଣେ ଦନ୍ତ ଚିକିତ୍ସକ । ତାଙ୍କ କନିଷ୍ଠଭ୍ରାତା ସିଜୁ ଓରଫ୍ ଶ୍ରୀ ଜୟାନନ୍ଦ ପଟ୍ଟନାୟକ ପରେ ରେଭେନ୍‌ସା କଲେଜରେ ମୋର ସହାଧ୍ୟାୟୀ ଥିଲେ ଏବଂ ବିମାନ ବାହିନୀରେ ଯୋଗଦେଇ ଅକାଳରେ ମୃତ୍ୟୁବରଣ କରିଥିଲେ । ତିନିଜଣଯାକ ଭାଇ ଦୁଃସାହସିକ ବ୍ୟକ୍ତି । ଜଣେ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀଙ୍କ ତନୟ ହେଲେ ହେଁ ବିଜୁ ପଟ୍ଟନାୟକ ମୂଳରୁ ଜଣେ ଦେଶପ୍ରେମୀ ବ୍ୟକ୍ତି ଥିଲେ ଏବଂ କଲେଜରେ ପଢ଼ିବାବେଳେ ଜଣେ ପ୍ରଖ୍ୟାତ ଖେଳୁଆଡ଼ ହିସାବରେ ସୁଖ୍ୟାତି ଅର୍ଜନ କରିଥିଲେ । ସେ କଲେଜରେ ସ୍ପୋର୍ଟସ୍ ଚାମ୍ପିଆନ୍ ହୋଇଥିଲେ ।

୧୯୩୨ରେ ନର୍ମାଲ ସ୍କୁଲ ସମ୍ମୁଖରେ ଥିବା ସ୍ୱରାଜ ଆଶ୍ରମ ଉପରେ ସରକାରଙ୍କ ଆକ୍ରମଣ ବେଳେ ସେ ସଂଗ୍ରାମର ପୁରୋଭାଗରେ ରହି ଏସ୍.ପି. ଲେନ୍ ସାହେବଙ୍କ ଦ୍ୱାରା ଆହତ ହୋଇଥିଲେ । ମୁଁ ସେତେବେଳେ ସରକାରୀ କାଠଯୋଡ଼ି ଛାତ୍ରାବାସର ଅନ୍ତେବାସୀ । ଉକ୍ତ ଛାତ୍ରାବାସ ଆଜିକାଲି ଟ୍ରେନିଂ କଲେଜର ଛାତ୍ରୀନିବାସ । ପୁରୁଖା ଅନ୍ତେବାସୀମାନେ ବିଜୁ ପଟ୍ଟନାୟକଙ୍କୁ ଛାତ୍ରାବାସରେ ସାଷ୍ଟାମ କରିଥିଲେ ଏବଂ ଛାତ୍ରାବାସର ଡ଼ାକ୍ତର ରାଜକିଶୋର ନନ୍ଦ ତାଙ୍କୁ ଚିକିତ୍ସା କରି ଘରକୁ ପଠାଇବାର ବ୍ୟବସ୍ଥା କରିଥିଲେ । ଏସ୍.ପି. ଲେନ୍ ସାହେବ ପରେ ହକିଖେଳ ବେଳେ ବିଜୁ ପଟ୍ଟନାୟକଙ୍କ ଦ୍ୱାରା ଏପରି ଆହତ ହୋଇଥିଲେ ଯେ ତାଙ୍କ ଚାକିରୀକାଳ ପୂର୍ଣ୍ଣ ହେବାର ବହୁ ଆଗରୁ ଅବସର ନେଇ ସ୍ୱଗୃହକୁ ଫେରିଯିବା ଲାଗି ବାଧ୍ୟ ହୋଇଥିଲେ । ଏହା ବିଜୁବାବୁଙ୍କ ଦୁଃସାହସିକତାର ଏକ ଦୃଷ୍ଟାନ୍ତ ।

ସେ ସ୍ନାତକ ହେବା ପୂର୍ବରୁ ବିରଳା ପରିବାର ଦ୍ୱାରା ଚାଳିତ ଭାରତୀୟ ଜାତୀୟ ବିମାନ ପଥରେ ଉଡ଼ାଜାହାଜ ଚାଳକ ରୂପେ ଯୋଗଦେଲେ । ସେ ଜଣେ ପ୍ରଖ୍ୟାତ ବୈମାନିକ । ଉଡ଼ାଜାହାଜ ଚଳାଇବାରେ ସେ ଅତ୍ୟନ୍ତ ସିଦ୍ଧହସ୍ତ । ଇଣ୍ଡୋନେସିଆର ନେତୃବୃନ୍ଦ ହଲାଣ୍ଡ ଯୁଦ୍ଧରେ ବ୍ୟାପୃତ ଥିଲାବେଳେ ସେ ଯେପରି କୌଶଳରେ ହାଚା ପ୍ରଭୃତି ନେତୃବୃନ୍ଦଙ୍କୁ ବ୍ୟାଟେଭିଆରୁ ଉଡ଼ାଇଆଣି ଭାରତରେ ନିରାପଦରେ ରଖାଇଥିଲେ, ତାହା ଏକ ରୋମାଞ୍ଚକର କାହାଣୀ। ସେଥିପାଇଁ ତାଙ୍କୁ କାରାବରଣ କରିବାକୁ ପଡ଼ିଥିଲା ଏବଂ ଏହି ଘଟଣା ଯୋଗୁ ସେ ଗାନ୍ଧିଜୀ, ପଣ୍ଡିତ ନେହରୁ ଆଦି ନେତୃବୃନ୍ଦଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ଇଣ୍ଡୋନେସିଆ ସ୍ୱାଧୀନ ହେବା ପରେ ସେ ଦେଶର ସରକାର ତାଙ୍କୁ ସର୍ବଶ୍ରେଷ୍ଠ ଜାତୀୟ ସମ୍ମାନରେ ଭୂଷିତ କରିଥିଲେ । ୧୯୭୪ ଅଗଷ୍ଟ ୧୫ ତାରିଖ ଦିନ ବଙ୍ଗବନ୍ଧୁ ମୁଜିବୁର୍ ରହମନଙ୍କୁ ହତ୍ୟା କରାଯାଉଥିବା ଦୁଃସମ୍ବାଦ ପାଇ ସେ ତାଙ୍କୁ ମଧ୍ୟ କୌଶଳ କରି ଭାରତକୁ ଘେନି ଆସିବା ଲାଗି ଉଦ୍ୟମ କରିଥିଲେ । କିନ୍ତୁ ଦୁଃଖର କଥା ଯେ ଢାକାରେ ପହଞ୍ଚିବା ପୂର୍ବରୁ ରହମାନ ସପରିବାର ନିହତ ହୋଇ ସାରିଥିଲେ । ଏଭଳି ଦୁଃସାହିସିକତା ଅନନ୍ୟସାଧାରଣ ।

ଦ୍ୱିତୀୟ ବିଶ୍ୱଯୁଦ୍ଧପରେ ସେ ରାଜନୀତିରେ ଅଂଶଗ୍ରହଣ କଲେ । ପ୍ରଥମେ ସେ ଡ଼କ୍ଟର ମହତାବଙ୍କ ଶାସନ ବେଳେ କେବଳ ଯେ ବିଧାନସଭାକୁ ନିର୍ବାଚିତ ହୋଇଥିଲେ ସେତିକି ନୁହେଁ, ସେ ଓଡ଼ିଶାର ଶିଳ୍ପାୟନ ପ୍ରତି ମନୋନିବେଶ କରି ଚୌଦ୍ୱାରରେ ଓ.ଟି.ଏମ୍. ବା ଓଡ଼ିଶା ଲୁଗାକଳ ଓ କଳିଙ୍ଗ ଟିଉବସ୍ ସ୍ଥାପନ କରିଥିଲେ । ଏହି କାରଖାନା ଦୁଇଟି ଯୋଗୁ ଓଡ଼ିଶା ଶିଳ୍ପ ମାନଚିତ୍ରରେ ଉଲ୍ଲେଖଯୋଗ୍ୟ ସ୍ଥାନ ଅଧିକାର କରିଥିଲା । କେବଳ ଶିଳ୍ପ ପ୍ରତିଷ୍ଠା ପ୍ରତି ମନୋଯୋଗୀ ହୋଇଥିଲେ ସେ ଭାରତର ଧନାଢ଼୍ୟ ଶିଳ୍ପପତିମାନଙ୍କ ମଧ୍ୟରେ ଅନ୍ୟତମ ହୋଇଥାନ୍ତେ, କିନ୍ତୁ ଜଣେ ରାଜନୀତିଜ୍ଞ ହିସାବରେ ଓଡ଼ିଶାର ଚିରାଚରିତ ରାଜନୈତିକ କନ୍ଦଳରେ ଲିପ୍ତ ହୋଇ ୧୯୫୯ରେ ସେ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ରୂପେ କେବଳ ଯେ ଡ଼କ୍ଟର ମହତାବଙ୍କ ନେତୃତ୍ୱରେ ଗଠିତ କଂଗ୍ରେସ- ସ୍ୱତନ୍ତ୍ର ଦଳର ମନ୍ତ୍ରିମଣ୍ଡଳକୁ ଭଙ୍ଗାଇ ଦେଇଥିଲେ ସେତିକି ନୁହେଁ; ଜିଦ୍‌ଖୋର ଭାବରେ ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହେରୁଙ୍କୁ ପ୍ରବର୍ତ୍ତାଇ

ଜୁନ୍ ମାସରେ ନିର୍ବାଚନ କରାଇ ସ୍ୱାଧୀନ ଭାରତରେ ଓଡ଼ିଶା ପାଇଁ କଂଗ୍ରେସଦଳ ନିମିତ୍ତ ବିପୁଳ ସଂଖ୍ୟାଗରିଷ୍ଠତା ହାସଲ କରି ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲେ । ଏହି ନିର୍ବାଚନରେ ତାଙ୍କର ବିଶିଷ୍ଟ ସହଯୋଗୀ ଥିଲେ ସ୍ୱର୍ଗତ ବୀରେନ ମିତ୍ର ଓ ଶ୍ରୀ ନୀଳମଣି ରାଉତରାୟ । ସେ ଦିହେଁ ପଟ୍ଟନାୟକ ମନ୍ତ୍ରିମଣ୍ଡଳରେ ଯଥାକ୍ରମେ ଉପମୁଖ୍ୟମନ୍ତ୍ରୀ ଓ ସ୍ୱରାଷ୍ଟ୍ରମନ୍ତ୍ରୀ ଭାବେ କାର୍ଯ୍ୟଭାର ଗ୍ରହଣ କରିଥିଲେ । ତାଙ୍କ ଶାସନ ବିରୁଦ୍ଧରେ ନାନାଦି ଅଭିଯୋଗ ଶୁଣାଯିବାରୁ ସେ ୧୯୬୩ ଅକ୍ଟୋବର ଦୁଇ ତାରିଖରେ କାମରାଜ ଯୋଜନା ଅନୁସାରେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇ ଯୋଜନାବୋର୍ଡ଼ର ଅଧ୍ୟକ୍ଷ ହେଲେ ଏବଂ ବୀରେନ୍ ମିତ୍ର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲେ । ୧୯୬୪ର ବିରାଟ ଛାତ୍ର ଆନ୍ଦୋଳନ ପରେ ବୀରେନ୍ ମିତ୍ର ୧୯୬୫ ମାର୍ଚ୍ଚ ମାସରେ ମୁଖ୍ୟମନ୍ତ୍ରୀ ଦାୟିତ୍ୱରୁ ଅପସରି ଗଲେ ଏବଂ ରାଜସ୍ୱମନ୍ତ୍ରୀ ସଦାଶିବ ତ୍ରିପାଠୀ ମୁଖ୍ୟମନ୍ତ୍ରୀ ଆସନ ମଣ୍ଡନ କଲେ । ୧୯୬୭ରେ ଚତୁର୍ଥ ସାଧାରଣ ନିର୍ବାଚନ ହେବା ପର୍ଯ୍ୟନ୍ତ ତ୍ରିପାଠୀ ଉକ୍ତ ଦାୟିତ୍ୱରେ ଥିଲେ । ୧୯୬୧ ରୁ ୧୯୬୭ ପର୍ଯ୍ୟନ୍ତ ତିନିଜଣ ବ୍ୟକ୍ତି ମୁଖ୍ୟମନ୍ତ୍ରୀ ଆସନ ମଣ୍ଡନ କରିଥିଲେ ହେଁ ସାଧାରଣ ଲୋକେ ଏହାକୁ ବିଜୁ ପଟ୍ଟନାୟକଙ୍କ ମନ୍ତ୍ରିମଣ୍ଡଳ ବୋଲି ନାମ କରଣ କରୁଥିଲେ ।

ଏହି ମନ୍ତ୍ରିମଣ୍ଡଳର କାର୍ଯ୍ୟକାଳକୁ ଓଡ଼ିଶାର ଶିକ୍ଷାଜଗତର ସୁବର୍ଣ୍ଣ ଯୁଗ କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ଛଅବର୍ଷ ମଧ୍ୟରେ ଓଡ଼ିଶାର ଶିକ୍ଷା ଇତିହାସରେ ଅଭୂତପୂର୍ବ ପ୍ରଗତି ସାଧିତ ହୋଇଥିଲା। ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ବହନ କରିବା ମାତ୍ରକେ ରେଭେନ୍‌ସା କଲେଜରେ ନୈଶ୍ୟ ମହାବିଦ୍ୟାଳୟ ଏବଂ ଭୁବନେଶ୍ୱରରେ ଆଞ୍ଚଳିକ ଶିକ୍ଷା କଲେଜ ଓ ରାଉରକେଲାର ଆଞ୍ଚଳିକ ଯାନ୍ତ୍ରିକ ମହାବିଦ୍ୟାଳୟ ପ୍ରତିଷ୍ଠା କରାଇଥିଲେ । ତଦାନୀନ୍ତନ କୁଳପତି ଡକ୍ଟର ପ୍ରାଣକୃଷ୍ଣ ପରିଜାଙ୍କ ବ୍ୟକ୍ତିତ୍ୱ ଯୋଗୁ ସେ କାଳରେ ଥିବା ଓଡ଼ିଶାର ଦ୍ୱୈତ ରାଜଧାନୀ କଟକ ଓ ଭୁବନେଶ୍ୱରରେ ଯଥାକ୍ରମେ ରେଭେନ୍‌ସା ଓ ବି.ଜେ.ବି. କଲେଜରେ ବିଶ୍ୱ ବିଦ୍ୟାଳୟ ତରଫରୁ ଦୁଇଗୋଟି ନୈଶ୍ୟ ମହାବିଦ୍ୟାଳୟ ପ୍ରତିଷ୍ଠିତ ହେଲା । ଆଞ୍ଚଳିକତାର ଚାପ ଯୋଗୁଁ ପରବର୍ତ୍ତୀ ସ୍ତରରେ ବ୍ରହ୍ମପୁରର ଖଲିକୋଟ କଲେଜ ଓ ସମ୍ବଲପୁରର ଗଙ୍ଗାଧର

ମେହର କଲେଜରେ ନୈଶ୍ୟ କଲେଜ ପ୍ରତିଷ୍ଠିତ ହେଲା ଏବଂ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ବା ଭାରତ ସରକାର ସେଥିପାଇଁ ଅର୍ଥ ମଞ୍ଜୁର ନକଲେ ଓଡ଼ିଶା ସରକାର ଏହି ଦୁଇ କଲେଜର ବ୍ୟୟଭାର ବହନ କରିବେ ବୋଲି ସେ ସ୍ପଷ୍ଟ ଭାବରେ ଘୋଷଣା କରିଥିଲେ । କେବଳ ତାଙ୍କରି ନେତୃତ୍ୱ ଯୋଗୁଁ ଭାରତର ଚାରିଗୋଟି ଆଞ୍ଚଳିକ ଶିକ୍ଷା କଲେଜ ମଧ୍ୟରୁ ଗୋଟିଏ ଓଡ଼ିଶାରେ ଓ ଅଳ୍ପ ସଂଖ୍ୟକ ଆଞ୍ଚଳିକ ଯାନ୍ତ୍ରିକ ମହାବିଦ୍ୟାଳୟ ମଧ୍ୟରୁ ଗୋଟିଏ ରାଉରକେଲାରେ ପ୍ରତିଷ୍ଠିତ ହୋଇଛି । ତାଙ୍କ ମନ୍ତ୍ରିମଣ୍ଡଳରେ ଲିଙ୍ଗରାଜ ପାଣିଗ୍ରାହୀ ବାଚସ୍ପତି ଥିଲେ । ପୂର୍ବତନ ମୁଖ୍ୟ ନ୍ୟାୟାଧୀଶ ଓ ମହାଧିବକ୍ତା ରୂପେ ବିଶେଷତଃ ବହୁକାଳ ଧରି ଖଲ୍ଲିକୋଟ କଲେଜ ପରିଚାଳନା ସମିତିର ଉପାଧ୍ୟକ୍ଷ ରୂପେ ଅଭିଜ୍ଞତା ଅର୍ଜନ କରିବାରୁ ପୁନଶ୍ଚ ଜଣେ ବୟସ୍କ ବ୍ୟକ୍ତି ହୋଇଥିବାରୁ ସେ ଶିକ୍ଷା ଓ ଆଇନ କ୍ଷେତ୍ରରେ ସରକାରଙ୍କୁ ପରାମର୍ଶ ଦେଇଥିଲେ । ପାଣିଗ୍ରାହୀ ୧୯୫୭ରୁ ୧୯୫୯ ପର୍ଯ୍ୟନ୍ତ ଓଡ଼ିଶାର ଶିକ୍ଷା ଓ ଆଇନ ମନ୍ତ୍ରୀ ଥିଲେ ଏବଂ ନୀତି ପ୍ରଣୟନ କରିଥିଲେ ଯେ ସରକାର ଆଉ ସରକାରୀ ମହାବିଦ୍ୟାଳୟ ପ୍ରତିଷ୍ଠା କରିବେ ନାହିଁ। କିନ୍ତୁ କୌଣସି ସ୍ଥାନରେ ଶିକ୍ଷାପ୍ରେମୀମାନେ ବେସରକାରୀ ମହାବିଦ୍ୟାଳୟ ପ୍ରତିଷ୍ଠା କରିବାଲାଗି ବ୍ୟବସ୍ଥା କଲେ ସରକାର ସେମାନଙ୍କୁ ନାନାଭାବରେ ଉତ୍ସାହିତ କରିବେ । ଏହି ନୀତି ପଟ୍ଟନାୟକ ମନ୍ତ୍ରିମଣ୍ଡଳ ଅମଳରେ ବିରାଟ ଆକାରରେ କାର୍ଯ୍ୟକାରୀ ହେଲା ଏବଂ ଏହି ଛ'ଅ ବର୍ଷ ମଧ୍ୟରେ ୩୪ଟି ବେସରକାରୀ କଲେଜ ଓଡ଼ିଶାରେ ସ୍ଥାପିତ୍ ହୋଇଥିଲା । ଉକ୍ତ କଲେଜଗୁଡ଼ିକ ଆଜି ବିରାଟ ଅନୁଷ୍ଠାନରେ ପରିଣତ ହୋଇଛି । କେବଳ ତାଙ୍କ ଅମଳରେ ଏହି କଲେଜଗୁଡ଼ିକ ପ୍ରତିଷ୍ଠିତ ହେଲା ବୋଲି ସେଗୁଡ଼ିକୁ ଅନୁଦାନ ଦେବା ବିଷୟରେ ପରବର୍ତ୍ତୀ ସରକାର ବହୁ ଅସୁବିଧା ସୃଷ୍ଟି କରିଥିଲେ, କିନ୍ତୁ କାଳକ୍ରମେ ଏହି ଅସୁବିଧା ଦୂରୀଭୂତ ହୋଇଛି । ସେ ପୁନଶ୍ଚ ନୀତିବ୍ୟାଖ୍ୟା କଲେ ଯେ କୌଣସି ମହିଳା କଲେଜ ବେସରକାରୀ ପରିଚାଳନାରେ ରହିବ ନାହିଁ। ଏହି ନୀତି ଅନୁସାରେ ୧୯୬୨ରେ ବେସରକାରୀ ଉଦ୍ୟମରେ ପ୍ରତିଷ୍ଠିତ ହୋଇଥିବା ପୁରୀ, ବାଲେଶ୍ୱର, ବଲାଙ୍ଗୀର ଓ ସମ୍ବଲପୁରରେ ଥିବା ୪ଗୋଟି ମହିଳା ମହାବିଦ୍ୟାଳୟର ପରିଚାଳନା ଦାୟିତ୍ୱ ସରକାର ହାତକୁ ନେଇଥିଲେ । ସେହିପରି ଢେଙ୍କାନାଳ, ସୁନ୍ଦରଗଡ଼, କେନ୍ଦୁଝର ଓ

କଳାହାଣ୍ଡିରେ ପ୍ରତିଷ୍ଠିତ ହୋଇଥିବା ଚାରିଗୋଟି ବେସରକାରୀ କଲେଜର ପରିଚାଳନା ଦାୟିତ୍ୱ ସରକାର ହାତକୁ ନେଇଯାଇଥିଲେ । ସେ କହୁଥିଲେ ପ୍ରତ୍ୟେକ ଜିଲ୍ଲାର ମୁଖ୍ୟାଳୟରେ ଗୋଟିଏ ଗୋଟିଏ ସରକାରୀ କଲେଜ ରହିବ ।

ଶିକ୍ଷା କ୍ଷେତ୍ରରେ ତାଙ୍କର ଉଲ୍ଲେଖଯୋଗ୍ୟ ଅବଦାନ ଥିଲା ତିନିଗୋଟି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା । ପୂର୍ବ ମନ୍ତ୍ରିମଣ୍ଡଳର ବିକାଶମନ୍ତ୍ରୀ ଡ଼କ୍ଟର ରାଧାନାଥ ରଥଙ୍କ ପରିକଳ୍ପନା ଅନୁସାରେ ସେ ୧୯୬୨ ରେ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ଏ କ୍ଷେତ୍ରରେ ଶ୍ରୀ ପବିତ୍ରମୋହନ ପ୍ରଧାନଙ୍କ ନେତୃତ୍ୱ ଭୁଲିଯିବାର ନୁହେଁ । ଠିକ୍ ସେହି ଭଳି ଆଞ୍ଚଳିକ ଆନ୍ଦୋଳନ ଫଳ ସ୍ୱରୂପ ସେ ବ୍ରହ୍ମପୁର ଓ ସମ୍ବଲପୁରରେ ଦୁଇଟି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିବାଲାଗି ନେତୃତ୍ୱ ଗ୍ରହଣ କରିଥିଲେ । ଏ କ୍ଷେତ୍ରରେ ବୀରେନ୍ ମିତ୍ର, ସଦାଶିବ ତ୍ରିପାଠୀ ଓ ଶିକ୍ଷାମନ୍ତ୍ରୀ ଶ୍ରୀ ସତ୍ୟପ୍ରିୟ ମହାନ୍ତିଙ୍କ ଅବଦାନ ଉଲ୍ଲେଖଯୋଗ୍ୟ । ସେ ଗୋଟିଏ ବୈଷୟିକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିବାଲାଗି ଯୋଜନା କରିଥିଲେ ।

୧୯୬୭ ପରେ ବିଜୁ ପଟ୍ଟନାୟକ ନାନା ରାଜନୈତିକ ବିବାଦର କେନ୍ଦ୍ରବିନ୍ଦୁ ହୋଇଛନ୍ତି ସତ୍ୟ; କିନ୍ତୁ ଶିକ୍ଷା ପ୍ରସାର କ୍ଷେତ୍ରରେ ତାଙ୍କର ଅମୂଲ୍ୟ ଅବଦାନ ରହିଛି ଏବଂ ତାଙ୍କର ଅନ୍ୟ କୃତିମାନଙ୍କ ମଧ୍ୟରେ ପାରାଦ୍ୱୀପ ବନ୍ଦର ଓ କ୍ଷିପ୍ର ରାଜପଥ ନିର୍ମାଣ ଓଡ଼ିଶା ଇତିହାସରେ ତାଙ୍କୁ ଅମର କରି ରଖିଥିବ

# ମୋ ଦୃଷ୍ଟିରେ ବିଜୁବାବୁ

## ପ୍ରଶାନ୍ତ ପଟ୍ଟନାୟକ

ଏକଦା ଜନୈକ ରାଜନୀତିଜ୍ଞଙ୍କ ସହ ଆଲୋଚନା ସମୟରେ ସେ ମନ୍ତବ୍ୟ କରିଥିଲେ, ''ଓଡ଼ିଶାରେ ବିଜୁ ବାବୁଙ୍କର କେହିଁ ବନ୍ଧୁ ନାହାନ୍ତି । କେବଳ ଅଛନ୍ତି ସ୍ତାବକ ଅଥବା ଶତ୍ରୁ ।''

ଯେଉଁ ରାଜନୀତିଜ୍ଞ ଏହି ମତବ୍ୟକ୍ତ କରିଥିଲେ, ସେ ନିଜେ ହେଉଛନ୍ତି ବିଜୁବାବୁଙ୍କର ଜଣେ କଟୁ ସମାଲୋଚକ । ନିଜ ଉକ୍ତିର ଯଥାର୍ଥତା ପ୍ରତିପାଦନ କରିବାକୁ ଯାଇଁ ସେ କହିଁଥିଲେ, ''ବିଜୁବାବୁ ଏଭଳି ଜଣେ ଲୋକ ଯାହାଙ୍କ ସହ ବନ୍ଧୁତା କରିବା ଲାଗି ଓଡ଼ିଶାର କୌଣସି ରାଜନୀତିଜ୍ଞ ଆଗେଇ ଆସନ୍ତି ନାହିଁ । କାରଣ ସେ ଖୁବ୍ ରୋକ୍‌ଠୋକ୍ ଭାବରେ ମୁହେଁ ମୁହେଁ ଅନେକ ଅପ୍ରିୟ ସତ୍ୟ କହିପକାନ୍ତି ଓ ବେଳେବେଳେ କଠୋର ବ୍ୟବହାର ପ୍ରଦର୍ଶନ କରନ୍ତି । ବନ୍ଧୁଭାବରେ କେହିଁ ତାଙ୍କୁ ପରାମର୍ଶ ଦେଲେ ସେ ତାହା ପ୍ରାୟ ଗ୍ରହଣ କରନ୍ତି ନାହିଁ । ଫଳରେ ତାଙ୍କର କେହିଁ ବନ୍ଧୁ ତିଷ୍ଠି ରହନ୍ତି ନାହିଁ । କେବଳ ଶତ୍ରୁ ଓ ସ୍ତାବକଙ୍କୁ ନେଇ ବିଜୁବାବୁ ରାଜନୀତି ଦୁନିଆରେ ବଞ୍ଚିରହିଛନ୍ତି ।

ତାଙ୍କର ମନ୍ତବ୍ୟ ଶୁଣି ସେଠାରେ ଉପସ୍ଥିତ ଥିବା ଜନୈକ ଅଣଓଡ଼ିଆ ସାମ୍ବାଦିକ ବନ୍ଧୁ କହିଥିଲେ, ''ହଁ...ମୁଁ ଓଡ଼ିଶା ଆସିବା ଦିନୁ ତାହାହିଁ ଦେଖୁଛି । ବିଜୁବାବୁଙ୍କ ଗୁଣମୁଗ୍ଧ ଅନେକ ସ୍ତାବକ ରହିଛନ୍ତି ଓ ଅନେକ ଅସହିଷ୍ଣୁ ଶତ୍ରୁ ମଧ୍ୟ ଅଛନ୍ତି । ବନ୍ଧୁ ହୁଏତ କମ୍ । ପ୍ରକୃତ ବନ୍ଧୁ ହୁଏତ କିଏ ଅଛନ୍ତି କି ନାଁ ଜାଣେନାଁ । କାରଣ ବନ୍ଧୁତା କେବଳ ସମାସ୍କନ୍ଧ ବ୍ୟକ୍ତିଙ୍କ ସହ କରାଯାଇଥାଏ । ଓଡ଼ିଶାରେ ବିଜୁବାବୁଙ୍କ ଦୃଷ୍ଟିଭଙ୍ଗି, ଚିନ୍ତାଧାରା ଓ ବ୍ୟକ୍ତିତ୍ୱ ଦିଗରେ କିଏ ବା ସମକକ୍ଷ ଅଛନ୍ତି, ଯେ ସେ ତାଙ୍କ ସହ ଘନିଷ୍ଠ ବନ୍ଧୁତା କରିବାଲାଗି ଆଗେଇ ଆସିବେ ? ....ଦୁଃଖର କଥା ଯେ ବିଜୁବାବୁଙ୍କ ଭଳି ଜଣେ ବିରାଟ ଲୋକ ଓଡ଼ିଶାଭଳି ଏକ କ୍ଷୁଦ୍ରରାଜ୍ୟରେ ଜନ୍ମଗ୍ରହଣ କଲେ । ସେ ଯଦି ବଙ୍ଗଳା, ବମ୍ବେ, ଉତ୍ତର ପ୍ରଦେଶ ବା ପଞ୍ଜାବରେ ଜନ୍ମ ହୋଇଥାନ୍ତେ, ତେବେ ଆଜି ଭାରତରେ ଅନେକଉଚ୍ଚପଦବୀର ଅଧିକାର କରି ବସିଥାଆନ୍ତେ ।''

ସାମ୍ବାଦିକ 'ବନ୍ଧୁଙ୍କର ଏହି ଉକ୍ତି ଶୁଣି, ରାଜନୈତିକ ବ୍ୟକ୍ତିଜଣକ କଥାର ମୋଡ଼ ବଦଳାଇଥିଲେ । ଏହା ଅନେକ ଦିନର ତଳର କଥା । ବୋଧହୁଏ ୧୯୭୩ ବା ୭୪ ମସିହାର କଥା ।

ବିଜୁବାବୁ ଓଡ଼ିଶା ରାଜନୀତିରେ ଜଣେ ବିବଦମାନ ବ୍ୟକ୍ତିଭାବରେ ପ୍ରାୟ ତିନି ଦଶକରୁ ଉର୍ଦ୍ଧ୍ୱକାଳ ଧରି ଆଲୋଚିତ ଓ ସମାଲୋଚିତ ହୋଇଆସୁଛନ୍ତି । ଅନେକ ତାଙ୍କୁ ''ଓଡ଼ିଶାର ଗର୍ବ ଓ ଗୌରବ'' ବୋଲି କହି ପ୍ରାକ୍ ସ୍ୱାଧିନତା କାଳରେ ସେ ଇଂରେଜ ସରକାରଙ୍କ ଅଧିନରେ ବୈମାନିକ ଥାଇ କିଭଳି ସ୍ୱାଧୀନତା ଆନ୍ଦୋଳନକାରୀମାନଙ୍କୁ ସାହାଯ୍ୟ କରୁଥିଲେ ଓ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେବାଲାଗି ଜନସାଧାରଣଙ୍କୁ ଆହ୍ୱାନ ଦେଇ ପ୍ରଚାରପତ୍ରମାନ ଦୁର୍ଗମ ଅଞ୍ଚଳ ସବୁରେ ଆକାଶ ମାର୍ଗରୁ ପକାଇବା ସଙ୍ଗେ ସଙ୍ଗେ ବ୍ରିଟିଶ୍ ପୋଲିସ୍ ଆଖିରେ ଧୂଳି ଦେଇ ବଣ ଜଙ୍ଗଲରେ ଲୁଚି ରହିଥିବା ବହୁ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀଙ୍କୁ ସାହାଯ୍ୟ କରୁଥିଲେ ତାହା ଉଲ୍ଲେଖକରି ପ୍ରଶଂସାରେ ଶତମୁଖହୋଇ ଉଠିଥାନ୍ତି । ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ ସଂଗ୍ରାମୀମାନଙ୍କୁ ସାହାଯ୍ୟ କରିବା ଅଭିଯୋଗରେ ବିଜୁବାବୁ ଗିରଫ ହୋଇ କାଶ୍ମୀର ଜେଲ୍‌ରେ ଥିବା ସମୟରେ ତାଙ୍କୁ ବରଫ ଉପରେ ଶୁଆଇ କିଭଳି ଅତ୍ୟାଚାର କରାଯାଇଥିଲା, ତାହାର ବର୍ଣ୍ଣନା ମୁଁ ''ପ୍ୟାଟ୍ରିୟଟ୍'' ସମ୍ବାଦପତ୍ରର ପୂର୍ବତନ ସଂପାଦକ ଶ୍ରୀ ପି. ବିଶ୍ୱନାଥଙ୍କ ଠାରୁ ଶୁଣିଛି । ଶ୍ରୀ ବିଶ୍ୱନାଥ କାଶ୍ମୀର ଜେଲରେ ବିଜୁବାବୁଙ୍କ ସହ ବନ୍ଦୀ ହୋଇଥିଲେ ।

ବିଜୁବାବୁଙ୍କ ଦୁଃସାହସିକ କାର୍ଯ୍ୟ କଳାପ ସଂପର୍କରେ ଶ୍ରୀମତୀ ଅରୁଣା ଆସଫ୍ ଅଲ୍ଲୀଙ୍କଠାରୁ ବହୁ ରୋମାଞ୍ଚକର କାହାଣୀ ମଧ୍ୟ ଶୁଣିଛି । ଦିଲ୍ଲୀର ଓଲ୍ଡ଼ ଥିଏଟର ରୋଡ଼ରୁ ପ୍ରକାଶିତ ''ଲିଙ୍କ'' ସମ୍ବାଦ ସାପ୍ତାହିକ ପତ୍ରିକା ବାହାଦୁର ସାହାଜାଫର ମାର୍ଗରେ ନିଜସ୍ୱ କୋଠା ନିର୍ମାଣ କରିବା ଲାଗି ଯେତେବେଳେ ପ୍ରସ୍ତାବ ହୋଇଥିଲା, ଡ଼ଃ ବାଲିଗା, ଅରୁଣାଜୀ, ଏଡ଼ାଟାଟା ନାରାୟଣ ଭି. କେ. କ୍ରୀଷ୍ଣମେନନ୍, ପି. ବିଶ୍ୱନାଥ ଓ ବିଜୁବାବୁ ପ୍ରମୁଖ ବସି ଆଲୋଚନା କରିବା ସମୟରେ ସେମାନଙ୍କ ସମ୍ମୁଖରେ ପ୍ରସ୍ତାବିତ 'ଲିଙ୍କ ହାଉସ୍'ର ନକ୍‌ସା ଉପସ୍ଥାପନା କରାଯାଇଥିଲା । ମାତ୍ର ତାହା ଦେଖିବା ମାତ୍ରେ ବିଜୁବାବୁ ପ୍ରତିକ୍ରିୟା ପ୍ରକାଶ କରି କହିଥିଲେ, ''ଏଇଟା ଗୋଟାଏ

ସମ୍ବାଦ ପତ୍ରର ଅଫିସ୍ ନା ଗୋଦାମ ଘରର ନକ୍ସା ?.....''ଲିଙ୍କ ହାଉସ୍''ର ନକ୍ସା ବଦଳାଇବାକୁ ହେବ । ଅନୂନ୍ୟ ଏକ ଛଅ ମହଲା ବିଶିଷ୍ଟ ଘର କରିବାକୁ ପଡ଼ିବ ।''

ତାଙ୍କ କଥା ଶୁଣି ଅଣୁଣାଜୀ କହିଥିଲେ, 'ବିଜୁ ! ତୁମେ ଯେଉଳି ହେଙ୍ଗା ଲୋକ ତୁମ ଚିନ୍ତାଧାରା ମଧ୍ୟ ଠିକ୍ ସେହିଭଳି । ଏକ ବଡ଼ କୋଠାଲାଗି ଏତେ ଟଙ୍କା ଆସିବ ବା କୁଆଡୁ ?''

ବିଜୁବାବୁ ସେତେବେଳେ କହିଥିଲେ, ''ତା'ର ବ୍ୟବସ୍ଥା ଡ଼ଃ ବାଲିଗା ଓ ମୁଁ କରିବୁ, ଆମେ ବ୍ୟାଙ୍କରୁ ଋଣ ନେବା, ଲିଙ୍କର ସେୟାର (Share) ବିକିବା । ଟଙ୍କା ସମସ୍ୟା ରହିବ ନାହିଁ ।''

ପ୍ରକୃତରେ ଟଙ୍କା ''ଲିଙ୍କ୍ ହାଉସ୍'' ନିର୍ମାଣ ଲାଗି ଅନ୍ତରାୟ ସୃଷ୍ଟି କରି ନଥିଲା । ଅରୁଣାଜୀ ଏବେ ବି ଏକଥା କହିବାବେଳେ ଭାବପ୍ରବଣ ହୋଇଉଠନ୍ତି ଓ ତାଙ୍କ କଣ୍ଠ ବାଷ୍ପରୁଦ୍ଧ ହୋଇ ଉଠେ ।

ବିଜୁବାବୁଙ୍କ ସଂପର୍କରେ ବହୁ ନିନ୍ଦା ପ୍ରଶଂସା ଶୁଣିଛି । ତାଙ୍କ ରାଜନୈତିକ ଓ ଅର୍ଥନୈତିକ ଉତ୍ଥାନ ପତନ ମଧ୍ୟ ଦେଖିଛି । ସେ ହୁଏତ ଓଡ଼ିଶାରେ ଏକମାତ୍ର ରାଜନୀତିଜ୍ଞ ଯିଏ କି ରାଜନୀତି ଯୋଗୁଁ ନିଜର ସମସ୍ତ ବ୍ୟବସାୟ ଓ ଶିଳ୍ପକୁ ଜଳାଞ୍ଜଳି ଦେଇଛନ୍ତି । ଅନ୍ୟମାନେ ରାଜନୀତି କରି ପ୍ରଭୂତ ସମ୍ପତ୍ତିର ମାଲିକ ହୋଇଥିବା ସ୍ଥଳେ ବିଜୁବାବୁଙ୍କ କ୍ଷେତ୍ରରେ ତାହାର ବୈପରିତ୍ୟ ଦେଖାଦେଇଛି ।

ଛାତ୍ରଜୀବନରେ ୧୯୬୪ ମସିହାରେ ବିଜୁବାବୁଙ୍କ ବିରୁଦ୍ଧରେ ପ୍ରତ୍ୟକ୍ଷ ଆନ୍ଦୋଳନରେ ଯୋଗ ଦେଇ ଚନ୍ଦନପଡ଼ିଆଠାରେ ତାଙ୍କ ଉପରେ ଶାରୀରିକ ଆକ୍ରମଣ କରିବାରେ ମଧ୍ୟ ମୁଁ ଭୂମିକା ଗ୍ରହଣ କରିଛି ।

ବିଜୁବାବୁଙ୍କ ବ୍ୟକ୍ତିତ୍ୱକୁ ତାଙ୍କର ଶିଳ୍ପ ପ୍ରତିଷ୍ଠା ଓ ରାଜନୀତିର ସୀମା ମଧ୍ୟରେ ସୀମିତ ରଖି ସମସ୍ତେ ମୂଲ୍ୟାୟନ କରୁଥିବା ସମୟରେ ମୁଁ କେବଳ ଦେଖିଛି ତାଙ୍କର ସବୁଠାରୁ କୋମଳତମ ଦିଗଟିକୁ । ତାହାହିଁ ତାଙ୍କର ମାନବିକତା । କଳିଙ୍ଗ ଫାଉଣ୍ଡେସନ୍ ତରଫରୁ ହଜାର ହଜାର ଗରିବ ଛାତ୍ରଛାତ୍ରୀଙ୍କୁ ବୃତ୍ତି ଓ ସାହାଯ୍ୟ ପ୍ରଦାନ ପାଇଁ ନୁହେଁ, ଅଥବା ଅନେକ ଅସହାୟ ରୋଗୀଙ୍କୁ ଆର୍ଥିକ ସାହାଯ୍ୟ ଦାନ କିମ୍ବା ଆନ୍ତର୍ଜାତୀୟ ଖ୍ୟାତିଲାଭ ପାଇଁ କଳିଙ୍ଗ ପୁରସ୍କାର

ଘୋଷଣା କରିଥିବା ଯୋଗୁ ନୁହେଁ; ମୁଁ ବିଜୁବାବୁଙ୍କୁ ସମ୍ମାନ ଓ ଶ୍ରଦ୍ଧାକରିବାର ଏକମାତ୍ର କାରଣ ହେଉଛି ତାଙ୍କର ମାନବିକତା ।

ଦୀର୍ଘ ୨୧ ବର୍ଷର ସାମ୍ବାଦିକ ଜୀବନରେ ବହୁ ମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀଙ୍କ ଘନିଷ୍ଠ ସମ୍ପର୍କରେ ଆସିଛି ଓ ସେମାନଙ୍କ ସହ ଏକତ୍ର ଗସ୍ତ କରିଛି । ଅନ୍ୟରାଜନୀତିଜ୍ଞମାନେ ଗସ୍ତ ସମୟରେ ବିଭିନ୍ନ ସ୍ଥାନରେ ଆୟୋଜିତ ଭୋଜି ଅଥବା ଲଞ୍ଚ ଓ ଡ଼ିନର ଖାଇ ଆରାମରେ ବିଶ୍ରାମ କରିଥାନ୍ତି । ମାତ୍ର ବିଜୁବାବୁ ହୁଏତ ଏକମାତ୍ର ବ୍ୟକ୍ତି ଯେ କି ନିଜେ ଖାଇବା ପୂର୍ବରୁ ତାଙ୍କ ସହ ଯାଇଥିବା ପ୍ରତ୍ୟେକଙ୍କର ଖାଇବାପିଇବା କଥା ବୁଝନ୍ତି । ସେ ଖାଇବା ଆଗରୁ ଡ୍ରାଇଭର ଓ ଅନ୍ୟମାନେ ଖାଇବାଲାଗି ବ୍ୟବସ୍ଥା କରିବା ପରେ ଖାଆନ୍ତି ଅଥବା ଏକତ୍ର ଖାଆନ୍ତି ।

ଭି.ଆଇ.ପି.ମାନଙ୍କ ନିମନ୍ତେ ଖାଇବାର ବ୍ୟବସ୍ଥା ସମୟରେ ସେମାନେ ଯେ ଭି.ଆଇ.ପି. ଏହା ପ୍ରତିପାଦନ ଲାଗି ଓଡ଼ିଶାରେ ଅଧିକାଂଶ ଭି.ଆଇ.ପି.ଙ୍କ ନିମନ୍ତେ ସ୍ୱତନ୍ତ୍ର ଖାଦ୍ୟର ବ୍ୟବସ୍ଥା ହୋଇଥାଏ । ଏପରି କି ମୁଁ ଅନେକ ଭି.ଆଇ.ପି.ଙ୍କୁ ଦେଖିଛି ସେମାନେ ପଂକ୍ତି ଭୋଜନରେ କେତେକ ସ୍ୱତନ୍ତ୍ର ଖାଦ୍ୟ ଖାଉଥିବା ସମୟରେ ଅନ୍ୟମାନଙ୍କ ପାଇଁ ଭିନ୍ନ ଖାଦ୍ୟ ପରିବେଷଣ କରାଯାଇଥାଏ ଓ ସେମାନେ ଏହି ସ୍ୱତନ୍ତ୍ର ଖାଦ୍ୟ ପାଇଁ ଗର୍ବ ଅନୁଭବ କରିଥାଆନ୍ତି । ମାତ୍ର ବିଜୁବାବୁ ହେଉଛନ୍ତି ସେମାନଙ୍କଠାରୁ ଏକ ବ୍ୟତିକ୍ରମ । ପଂକ୍ତିଭୋଜନ ସମୟରେ ହେଉ ଅଥବା ସେ ଗସ୍ତ କରିବା ସମୟରେ ଖାଇବାଲାଗି ଯେଉଁ ବ୍ୟବସ୍ଥା ହୋଇଥାଏ, ସେଥିରେ ତାଙ୍କପାଇଁ ସ୍ୱତନ୍ତ୍ର ଖାଦ୍ୟର ବ୍ୟବସ୍ଥା ହୋଇଥିଲେ ସେ ଉତ୍‌କ୍ଷିପ୍ତ ହୋଇଉଠନ୍ତି ଓ ତାହା ବର୍ଜନ ନ କରିଥିବା ବହୁ ଦୃଷ୍ଟାନ୍ତ ମୁଁ ଦେଖିଛି ।

୧୯୬୯ ମସିହା ଶେଷ ଭାଗରେ ଓଡ଼ିଶାର ସ୍ୱତନ୍ତ୍ର-ଜନକଂଗ୍ରେସ ସରକାର ବିରୁଦ୍ଧରେ "ଓଡ଼ିଶା ବଞ୍ଚାଅ" ଆନ୍ଦୋଳନ ଆୟୋଜନ କରିବାଲାଗି ବିଜୁବାବୁ ଜନମତ ସୃଷ୍ଟି କରିବା ନିମନ୍ତେ ଓଡ଼ିଶା ସାରା ଗସ୍ତ କରୁଥାନ୍ତି । ସେତେବେଳେ "କଳିଙ୍ଗ"ର ପ୍ରତିନିଧି ଭାବରେ ମୋତେ ଅନେକ ସମୟରେ ତାଙ୍କ ସହ ଗସ୍ତ କରିବାକୁ ପଡୁଥାଏ । ପୁରୀଜିଲ୍ଲାର ଜଗିପଡ଼ାଠାରେ ପୂର୍ବତନ ବିଧାୟକ ଶ୍ରୀ ରଘୁନାଥ ରାୟ ମଧ୍ୟାହ୍ନ ଭୋଜନର ବ୍ୟବସ୍ଥା କରିଥାନ୍ତି । ବିଜୁବାବୁ

ଚିଙ୍ଗୁଡ଼ି ଖାଇବା ଲାଗି ଭଲ ପାଉଥିବାରୁ ତାଙ୍କପାଇଁ ଶ୍ରୀ ରାୟ ସ୍ୱତନ୍ତ୍ର ଭାବରେ କିଛି ବଡ଼ ଚିଙ୍ଗୁଡ଼ି ଭାଜିଥାନ୍ତି । ଖାଇବା ପରଷା ଯିବା ସମୟରେ ବିଜୁବାବୁ ଖାଇବା ଆଗରୁ ସମସ୍ତଙ୍କ ପତ୍ରକୁ ଚାହିଁଥିଲେ ଓ ଜାଣିପାରିଥିଲେ । ଚିଙ୍ଗୁଡ଼ି ଭଜା କେବଳ ସ୍ୱତନ୍ତ୍ର ଭାବରେ ତାଙ୍କରି ପାଇଁ ହୋଇଛି । ସେ ତାହା ନ ଖାଇ ସଙ୍ଗେ ସଙ୍ଗେ ରଘୁବାବୁଙ୍କୁ ଡ଼ାକି ସେହି ଚିଙ୍ଗୁଡ଼ିକୁ ସମସ୍ତଙ୍କ ମଧ୍ୟରେ ବାଣ୍ଟିଦେବାଲାଗି ପରାମର୍ଶ ଦେଇଥିଲେ । ମାତ୍ର ଅଳ୍ପ ଚିଙ୍ଗୁଡ଼ି ଥିବାରୁ ଶ୍ରୀ ରାୟ କୁଣ୍ଠିତ ହେବାରୁ ସେଗୁଡ଼ିକ କାହାକୁ ନ ଦେବାଲାଗି ବିଜୁବାବୁ ପ୍ରସ୍ତାବ ଦେଇଥିଲେ । ଫଳରେ ଶ୍ରୀ ରାୟ ବାଧ୍ୟହୋଇ ସମସ୍ତଙ୍କ ମଧ୍ୟରେ ଚିଙ୍ଗୁଡ଼ି ବାଣ୍ଟିଥିଲେ ।

କେବଳ ଗୋଟିଏ କ୍ଷେତ୍ରରେ ନୁହେଁ ବହୁ କ୍ଷେତ୍ରରେ ମୁଁ ବିଜୁବାବୁଙ୍କର ଏଇ ମାନବିକତାର ପ୍ରମାଣ ପାଇଁଚି ।

ଅନ୍ୟାନ୍ୟ ରାଜନୀତିଜ୍ଞମାନଙ୍କ ସଂପର୍କରେ ସମ୍ବାଦପତ୍ରରେ କଟୁ ମନ୍ତବ୍ୟ ପ୍ରକାଶ ପାଇଲେ ପ୍ରାୟ ସମସ୍ତେ କ୍ଷୁବ୍‌ଧ ହୋଇଥାନ୍ତି । କ୍ଷମତାସୀନ ରାଜନୀତିଜ୍ଞମାନଙ୍କ ଦୋଷ ଦୁର୍ବଳତା ସମ୍ବାଦପତ୍ରରେ ପ୍ରକାଶ କଲେ ଅନେକ ସମୟରେ ସେମାନେ ପ୍ରତିଶୋଧପରାୟଣ ହୋଇଉଠିଥିବାର ଦେଖାଯାଇଥାଏ । ମାତ୍ର ବିଜୁବାବୁ ତାହାର ଏକ ବ୍ୟତିକ୍ରମ । ତାଙ୍କ ବିରୁଦ୍ଧରେ କଟୁ ମନ୍ତବ୍ୟ ପ୍ରକାଶ କଲେ ସେ ହସି ହସି କହନ୍ତି, "ଯାହାହେଉ ତୁମେ ମତେ ଭୁଲି ନ ଯାଇ ମନେରଖିଛ ବୋଲି ତ ମୋ ବିରୁଦ୍ଧରେ ଲେଖୁଛ । ସେଥିପାଇଁ ମୁଁ ଖୁସି ।" ସମ୍ବାଦପତ୍ର ପ୍ରତି ଏଭଳି ସହନଶୀଳତା ଓଡ଼ିଶାର ରାଜନୀତିଜ୍ଞମାନଙ୍କ ନିକଟରେ ହୁଏତ ବିରଳ ।

# ଦ୍ରଷ୍ଟା ବିଜୁ ପଟ୍ଟନାୟକ

## ଡ଼ଃ. ଢେଙ୍କାମଣି ନରେନ୍ଦ୍ର କୁମାର

ବିଜୁ ପଟ୍ଟନାୟକଙ୍କୁ ରାଜନୀତିର ଊର୍ଦ୍ଧ୍ୱରେ ବିଚାର କଲେ ତାଙ୍କ ବ୍ୟକ୍ତିତ୍ୱର ଅନେକ ଦିଗ ଆହୁରି ଉଜ୍ଜ୍ୱଳ ଦେଖାଯାଏ । ବ୍ୟକ୍ତିଗତ ଜୀବନରେ ସେ ଜଣେ ସାହସୀ, ନିର୍ଭିକ ଏବଂ ସ୍ୱପ୍ନଦ୍ରଷ୍ଟା ଏକ ସଂଗ୍ରାମୀ ଓ ନୀରଳସ ପ୍ରତିଭା । ତାଙ୍କ ସଂପର୍କରେ ଯେତିକି ଜଣାଅଛି, ତାହା ଲେଖିବାକୁ ଗଲେ ଏକ ବିରାଟ ପୁସ୍ତକ ହେବ । ବ୍ୟକ୍ତିଗତ ଭାବେ ତାଙ୍କ ସହିତ ଏହି ଲେଖକର ସଂପର୍କ ବିଷୟରେ କେତେକ ଘଟଣା ଉଲ୍ଲେଖ କଲେ ତାଙ୍କ ବ୍ୟକ୍ତିତ୍ୱର ଅନେକ ଉଜ୍ଜ୍ୱଳ ଦିଗର ପର୍ଯ୍ୟାଲୋଚନା ହୋଇପାରିବ ।

ବିଜୁବାବୁଙ୍କ ସହିତ ମୋ ସଂପର୍କ ୧୯୫୬ ମସିହାରୁ । ସେତେବେଳେ ଡ଼କ୍ଟର ମହତାବ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଏବଂ ସ୍ୱର୍ଗତ ବନମାଳୀ ପଟ୍ଟନାୟକ ଓଡ଼ିଶା ପ୍ରଦେଶ କମିଟିର ସଭାପତି । ମୁଁ ସେତେବେଳେ ମେଡ଼ିକାଲ କଲେଜର ଛାତ୍ର । ସେତେବେଳକୁ ୧୯୫୪ ଓ ୧୯୫୬ ମସିହାର ବିଷୁବମିଳନରେ ଦୁଇଥର ଶ୍ରେଷ୍ଠ କଥାକାର ହିସାବରେ ମୁଁ ପୁରସ୍କାର ପାଇସାରିଥାଏ ଏବଂ ପିଲାଦିନରୁ ମୋର ମେଧାବୀ ବୃତ୍ତି ପାଇ ଆସିବା ଅନେକ କଂଗ୍ରେସ ନେତା ଜାଣି ସାରିଥାନ୍ତି । ମୋର ପରିବାରର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନଥିବାରୁ ମୁଁ ବଡ଼ ଅସୁବିଧାରେ ଚଳୁଥାଏ । ଏହି ସମୟରେ କ'ଣ ମନକୁ ଭାବି ମୋର ସମସ୍ତ ବିଷୟ ଜଣାଇ ସେ ସମୟରେ ଉପରାଷ୍ଟ୍ରପତି ଥିବା ଡ଼କ୍ଟର ରାଧାକୃଷ୍ଣଙ୍କୁ ଏକ ଦରଖାସ୍ତ ଲେଖିଥିଲି । ଡ଼କ୍ଟର ରାଧାକୃଷ୍ଣନ୍‌ଙ୍କର ସଦୟ ଦୃଷ୍ଟି ମୋ ଆଡ଼େ ପଡ଼ିଲା ଏବଂ କେନ୍ଦ୍ରସରକାରଙ୍କର ବିଭିନ୍ନ ବିଭାଗକୁ ପଚାରିଲା ପରେ ସେ ମୋ ପାଖକୁ ଏକ ଚିଠିରେ ଜଣାଇଦେଲେ ଯେ, ମେଧାବୀ ଛାତ୍ରଙ୍କ ପାଇଁ କେନ୍ଦ୍ର ସରକାରଙ୍କ କୌଣସି ବିଭାଗରେ କିଛି ବ୍ୟବସ୍ଥା ନାହିଁ । ସେ ତାଙ୍କ ବ୍ୟକ୍ତିଗତ ସାହାଯ୍ୟ ସ୍ୱରୂପ ତାଙ୍କ ନିଜ ସମ୍ବଳରୁ ଦୁଇଶହ ଟଙ୍କରା ଏକ ଚେକ୍ ପଠାଇ ମୋତେ ପରାମର୍ଶ ଦେଲେ ଯେ ପ୍ରଦେଶ ଭିତରେ ମୋ ଭଳି ଛାତ୍ରଙ୍କୁ ସାହାଯ୍ୟ ମିଳିଯିବ ।

ମୋର ବ୍ୟାଙ୍କରେ ଆକାଉଣ୍ଟସ୍ ନଥିବାରୁ ମୁଁ ସେହି ଚେକ୍‌ଟିକୁ ବନମାଳି

ପଟ୍ଟନାୟକଙ୍କୁ ନେଇ ଦେଇଥିଲି । ସେ ମହାଶୟ ଚେକ୍‌ଟିକୁ ଯତ୍ନର ସହିତ ରଖିଲେ, କାରଣ ସେଥିରେ ଡ଼କ୍ଟର ରାଧାକୃଷ୍ଣଙ୍କର ଦସ୍ତଖତ ଥିଲା । ତାଙ୍କ ନିର୍ଦ୍ଦେଶ ଅନୁଯାୟୀ ସପ୍ତାକ ପରେ ତାଙ୍କୁ ଭେଟିବା କଥା ସ୍ଥିର ହେଲା ।

ନିର୍ଦ୍ଦିଷ୍ଟ ସମୟରେ ମୁଁ ବନମାଳୀ ପଟ୍ଟନାୟକଙ୍କୁ ଭେଟିଲି ଏବଂ ସେ ମୋତେ କହିଲେ ଯେ, ସେଦିନ ବିଜୁ ପଟ୍ଟନାୟକ ତାଙ୍କର କଟକ ବାସଭବନ ଆନନ୍ଦଭବନରେ ଅଛନ୍ତି, ତାଙ୍କୁ ଯାଇ ଶୀଘ୍ର ସାକ୍ଷାତ କର । ମୁଁ ଆନନ୍ଦଭବନରେ ସକାଳ ନ'ଟାବେଳେ ପହଞ୍ଚିଲି । ଆନନ୍ଦଭବନ ଖୁବ୍ ନିରୋଳାଥିଲା ଏବଂ ବିଜୁବାବୁ ମୋ ନାଆଁ ଜାଣି ତାଙ୍କ ବୈଠକ ଘରକୁ ମୋତେ ଡ଼କାଇଲେ । ମୁଁ ତାଙ୍କୁ ଭେଟି କିଛି କହିବା ପୂର୍ବରୁ ସେ ମୋତେ କହିଲେ,'ବନମାଳୀ ମୋତେ ତୁମର ସବୁ କଥା କହିଛି । ତୁମେ ଡ଼କ୍ଟର ରାଧାକୃଷ୍ଣନ୍‌ଙ୍କୁ ଧନ୍ୟବାଦ ଜଣାଇ ଚିଠି ଦେଇଛ ତ ? ମୁଁ ହଁ କରନ୍ତେ ସେ ଖଣ୍ଡେ ଛିଣ୍ଡା କାଗଜ ଆଣି ସେଥିରେ ତାଙ୍କର ବ୍ୟକ୍ତିଗତ ହିସାବରୁ ମୋତେ ମାସିକ ଦେଢ଼ଶହ ଟଙ୍କା ଦେବାକୁ କଳିଙ୍ଗ ଇଣ୍ଡଷ୍ଟ୍ରୀଜିର ମ୍ୟାନେଜର ମିଷ୍ଟର ମନିଙ୍କ ପାଖକୁ ଏକ ଚିଠି ଗାରେଇ ଦେଲେ । ସେତେବେଳେ ଖୁବ୍ ଶସ୍ତା ସମୟ । ସତୁରୀ ଅଶି ଟଙ୍କାରେ ଜଣେ ଡ଼ାକ୍ତରୀ ଛାତ୍ର ଖୁବ୍ ସୁବିଧାରେ ଚଳିପାରିବ । ତାଙ୍କର ଉଦାରତା ଗୁଣରୁ ସେ ମୋତେ ଏତେ ଟଙ୍କା ଦେବାକୁ ସ୍ଥିର କରିଥିଲେ । ସେହି ଅଧିକ ସାହାଯ୍ୟ ପାଇବା ଫଳରେ ପରବର୍ତ୍ତୀ ସମୟରେ ମୁଁ ବାରମ୍ବାର କଲିକତା ଯାଇ ସେଠୁ ତରଙ୍ଗ ନାମରେ ଏକ ମାସିକ ‑ ପତ୍ରିକା ପ୍ରକାଶ କରିବାକୁ ସମର୍ଥ ହୋଇପାରିଥିଲି ।

ପରବର୍ତ୍ତୀ ସମୟରେ ବିଜୁବାବୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ ଏବଂ ପାରାଦ୍ୱୀପ ବନ୍ଦରର ନିର୍ମାଣ ଦିଗରେ ସେ ସଂପୂର୍ଣ୍ଣ ବ୍ୟସ୍ତ ହୋଇପଡ଼ିଲେ । ମୁଁ ଡ଼ାକ୍ତରୀ ପାଶ୍ କରି କଟକ ମେଡ଼ିକାଲ କଲେଜରେ ଚାକିରୀ କରୁଥିଲି । ସେହି ସମୟରେ ମୁଁ ଏକ ସରକାରୀ ନିମନ୍ତ୍ରଣ ପାଇଲି ଯେ ସରକାରଙ୍କ ତରଫରୁ ଯାଉଥିବା ଗାଡ଼ିରେ ମୋତେ ପାରାଦ୍ୱୀପ ଯିବାକୁ ପଡ଼ିବ ଏବଂ ପାରାଦ୍ୱୀପ ବନ୍ଦରର ଖନନ କାର୍ଯ୍ୟ ଆରମ୍ଭ ହେବା ଉତ୍ସବରେ ଯୋଗ ଦେବାକୁ ହେବ ।

ମୁଁ ପାରାଦ୍ୱୀପ ଗଲି ଏବଂ ସେଠି ବିଶିଷ୍ଟ ସାମ୍ବାଦିକଙ୍କ ଗହଣରେ

ମୋର ରହିବାର ବ୍ୟବସ୍ଥା ହୋଇଥିଲା । ସେତେବେଳେ ନେହେରୁ ବଙ୍ଗଳା ବ୍ୟତୀତ ରହିବାର ଅନ୍ୟ କୌଣସି ସ୍ଥାନ ନଥିବାରୁ ବନ୍ଦର କର୍ତ୍ତୃପକ୍ଷ ଆମେ ରହିବୁ ବୋଲି ଅଳ୍ପ ସମୟରେ ଏକ ଘର ତିଆରି କରିଥିଲେ, ଯେଉଁଥିରେ କି ରହିବାପାଇଁ ଖଟିଆ ଓ ଶଯ୍ୟାର ବ୍ୟବସ୍ଥା କରାଯାଇଥିଲା ।

ରାତିରେ ଆମେ ସେଠାରେ ରହିଲୁ । ପରଦିନ ସକାଳେ ଡ୍ରେଜିଂକାର୍ଯ୍ୟ ଆରମ୍ଭ ହେବ । ବିଜୁବାବୁ ଏକ ଛୋଟିଆ ଉଡ଼ାଜାହାଜ ନିଜେ ଚଳାଇ ପାରାଦ୍ୱୀପରେ ଓହ୍ଲାଇବେ ।

ଯୁଗୋସ୍ଲୋଭିଆର ଏକ କଂପାନୀ ଆଇଭାନ୍ ମିଲୁଟିନୋଭିକ୍‌ପିମ୍ ଡ୍ରେଜିଂ କାର୍ଯ୍ୟର ଠିକା ନେଇଥାଆନ୍ତି । ସେଦିନ ସକାଳୁ ପାରାଦ୍ୱୀପରେ ଖୁବ୍ କୁହୁଡ଼ି ହେଲା । ନିର୍ଦ୍ଧାରିତ ସମୟରେ ବିଜୁବାବୁ ପାରାଦ୍ୱୀପ ସମୁଦ୍ର କୂଳରେ ଓହ୍ଲାଇ ପାରିଲେ ନାହିଁ । କୁହୁଡ଼ି ପରିଷ୍କାର ହେବାକୁ ଦୁଇଘଣ୍ଟା ସମୟ ଲାଗିଲା । ଏହି ସମୟରେ ପାରାଦ୍ୱୀପ ଆକାଶରୁ ଆମେ ମଝିରେ ମଝିରେ ଉଡ଼ାଜାହାଜର ଶବ୍ଦ ଆସୁଥିବାର ଶୁଣି ପାରିଲୁ । ଆକାଶ ଟିକିଏ ପରିଷ୍କାର ହୁଅନ୍ତେ ବିଜୁବାବୁଙ୍କ ଉଡ଼ାଜାହାଜ ପାରାଦ୍ୱୀପରେ ଅବତରଣ କଲା । ବିଜୁବାବୁ ଉଡ଼ାଜାହାଜରୁ ଓହ୍ଲାଇ ସାମନାରେ ଥିବା ଆମ ମାନଙ୍କୁ ଉଦ୍ଦେଶ୍ୟ କରି କହିଲେ ଯେ, ସେ ସକାଳୁ ଆସି ପାରାଦ୍ୱୀପ ଆକାଶରେ ବିମାନରେ ଉଡ଼ି ଉଡ଼ି ଦୁଇଘଣ୍ଟା କଟାଇ ଦେଇଛନ୍ତି । ତାଙ୍କ କଥାରେ ଆବେଗ ପୁରି ରହିଥିଲା । ପାରାଦ୍ୱୀପର ବନ୍ଦର ପାଇଁ ତାଙ୍କୁ ରାତିରେ ଭଲ ନିଦ ହେଉ ନଥିଲାବୋଲି ଆମେ ପରେ ଶୁଣିଲୁ ।

୧୯୬୪ ମସିହାରେ ଚାକିରୀ ଛାଡ଼ି ମୁଁ କଂଗ୍ରେସ ରାଜନୀତିରେ ଯୋଗ ଦେଲି । ସେତେବେଳକୁ କାମରାଜ ଯୋଜନାରେ ସେ ମୁଖ୍ୟମନ୍ତ୍ରୀପଦ ଛାଡ଼ି ଦେଇଥାନ୍ତି । ଆମେ ବନ୍ଧୁବନ୍ଧୁ ମିଶି ନିଖିଳ ଉତ୍କଳ ଯୁବସମ୍ମେଳନ ପାଇଁ ଆୟୋଜନ କରୁଥାଉଁ । ସେହି ସଂପର୍କରେ ମୁଁ ଓ ମୋର ଆଉ ଚାରିଜଣ ବନ୍ଧୁ ଦିଲ୍ଲୀ ଯାଇ ଅନ୍ୟାନ୍ୟ ନେତାମାନଙ୍କ ମଧ୍ୟରେ ବିଜୁବାବୁଙ୍କର ସାକ୍ଷାତ କଲୁ । ସେ ଆମର ଏହି ଉଦ୍ୟମରେ ଖୁବ୍ ଉତ୍ସାହିତ ହୋଇପଡ଼ିଲେ । ସେତେବେଳକୁ କୃଷ୍ଣ ମେନନ୍, କେଶବ ଦେବ ମାଲବ୍ୟ, ଶ୍ୟାମନନ୍ଦନ ମିଶ୍ର ଓ ଅର୍ଜୁନ ଆରୋରା ପ୍ରମୁଖ ତୁଙ୍ଗ କଂଗ୍ରେସ ନେତାମାନଙ୍କ ସହିତ ଆଲୋଚନା

କରି ସେମାନଙ୍କୁ ଓଡ଼ିଶା ଆଣିବା ସ୍ଥିର କରିସାରିଥିଲୁ । ସେମାନେ ଓଡ଼ିଶାରେ ବିଜୁବାବୁଙ୍କ ଅତିଥି ହେବେ ବୋଲି ବିଜୁବାବୁ ନିଜଆଡୁ ପ୍ରସ୍ତାବ ଦେଲେ ଏବଂ ଓଡ଼ିଶା ଯାଇ ଆମର ସମ୍ମିଳନୀ କାର୍ଯ୍ୟ ସେ ପର୍ଯ୍ୟବେକ୍ଷଣ କରିବେ ବୋଲି ଆମକୁ ପ୍ରତିଶ୍ରୁତି ଦେଲେ ।

ସେ ଓଡ଼ିଶା ଫେରିବା ପରେ ମୁଁ ଯାଇ ତାଙ୍କ ସହିତ ସାକ୍ଷାତ କରିଥିଲି । ଏବଂ ସେତେବେଳେ ଲୋକ ସଂପର୍କ ଡ଼ିରେକ୍ଟରଙ୍କୁ ସେ ତାଙ୍କ ଘରକୁ ଡ଼କାଇ 'ଜେନାମଣିକୁ ସବୁପ୍ରକାର ସାହାଯ୍ୟ କର' ବୋଲି ନିର୍ଦ୍ଦେଶ ଦେଇଥିଲେ ।

୧୯୬୫ ମସିହାରେ ଆମ ସମ୍ମିଳନୀ ଆଡମ୍ବର ସହିତ ଅନୁଷ୍ଠିତ ହେଲା । ଓଡିଶାର ସବୁ ଅଞ୍ଚଳରୁ ବଛା ବଛା ଯୁବନେତାମାନେ ସେଥିରେ ଯୋଗଦେଲେ । ବିଜୁବାବୁ ସମସ୍ତଙ୍କର ରହିବା ଓ ଖାଇବା ବ୍ୟବସ୍ଥା ସ୍ୱର୍ଗତ ଭୈରବ ମହାନ୍ତିଙ୍କୁ କହି ଷ୍ଟେଡିଅମରେ କରି ଦେଇଥିଲେ ।

ଓଡିଆମାନେ ହୀନମନ୍ୟତା ପରିତ୍ୟାଗ କରିବାକୁ ସେ ସବୁବେଳେ ଚାହୁଁଥିଲେ। ନିଜେ ଜଣେ କୁଶଳୀ ବୈମାନିକ ହୋଇଥିବାରୁ ତାଙ୍କର ଦୃଷ୍ଟି ସବୁବେଳେ ଖୁବ୍ ଉପରେ ରହିଆସିଛି । ଦିଲ୍ଲୀରେ ଓଡିଆମାନଙ୍କ ସମ୍ମାନ ବଢ଼େଇବାପାଇଁ ସେ ୩ ନମ୍ବର ଆଉରଙ୍ଗଜେବ ରୋଡରେ ଏକ ବିରାଟ ହତା କ୍ରୟ କରିଥିଲେ ଏବଂ ସେ ହତାରେ ଥିବା ତାଙ୍କ ବଙ୍ଗଳା ବହୁ ଆଡମ୍ବରରେ ସଜ୍ଜିତ ହୋଇଥାଏ, ଯେପରିକି ବାହାର କୌଣସି ବ୍ୟକ୍ତି ଆସିଲେ ବଙ୍ଗଳାର ବୈଭବରେ ସେ ଚମତ୍କୃତ ହୋଇଯିବେ ।

ଓଡିଶାର ଉନ୍ନତିପାଇଁ ସେ ପାରାଦ୍ୱୀପ ବନ୍ଦର , ଏକସ୍‌ପ୍ରେସ୍ ସଡକ, ମିଗ୍ କାରଖାନା, ସମ୍ବଲପୁର ଓ ବ୍ରହ୍ମପୁରବିଶ୍ୱବିଦ୍ୟାଳୟ ପ୍ରଭୃତି ବହୁ ବଡ ବଡ କାର୍ଯ୍ୟ କରିଛନ୍ତି , ଯାହା ଏଠାରେ ଲେଖିବା ଦ୍ୱିରୁକ୍ତି ହେବ । ୟୁନୋସ୍କୋର କଳିଙ୍ଗ ପୁରସ୍କାର , କଳିଙ୍ଗ ଫାଉଣ୍ଡେସନ୍ ଟ୍ରଷ୍ଟ ସେ ପ୍ରତିଷ୍ଠା କରିଛନ୍ତି। ତାଙ୍କ ଶାସନ ସମୟରେ ସେ ଜଣେ ଦକ୍ଷ ମୁଖ୍ୟମନ୍ତ୍ରୀ ଥିଲେ ବୋଲି ଏ ପର୍ଯ୍ୟନ୍ତ ସମସ୍ତେ କହିଥାଆନ୍ତି ।ଆହୁରି ଅନେକ ଦିଗରୁ ତାଙ୍କ ବ୍ୟକ୍ତିତ୍ୱର ଆଲୋଚନା ଅନ୍ୟମାନେ କରିବେ । ଈଶ୍ୱର ତାଙ୍କୁ ଦୀର୍ଘାୟୁ କରନ୍ତୁ ଏବଂସେ ଦରିଦ୍ର ଓଡିଶାର ସେବା କ୍ଷେତ୍ରରେ କର୍ମକ୍ଷମ ରହିଥାଆନ୍ତୁ,ଏହାହିଁଆମ ମାନଙ୍କ କାମନା ।

# ଫୁଟ୍‌ପାଥର ବିସ୍ମୟ

**ପଣ୍ଡିତ ଅଚ୍ୟୁତାନନ୍ଦ ଦ୍ୱର**

ରାଜନୀତି ଏକ ପ୍ରବାହ । ଏ ପ୍ରବାହରେ କେତେ ଆସିବେ, କେତେବି ଯାଇଛନ୍ତି; କିନ୍ତୁ ଏ ପ୍ରବାହରେ ପ୍ରଖର ସଂଘର୍ଷ ସମ୍ମୁଖରେ ଯେଉଁମାନେ ଅଣ୍ଟାଭିଡ଼ି ନିଜର ଅହମିକାକୁ ଫୋପାଡ଼ି ନେଇ ସର୍ବସାଧାରଣଙ୍କୁ ଭଗବାନ ବୋଲି ଭାବି ନେଇ, ତାଙ୍କରି ନାମ ଜପ ନିରତ ଅବସ୍ଥାରେ ଦୃଢ଼ ହୋଇ ଠିଆ ହୋଇଯାଆନ୍ତି, ସେମାନେ 'ଅଜାତ ଶତ୍ରୁ' ହୋଇଯାଆନ୍ତି । ଶତ୍ରୁ ମିତ୍ର, ଏ ଭାବ ତ ରହିଛି, ରହିଥିବ । ମିତ୍ର ଶତ୍ରୁ ହେଉଥିବେ, ଶତ୍ରୁ ବି ମିତ୍ର ପାଲଟି ଯାଉଥିବେ । ଏମିତି ରାଜନୈତିକ ଜୀବନଧାରା ଚଳିଆସିଛି, ଚଳିବ ମଧ୍ୟ ।

ଯେଉଁ କେତେଜଣ ରାଜନୈତିକ ଜୀବନରୁ ଅବସର ନେଇଗଲେଣି, ତାଙ୍କୁ ତାଙ୍କର ଶତ୍ରୁମାନେ ବି ବେଳେ ବେଳେ ସ୍ମରଣ କରିଥାନ୍ତି । ଯେଉଁ କେତେକ ଇହଧାମରୁ ବିଦାୟ ନେଲେଣି, ସେମାନେ ଶତ୍ରୁ ମିତ୍ର ସମସ୍ତଙ୍କର ନମସ୍ୟ ହୋଇଗଲେଣି । ସକ୍ରିୟ ରାଜନୀତିର ମଇଦାନ ଉପରେ ଯେଉଁମାନେ ଛିଡାହୋଇ ଏବେ ବି ପ୍ରବାହରେ ସଂଘର୍ଷରତ , ସେମାନଙ୍କ ସଂପର୍କରେ ଲେଖିଲାବେଳେ ବଡ ସଙ୍କୁଚିତ ହେବାକୁ ପଡେ । କାରଣ ତାଙ୍କର ସୁଗୁଣ ବଖାଣିବସିଲେ , କେତେକ ଭିନ୍ନ ମତର ଲୋକ ହୁଏତ୍ କହିପାରନ୍ତି, ଏହା 'ତେଲ' ହୋଇଗଲା। ତାଙ୍କର ଦୁର୍ଗୁଣ ବଖାଣି ବସିଲେ ସେହିପରି ତାଙ୍କର ସମର୍ଥକମାନେ କହିଥାନ୍ତି - ଏହା ଖଳ ପ୍ରକୃତିର ବ୍ୟକ୍ତିଗତ କୁତ୍ସା । ଏସବୁ ଆଲୋଚନା ସମାଲୋଚନାର ଊର୍ଦ୍ଧ୍ୱରେ ରାଜନୀତି ଫୁଲ୍‌କା ଉପରେ ଯିଏ ଥାଆନ୍ତି, ସିଏ ଏହିପରି ଏକ ଜୀବନ ବରଣ କରିନେଇଛନ୍ତି ବୋଲି ଧରି ନେଇଥାନ୍ତି ।

ଏହି ପରିପ୍ରେକ୍ଷୀରେ ବିଜୁବାବୁଙ୍କ ଜୟନ୍ତୀ ଉତ୍ସବ ଅବକାଶରେ ପ୍ରକାଶ ହେବାକୁ ଯାଉଥିବା ସ୍ମରଣିକା ନିମନ୍ତେ ଲେଖାପାଇଁ ଯେତେବେଳେ ଏ ଅଧମକୁ ଅନୁରୋଧ କରାଗଲା, ସେତେବେଳେ କଣ ଲେଖିବି ବୋଲି ଏକ ସମସ୍ୟା ନିଶ୍ଚିତ ଭାବରେ ଦେଖାଦେଇଛି । କାରଣ ୧୯୬୧ ମସିହା ପୂର୍ବରୁ ବିଜୁବାବୁଙ୍କ ସମ୍ପର୍କରେ ଶିଳ୍ପପତିର ଧାରଣା ନେଇ ଆମେ କେତେଜଣ ତାଙ୍କୁ ବିଚାରତର୍କଣା

କରିଥିଲୁ । ୧୯୬୧ ମସିହାରେ ବିଜୁବାବୁ ଓଡ଼ିଶାର ଭୟଙ୍କର ବିବାଦୀୟ ବ୍ୟକ୍ତିଭାବେ ଠିଆହେଲେ, ଏପରିକି ତାଙ୍କର ରାଜନୈତିକ ଗୁରୁ ସ୍ୱର୍ଗତ ଡକ୍ଟର ମହତାବଜୀ ମଧ୍ୟ ତାଙ୍କର ବିରୁଦ୍ଧରେ ଶତମୁଖ ହୋଇଉଠିଲେ । ଏ ବିରୋଧ କିନ୍ତୁ ମଧୁର ବିରୋଧ ଥିଲା । ଗୁରୁ ଦେଖିବାକୁ ଚାହିଁଥିଲେ ଶିଷ୍ୟର ଶକ୍ତି କେତେ ? ବିଜୁବାବୁ ସେ ଶକ୍ତି ମଧ୍ୟ ପୂର୍ବରୁ ଅର୍ଥାତ୍ ନିଜର ଯୌବନ କାଳରେ ଦେଖାଇଥିଲେ ।

ଭାରତର ସ୍ୱାଧିନତା ସଂଗ୍ରାମ ଇତିହାସରେ ବିଜୁବାବୁ ଏକ ବିସ୍ମୟକର ଅଧ୍ୟାୟ । ଉଡାଜାହାଜ ଚଳାଉ ଚଳାଉ ଜାତୀୟ ଆନ୍ଦୋଳନକୁ ଏହି ପବନ ଯାନରେ ସେ ସାମିଲ କରିଦେଇଥିଲେ । ଇଣ୍ଡୋନେସିଆର ବନ୍ଦୀବୀରଙ୍କୁ ସେ ଯେପରି ଉଦ୍ଧାର କରିଥିଲେ, ତାହା ସାଧାରଣ ଲୋକଙ୍କ ପାଇଁ ଏକ କଳ୍ପନାର ବିଷୟ । ତାହା ତ ଅବଶ୍ୟ ଇତିହାସରେ ଲେଖାହୋଇଛି ଓ ରହିବ । ୧୯୬୧ ମସିହା ପରେ ବ୍ୟକ୍ତିଗତ ଶିଳ୍ପ ଉଦ୍ୟମକୁ ଓଡ଼ିଶାର ଜାତୀୟ ସ୍ତରରେ ସାମିଲ କରିବା ପାଇଁ ବିଜୁବାବୁ କ୍ଷମତା ରାଜନୀତିର ପୁରୋଭାଗକୁ ଲମ୍ଫ ଦେଇଥିଲେ । ହନୁମାନ ସମୁଦ୍ର ଲଘଂନ କଲା ପରି ଏହା ଓଡ଼ିଶାର ତତ୍କାଳୀନ ତୁଙ୍ଗ ନେତୃବୃନ୍ଦଙ୍କୁ ବିସ୍ମିତ କରିଦେଇଥିଲା । ଭଲ ମନ୍ଦ, ସପକ୍ଷ-ବିପକ୍ଷ ନାନା ଆଲୋଚନା ଓ ଗୁଞ୍ଜରଣ ଚାଲିଲା । ଏସବୁ ଆଲୋଚନା ସମାଲୋଚନା ଭିତରୁ ଶିଳ୍ପପତି ଶ୍ରୀ ବିଜୟାନନ୍ଦ ପଟ୍ଟନାୟକ ଜନସେବକ ବିଜୁ ପଟ୍ଟନାୟକ ନାମ ଧରି ଧୋତି ପଞ୍ଜାବୀ ଦେହରେ ପଦାକୁ ବାହାରିଲେ । ଦାମିକା ସୌଖୀନ ଜୀବନକୁ ନିଜ ହାତରେ ନିଜେ ବରବାଦ କରିଦେଇ, ଭୋଟ ଭିକାରୀଝୁଲାଧାରୀ ଭାବେ ବଡ଼ କରୁଣ କଣ୍ଠରେ ଓଡ଼ିଆ ଜାତିକୁ ଆହ୍ୱାନ ଦେଲେ-''ତମରି ସେବାପାଇଁ ମତେ ଖଣ୍ଡିଏ ଭୋଟ ଦିଅ । ମୋର ସବୁ ଥିଲା । ତମରି ସେବା ପାଇଁ ତାକୁ ନାରଖାର କରିଦେଲି । କାରଖାନା, କୋଠାଘର, ବହୁ ଗାଡ଼ି, ବହୁ ସୁନ୍ଦର ସାଜସଜ୍ଜା ସବୁକୁ ମୁଁ ତୁମରି ପାଇଁ ଫିଙ୍ଗି ଦେଇଛି । ହେ ଓଡ଼ିଆ ଜାତି ! ମୋତେ ସେବକ ଭାବେ ତୁମର ସେବା କରିବା ପାଇଁ ସାହାଯ୍ୟ କର । ଏ ଝୁଲାରେ ତୁମ ଆଶିଷର 'ଚିରିକୁଟି' ଖଣ୍ଡେ ଖଣ୍ଡେ ଦିଅ ।''

ଶିଳ୍ପପତି ବେଳେ ବିଜୁବାବୁଙ୍କ ସହିତ ଏ ଅଧମର ଘନିଷ୍ଠ ସମ୍ପର୍କ ନଥିଲା । ସିଏ ଯେତେବେଳେ ଝୁଲା ଧରି ପଦାକୁ ଆସିଲେ, ଫୁଟ୍‌ପାଥରେ ବୁଲୁଥିବା ଆମପରି ଲୋକଙ୍କ ସହିତ ତାଙ୍କର ଭେଟ ହେଲା, ତାଙ୍କ ଝୁଲା ପୂରୁ କି ନପୂରୁ...... ଆମର ଯାଏ ଆସେ ନାହିଁ; କିନ୍ତୁ ସେ ଝୁଲା ପକାଇ ବୁଲୁଥାନ୍ତୁ ଏହି ଫୁଟ୍‌ପାଥରେ, ଏହି ରାଜରାସ୍ତାରେ, ଏହି ଗାଁ ଭୂଇଁର ଧୂଳିଆଧୂସର ପାଦଚଲା ପଥରେ । ତାଙ୍କର ଆମର ଏମିତି ଭେଟାଭେଟି ହେଉଥାଉ । ଏତିକି ମାତ୍ର ବିଚାର ମନ ଭିତରକୁ ଏ ଅଧମ ନେଇଛି । ଇତିହାସ ତ ଅଛି, ଶତ୍ରୁ ମିତ୍ର ବଦଳାବଦଳି ଭିତରେ ବିଜୁବାବୁଙ୍କ ପରି ଗୋଟିଏ କର୍ମମୁଖର ସ୍ରୋତ ଆଖି ଆଗରେ ଚାଲୁଛି । ଈଶ୍ୱର କରନ୍ତୁ ଶୁଖି ନଯାଇ ସେ ସ୍ରୋତ ପ୍ରଖର ହେଉ..... ସେ ସ୍ରୋତ ଆମର ଫୁଲ ଚନ୍ଦନଠାରୁ ଆରମ୍ଭକରି ମଇଳା ଛିଣ୍ଡାକନା ପର୍ଯ୍ୟନ୍ତ ବହନ କରିବାକୁ ସାମର୍ଥ୍ୟ ଲାଭ କରୁ ।

# ଏକ ଶାଣିତ ପୌରୁଷ

## ପଣ୍ଡିତ ପ୍ରବୋଧ କୁମାର ମିଶ୍ର

ଆଜି ଆମେ ତାଙ୍କୁ ଓଡିଶା ବିଧାନସଭା ବିରୋଧୀ ଦଳର ନେତାଭାବେ ସମ୍ମାନ ଦେଉଛୁ । ୧୯୭୭ ମସିହାରେ କେନ୍ଦ୍ରମନ୍ତ୍ରୀ ଓ ତା ପୂର୍ବରୁ ୧୯୭୧ ମସିହାରେ ଓଡିଶା ଯୋଜନାବୋର୍ଡ ଅଧ୍ୟକ୍ଷ ଏବଂ ତା ପୂର୍ବରୁ ୧୯୬୨ ମସିହାରେ ଓଡିଶାର ମୁଖ୍ୟମନ୍ତ୍ରୀ ଭାବେ ଆମେ ତାଙ୍କୁ ସମ୍ମାନ ଦେଇଆସିଛୁ । ଓଡିଶା ତଥା ଭାରତର ବେଶ୍ ପ୍ରତିଷ୍ଠିତ ନେତା ଭାବେ ସେ ଆମ ସମସ୍ତଙ୍କ ପାଖରେ ସୁପରିଚିତ, ସୁପ୍ରତିଷ୍ଠିତ ଓ ସମ୍ମାନିତ ।

ବିଜୁବାବୁଙ୍କର ଏହା ପ୍ରକୃତ ପରିଚୟ ବୋଲି ମୋର କ୍ଷୁଦ୍ର ବୁଦ୍ଧି ମାନିବାକୁ ପ୍ରସ୍ତୁତ ନୁହେଁ। ବିଜୁବାବୁଙ୍କ ପରିଚୟ ସେ ନିଜେ । ଶାସ୍ତ୍ରକାରଗଣ ରାମରାବଣ ଯୁଦ୍ଧକୁ ଅନ୍ୟ କୌଣସି ଯୁଦ୍ଧ ସହ ତୁଳନା କରି ନପାରି ମୁକ୍ତକଣ୍ଠରେ କହିଥିଲେ-"ରାମ ରାବରଯୋର୍ଯୁଦ୍ଧଃ ରାମ ରାବଣଯୋରିବ" ଅର୍ଥାତ ରାମ ରାବଣଙ୍କ ଯୁଦ୍ଧ ସେଇ ରାମ ରାବଣ ଯୁଦ୍ଧ ଭଳି । ଏହା କହିବାର ତାତ୍ପର୍ଯ୍ୟ ଏହି ଯେ, ବିଜୁବାବୁ ବା ଶ୍ରୀ ବିଜୟାନନ୍ଦ ପଟ୍ଟନାୟକ ଯେଉଁ ଅପରିସୀମ ପୌରୁଷ, ସାହାସ, ଶକ୍ତି, ଆତ୍ମବଳ, ଦୁର୍ଦ୍ଦମନୀୟ-ପୌରୁଷ ଓ ସଂଗ୍ରାମଶୀଳ ବ୍ୟକ୍ତିତ୍ୱର ଅଧିକାରୀ, ସେହିଭଳି ଏକ ସମନ୍ୱିତ-ପୌରୁଷ ଓଡିଆଜାତି ଭାଗ୍ୟରେ ଅବିସ୍ମୃତ-ଅଧ୍ୟାୟ ସୃଷ୍ଟି କରିଛି । ପ୍ରଥମେ ମୁଁ ଯେଉଁ ବିଜୁବାବୁଙ୍କ ସମ୍ପର୍କରେ କିଛି ସୂଚନା ଦେଲି, ତାହା ହେଉଛି ସ୍ୱାଧୀନତା ପରବର୍ତ୍ତୀ ଭାରତରେ ବିଜୁବାବୁଙ୍କ ରାଜନୈତିକ ଓ ପ୍ରଶାସନିକ ରୂପ । ତଦ୍ୱାରା ବିଜୁବାବୁଙ୍କ ଅପରିମିତ-ବ୍ୟକ୍ତିତ୍ୱର ମୂଲ୍ୟାୟନ ହୋଇ ନ ପାରେ । କେହି ମଧ ତାଙ୍କୁ ସେଇ କ୍ଷମତା-ମାନଦଣ୍ଡରେ ମାପିବା ମଧ ଯଥାର୍ଥ ହେବ ନାହିଁ ବୋଲି ମୋର କ୍ଷୁଦ୍ର ମତ ।

ଆଜି ଯେଉଁ ବିଜୁବାବୁ ଆମ ଆଗରେ 'ନେତା' ଭାବେ ଦଣ୍ଡାୟମାନ, ଭବିଷ୍ୟତ ବଂଶଧରଙ୍କ ପାଇଁ ଲେଖାହେଉଥିବା ଓଡିଶା ଇତିହାସରେ ସେ ହେବେ ଆଲୋକର ବର୍ତ୍ତିକା । ଓଡିଶାର ବୀର ପୁରୁଷ ନେତାଜୀ ସୁବାଷ ଚନ୍ଦ୍ର ଓ ଉତ୍କଳ ଗୌରବ ମଧୁସୂଧନ ଦାସଙ୍କ ପରେ ବିଜୁବାବୁ ଯେ ଚଳିତ ଶତାବ୍ଦୀର ଓଡିଶାରେ ଏକ ତେଜସ୍ୱିପ୍ରତିଭା, ଏହା କ'ଣ ଅସ୍ୱୀକାର କରିହେବ ? ନେତାଜୀଙ୍କ ଦୁଃସାହସିକତା ଓ ମଧୁବାବୁଙ୍କ ସ୍ୱାଭିମାନୀ-ଓଡିଆତ୍ୱର

ସମ୍ମିଶ୍ରିତ-ବ୍ୟକ୍ତିତ୍ୱ ହେଉଚନ୍ତି ବିଜୁ ପଟ୍ଟନାୟକ ?

ଜୀବନର ବିଭିନ୍ନ ପ୍ରର୍ଯ୍ୟାୟରେ ସେ ଦୁଃସାହସିକତାର ଅଗ୍ରଦୂତ ସାଜିଛନ୍ତି। ୧୯୬୨ ମସିହାରେ ସ୍କୁଲଛାତ୍ର ଥିବାବେଳେ ସେ ବିଲାତି ପୋଲିସ୍‌ବାହିନୀର ମାଡ଼କୁ ପଦାଘାତ କରି ଗାନ୍ଧିଜୀଙ୍କୁ ଭେଟିବାରେ ଯେଭଳି ଅନମନୀୟ ସାହସ ପ୍ରଦର୍ଶନ କରିଥିଲେ, ୧୯୪୩-୪୫ ମସିହାରେ ଦିଲ୍ଲୀର ଲାଲକିଲା ଫୋର୍ଟରେ ବନ୍ଦୀ ହୋଇ କାରାଗାରରେ ମଧ୍ୟ ଜାତୀୟ ମୁକ୍ତିସଂଗ୍ରାମକୁ ତେଜସ୍କ୍ରିୟ କରିବାଲାଗି ଦୁଃସାହସିକ କାର୍ଯ୍ୟ କରିଥିଲେ । ପରବର୍ତ୍ତୀ ସମୟରେ ଠିକ୍ ସେହିପରି ଗାନ୍ଧିଜୀଙ୍କ ଦ୍ୱାରା ଆହୁତ ଆଫ୍ରିକା-ଏସୀୟରାଷ୍ଟ୍ରର ମୁକ୍ତିକାମୀ ଦେଶଗୁଡ଼ିକର ସମ୍ମିଳନୀ ପାଇଁ ଦୁଃସାହସିକ ପଦକ୍ଷେପ ନେଇ ଇଣ୍ଡୋନେସିଆରେ ପ୍ରବେଶ କରି 'ଡ଼ଚ' ସରକାର ବିରୁଦ୍ଧରେ ଛାତିପତାଇ ଠିଆହୋଇ ମୁକ୍ତିବାଦୀନେତା ଡ଼ଃ ସୁକର୍ଣ୍ଣୋ ପ୍ରମୁଖଙ୍କୁ ସାହାଯ୍ୟ ଦେଇଥିଲେ । ଭାରତର ମୁକ୍ତି ସଂଗ୍ରାମ ସହ ଦକ୍ଷିଣପୂର୍ବ ଏସିଆର ମୁକ୍ତିସଂଗ୍ରାମୀ ଗୋଷ୍ଠୀଙ୍କ ସଂପର୍କ ସ୍ଥାପନ କ୍ଷେତ୍ରରେ ଦୁଃସାହସିକ କାର୍ଯ୍ୟ ପାଇଁ ବିଜୁବାବୁ ଗାନ୍ଧୀ, ନେହେରୁ, ପଟେଲ୍, ପଟ୍ଟାଭିସୀତାରାମାୟା, ମୌଲାନା ଆଜାଦ୍, ଜୟପ୍ରକାଶଙ୍କ ଭଳି ଗରିଷ୍ଠ ନେତାମାନଙ୍କର ଶ୍ରଦ୍ଧା ଭାଜନ ହୋଇଥିଲେ । ଜାତିର ମୁକ୍ତି, ଜାତୀୟତାର ସୁରକ୍ଷା ଓ ଜାତିର ସ୍ୱାଭିମାନ ରକ୍ଷା ଲାଗି ବାଲ୍ୟକାଳରୁ ଜୀବନକୁ ଉତ୍ସର୍ଗ କରିଥିବା ବିଜୁବାବୁ ଆଜି ଜୀବନ ବସନ୍ତର ୭୧ଟି ପାହାଚ ଅତିକ୍ରମ କରିଚାଲିଛନ୍ତି ଉଦ୍ଦାମ ତେଜ ଓ ଉଦାର-ପୌରୁଷ୍ୟ ଧରି ।

ବିଜୁବାବୁଙ୍କ ବ୍ୟକ୍ତିତ୍ୱର କଳନା ମୋ ପକ୍ଷେ ସହଜ ନୁହେଁ । ସେ ଦିଗନ୍ତ-ପ୍ରଭାବିସ୍ତାରୀ ସୂର୍ଯ୍ୟର ଅପ୍ରମିତ-କିରଣଜାଲର କଣିକାଟିଏ ହୁଏତ କଳନା କରିହୁଏ । ଓଡ଼ିଆଜାତିର ସ୍ୱାଭିମାନ, ଓଡ଼ିଆତ୍ୱ, ଗରିମା ଓ ମହିମାମୟ ଇତିହାସକୁ ଅଧିକ ତେଜସ୍କ୍ରିୟ କରିବାଲାଗି ବିଜୁବାବୁ ଯେଉଁ ସଂକଳ୍ପ ୪୦ ବର୍ଷହେଲା ଗ୍ରହଣ କରିଛନ୍ତି, ତା'ର ସ୍ୱର ଏବେ ବି ଗୁରୁ ଗମ୍ଭିର ।ବାର୍ଦ୍ଧକ୍ୟର ଛାପ ତାଙ୍କ ଉଦ୍ଦାମ-ବ୍ୟକ୍ତିତ୍ୱକୁ ସ୍ପର୍ଶ କରିପାରିନାହିଁ । ନେତାଜୀଙ୍କଭଳି ସେ ଏବେ ମଧ୍ୟ 'ଏକ୍‌ଲା ଚଲୋ' ପଥର ଯାତ୍ରୀ ସାଜିଛନ୍ତି ଓଡ଼ିଆଜାତିର ସ୍ୱାଭିମାନ-ସୁରକ୍ଷା ଲାଗି ।

ବିଜୁବାବୁ ଶିଳ୍ପସମୃଦ୍ଧ ଓଡ଼ିଶାର ସ୍ୱପ୍ନଦ୍ରଷ୍ଟା, ସ୍ୱାଭିମାନୀ-ସ୍ୱର-ସଂଭାଷର ଉଦ୍‌ଗାତା, ଦୃଢ଼ମନୋବଳ ଓ ଜାଜିଭାବ ପ୍ରଣତାର ପ୍ରତୀକ ପୁରୁଷ ଭାବେ ବଞ୍ଚିରହିଛନ୍ତି ଓ ବଞ୍ଚିରହିବେ । ଅନେକ ପୁରୁଷ ପରେ ହୁଏତ ଏଇ ଓଡ଼ିଶାବାସୀ

ବିଜୁବାବୁଙ୍କ ଭଳି ଦୁର୍ଦ୍ଦମନୀୟ-ପ୍ରତିଭା ଏଇ ମାଟିରେ ଜନ୍ମ ନେଇଥିଲେ ବୋଲି ବିଶ୍ୱାସ କରିପାରିବେ ନାହିଁ ।

ବିଜୁବାବୁଙ୍କ ଭଳି ଏକ ଉଜ୍ଜଳ ବ୍ୟକ୍ତିତ୍ୱ ସଂସ୍ପର୍ଶରେ ମୁଁ ବହୁବାର ଆସିଛି । ତାଙ୍କ ପ୍ରତିଷ୍ଠିତ ଉତ୍କଳ କଂଗ୍ରେସ ଦଳର କେତୋଟି ସମାବେଶରେ ତାଙ୍କ ସହ ମଧ୍ୟ ଯୋଗ ଦେବାର ସୁଯୋଗ ପାଇଛି । ସବୁଠି ଲକ୍ଷ୍ୟ କରିଛି ତାଙ୍କର ଅନମନୀୟ, ସାଲିସ୍ ଓ ମାଲିସ୍‌ବିହୀନ ଡ଼ାକରା । ସାଲିସ୍‌ହୀନ ଜୀବନ ସାଙ୍ଗକୁ ଭୟହୀନ ଯାତ୍ରା ତାଙ୍କ ଜୀବନର ସତେ ଯେପରି ଅଦ୍ଭୁତ ବିଶେଷତ୍ୱ । ୧୯୬୯ ମସିହାର ଗୋଟିଏ ସ୍ମୃତି ଏଠାରେ ଉଲ୍ଲେଖ କରିବାକୁ ଭଲ ମଣୁଛି । ସେତେବେଳେ ବିଜୁବାବୁ ଓଡ଼ିଶା ରାଜନୀତିରେ ପରାଜିତ ନେତା ।

# ବିଜୁବାବୁଃ ଏକ ଗତିଶୀଳ ବ୍ୟକ୍ତିତ୍ୱ

## ସ୍ୱର୍ଗତ ବିଚିତ୍ରାନନ୍ଦ କର

ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ଏକ ପ୍ରଚଣ୍ଡ ଓ ପ୍ରଖର ଗତିଶୀଳ ବ୍ୟକ୍ତିତ୍ୱ। ଯାହାକୁ ଇଂରାଜୀରେ କୁହାଯାଏ Dinamic personality. ତା' ନହୋଇଥିଲେ ଉତ୍ତର-ସତୁରୀ ବୟସରେ, ବାର୍ଦ୍ଧକ୍ୟର ଘୋଡ଼ଣୀ ଭିତରେ, ଯୁବ ସୁଲଭ ଉନ୍ମାଦନା ଓ ଉଦ୍ଦାମତା ନେଇ ସେ କି ଘୂରି ବୁଲୁଥାନ୍ତେ ଓଡ଼ିଶାଟାଯାକ- ବଣପାହାଡ଼, ଗିରିକାନ୍ତାର ? ଆଦିବାସୀ-ଗିରିଜନ-ଅଧ୍ୟୁଷିତ ଅଞ୍ଚଳ ? ଏ ବୟସରେ ବି, ଦଳର ସଭାପତି ଓ ରାଜ୍ୟ ବିଧାନସଭା- ବିରୋଧୀଦଳର ନେତା ହୋଇ ଗୁରୁ ଦାୟିତ୍ୱ ମୁଣ୍ଡାଇ ନିର୍ବାଚନରେ ସକ୍ରିୟ ଅଂଶଗ୍ରହଣ କରିବା କ'ଣ ସମସ୍ତଙ୍କ ପକ୍ଷରେ ସମ୍ଭବ ? ପୁଣି ଏକାଦିନକେ ଏକାଧିକ ଜନସଭାରେ ଲୋକଙ୍କୁ ଉଦ୍‌ବୋଧନ ଦେଇ ଜାଗ୍ରତ କରାଇବା କ'ଣ ଏତେ ସହଜ ସମସ୍ତଙ୍କ ପକ୍ଷରେ ?

ଗତି ନାମ ହିଁ ଜୀବନ । ଯାହାର ଗତି ନାହିଁ, ସେ ସ୍ଥାଣୁ । ଗତିହୀନତା, ସ୍ଥାଣୁତା ହିଁ ଜଡ଼ତା, ସ୍ଥବିରତା- ଏହାହିଁ ଏକପ୍ରକାର ମୃତ୍ୟୁ । ବିଶେଷତଃ, ରାଜନୀତି କ୍ଷେତ୍ରରେ ଗତିର ଆବଶ୍ୟକତା ଓ ଉପଯୋଗିତା ଏକାନ୍ତ ଭାବରେ ଅଧିକ । ଚଉଆଖିଆ ନହେଲେ, ଉପଯୁକ୍ତ ନେତୃତ୍ୱ ନ ଦେଇ ପାରିଲେ, ଗତିଶୀଳ ନହେଲେ, ନେତା ହେବା ସମ୍ଭବ ହୋଇପାରେ; ମାତ୍ର ସଫଳ ନେତାର ସମ୍ମାନ ସମ୍ଭବ ହୁଏ ନାହିଁ।

ସାଧାରଣ ଜୀବନରୁ ଏୟାର ଲାଇନସ୍‌ରେ କମାଣ୍ଡୋ ଅଫିସର, ଶିଳ୍ପୋଦ୍ୟୋଗୀ, ଶିଳ୍ପପତି, ପ୍ରଦେଶ କଂଗ୍ରେସ ସଭାପତି, ରାଜ୍ୟ ମୁଖ୍ୟମନ୍ତ୍ରୀ ଓ କେନ୍ଦ୍ରମନ୍ତ୍ରୀ ଆସନକୁ ଯିଏ ଉଠିପାରିଲେ, ପ୍ରାଦେଶିକ ସ୍ତରରେ ଏକ ନୂଆ ରାଜନୈତିକ ଦଳ ଯିଏ ଗଢ଼ିପାରିଲେ ଏବଂ ସର୍ବଭାରତୀୟ ସ୍ତରରେ ଏକ ଶକ୍ତିଶାଳୀ ବିକଳ୍ପ ରାଜନୈତିକ ଦଳ ଗଠନରେ ଅନ୍ୟତମ ମୁଖ୍ୟ ଉଦ୍ୟୋକ୍ତା ଥିଲେ, ତାଙ୍କର ଦୃଢ଼ ଓ ପ୍ରଭାବଶାଳୀ ବ୍ୟକ୍ତିତ୍ୱକୁ କ'ଣ କେବେ ଅସ୍ୱୀକାର କରାଯାଇପାରେ ? ସେ ମୁଖ୍ୟମନ୍ତ୍ରୀ ହେଲାବେଳେ ପ୍ରଚାର ହେଉଥିଲା ଜଣେ ପାଇଲଟ୍ ମୁଖ୍ୟମନ୍ତ୍ରୀ ହୋଇଛନ୍ତି । ଆଜି ତ ପୁଣି ଜଣେ ତରୁଣ ପାଇଲଟ୍

ଭାରତର ପ୍ରଧାନମନ୍ତ୍ରୀ- ଆସନରେ ଆସୀନ !

ଶ୍ରୀ ବିଜୁ ପଟ୍ଟନାୟକ ଏଭଳି ଜଣେ ବ୍ୟକ୍ତି, ଯାହାଙ୍କ ମୁଣ୍ଡ ଭିତରେ ଆଇଡ଼ିଆଗୁଡ଼ାକ ଖଜବଜ । କଣ ଗୋଟାଏ କିଛି କରିବାକୁ ହେବ- ମନରେ ସଫଳତାର ବିଫଳତାର ଦ୍ୱନ୍ଦ୍ୱ ନାହିଁ। ହୋଇପାରେ ସଫଳତା; କିନ୍ତୁ ବିଫଳତାରେ ବି ବ୍ୟସ୍ତ ବ୍ୟାକୁଳ ହେବାର ନାହିଁ । ତେବେ, ବିଫଳତା ଯେତେବେଳେ ମଣିଷକୁ ବାଧେ, ତାଙ୍କୁ ଅବା ତାହା ନ ବାଧିବ ବୋଲି କହିବା କିପରି ? ଏକାବେଳକେ ରାଜ୍ୟର ପାଞ୍ଚୋଟି ସ୍ଥାନରେ ନିର୍ବାଚନ ଲଢ଼ିବାର ସାହସ ଓ ଦମ୍ଭ ତାଙ୍କଠାରେ ଆମେ ଦେଖିଛୁ । ପରାଜୟର ଗ୍ଲାନିରେ ଭାଙ୍ଗି ପଡ଼ିବାର ଭିରୁତା ନାହିଁ । ବିଜୟଲାଭ କରିଥିଲେ, ହୁଏତ ଉତ୍ତାନପାଦ ହୋଇଥାନ୍ତେ, ନହେଲେ ବି ଭଗ୍ନଜାନୁ ତ ହୋଇନାହାନ୍ତି ! ଅଧୈର୍ଯ୍ୟ ଓ ବିଷାଦତା ଉତ୍‌ଥାନର ପରିପନ୍ଥୀ ଓ ପ୍ରତିକୂଳ । ସେଇଥିପାଇଁତ ସୁପ୍ତ ଅବସାଦଗ୍ରସ୍ତ ମଣିଷକୁ ଉପନିଷଦର ମହାନ୍ ବାଣୀ-''ଉତ୍ତିଷ୍ଠତ, ଜାଗ୍ରତ, ପ୍ରାପ୍ୟ ବରାନ୍ ନିବୋଧତ ।'' ଗାଣ୍ଡିବଧାରୀ ପାର୍ଥ ଯେତେବେଳେ ଯୁଦ୍ଧକ୍ଷେତ୍ରରେ ନିଜର ଅସାମର୍ଥ୍ୟ ପ୍ରକାଶ କରି ଗାଣ୍ଡିବକୁ ହସ୍ତରୁ ଖସାଇଦେଲେ, ବିଷାଦଗ୍ରସ୍ତ ଅର୍ଜ୍ଜୁନଙ୍କୁ ମନ୍ତ୍ରଣାଦାତା ସାରଥି ଶ୍ରୀକୃଷ୍ଣ କହିଥିଲେ:-

''ହତୋ ବା ପ୍ରାପସ୍ୟସି ସ୍ୱର୍ଗଂ, ଜିତ୍ୱା ବା ଭୋକ୍ଷସେ ମହୀ
ତସ୍ମାଦୁତ୍ତିଷ୍ଠ କୌନ୍ତେୟ ! ଯୁଦ୍ଧାୟ କୃତ ନିଶ୍ଚୟ ।''

ଯୁଦ୍ଧକ୍ଷେତ୍ରରେ, ସଂଗ୍ରାମ ଭୂମିରେ ହୃଦୟ ଦୌର୍ବଲ୍ୟହିଁ ଭୀରୁତା, କାପୁରୁଷତାର ଚିହ୍ନ । ମନରୁ ବିଷାଦ ଓ ହୃଦୟରୁ ଦୌର୍ବଲ୍ୟ ତେଜି ଯୁଦ୍ଧ ପାଇଁ ପ୍ରସ୍ତୁତ ହୁଅ, ଆଗଭର ହୁଅ । ରଣାଙ୍ଗନରେ ଥରେ ଯେତେବେଳେ ଅବତୀର୍ଣ୍ଣ, ସେତେବେଳେ ଯୁଦ୍ଧ ପାଇଁ, ଲଢ଼େଇପାଇଁ, ସଂଗ୍ରାମ ପାଇଁ ଦୃଢ଼ସଂକଳ୍ପ ନେଇ ଆଗୁସାର ହେବାକୁ ପଡ଼ିବ । ବୀରଭଳି, ଯୋଦ୍ଧାଭଳି ଆଗକୁ ମାଡ଼ିଚାଲ । ଚରୈବତି,ଚରୈବତି । ଶ୍ରୀକୃଷ୍ଣଙ୍କର ବୀରତ୍ୱବ୍ୟଞ୍ଜକ ବାଣୀ ବିଷାଦଗ୍ରସ୍ତ ଅର୍ଜୁନଙ୍କ ମନରେ ଭରିଦେଲା ଅଭୁତପୂର୍ବ ସାହସ, ଶକ୍ତି, ଦମ୍ଭ ଓ ଉନ୍ମାଦନା । ଅର୍ଜ୍ଜୁନ ଆଗଭର ହେଲେ । ସେ ବୁଝିଲେ ''ପଛଘୁଞ୍ଚା ନାହିଁ ବୀରର ଜାତକେ, ନ ମରେ ସେ କେବେ ପରାଣ ଆତଙ୍କେ ।''

ମଣିଷ ଡ଼ରି ଡ଼ରି ଶହେଥର ମରିବା ଅପେକ୍ଷା ସାହସର ସହିତ

ସଂଗ୍ରାମର ସମ୍ମୁଖୀନ ହୋଇ ମୃତ୍ୟୁର ଶୀତଳତା ଥରେ ମାତ୍ର ଆଲିଙ୍ଗନ କରିବା ବରଂ ଶ୍ରେୟ

ଶ୍ରୀ ବିଜୁ ପଟ୍ଟନାୟକ ଓଡ଼ିଆ ତଥା କଳିଙ୍ଗପ୍ରେମୀ । 'ଓଡ଼ିଆ ଟେକସ୍‌ଟାଇଲ ମିଲସ୍‌', 'କଳିଙ୍ଗ ଟିଉବସ୍‌' 'କଳିଙ୍ଗ ସମ୍ବାଦପତ୍ର' ଇତ୍ୟାଦି କେତୋଟି ନମୁନା ମାତ୍ର । ଆନ୍ତର୍ଜାତିକ କ୍ଷେତ୍ରରେ 'କଳିଙ୍ଗ ପୁରସ୍କାର' ଏକ ଉଲ୍ଲେଖନୀୟ କୀର୍ତ୍ତି । ଅତ୍ୟନ୍ତ ମର୍ଯ୍ୟାଦାସମ୍ପନ୍ନ ଏଇ ପୁରସ୍କାର । ଆନ୍ତର୍ଜାତିକ ସ୍ତରରେ ଖ୍ୟାତାନାମା ବ୍ୟକ୍ତି ଏଇ ପୁରସ୍କାର ପ୍ରାପ୍ତି ପାଇଁ ଯୋଗ୍ୟ ବିବେଚିତ ହୋଇଥାନ୍ତି । ଓଡ଼ିଶା ଓ ଓଡ଼ିଆଙ୍କ ପକ୍ଷରେ ଏହା ଏକ ବିଶେଷ ଗୌରବ ।

ଦରିଦ୍ର ଓଡ଼ିଶାକୁ ଉନ୍ନତ କରିବା, ଶିଳ୍ପସମୃଦ୍ଧ କରିବାର ସ୍ୱପ୍ନ ଓ ଲକ୍ଷ୍ୟ ରହିଛି ବିଜୁବାବୁଙ୍କର । ଓଡ଼ିଶା ପ୍ରାକୃତିକ ସମ୍ପଦରେ ଭରପୂର । ରତ୍ନଗର୍ଭା ଏ ରାଜ୍ୟ । ଖଣିଜ ଓ ବନଜ ସମ୍ପଦରେ ପରିପୂର୍ଣ୍ଣ । ପ୍ରାଚୁର୍ଯ୍ୟ ଭିତରେ ଦାରିଦ୍ର, ଓଡ଼ିଶାର ବୈଚିତ୍ର୍ୟ ଓ ଏହା ଏକ ବିଡ଼ମ୍ବନା । ଅନ୍ୟତ୍ର ଏହା ଏକ ବିରଳ । ବିଭିନ୍ନ ଶିଳ୍ପ କାରଖାନା ପ୍ରତିଷ୍ଠା ଓ ପ୍ରସାର କରାଇ ଏସବୁ ପ୍ରାକୃତିକ ସମ୍ପଦର ଉପଯୁକ୍ତ ବିନିଯୋଗ କରିବା ବିଜୁବାବୁଙ୍କର ଇଚ୍ଛା । ଓଡ଼ିଶାକୁ ଶିଳ୍ପସମୃଦ୍ଧ କରିବାର ଦିନେ ସ୍ୱପ୍ନ ଦେଖିଥିଲେ କୁଳବୃଦ୍ଧ ମଧୁସୂଦନ । ଓଡ଼ିଶାର ଖଣିଜ ଦ୍ରବ୍ୟ ବିଶେଷତଃ ଲୁହାପଥର ବିଦେଶକୁ ରପ୍ତାନି ହେବ, ବୈଦେଶିକ ମୁଦ୍ରା ଅର୍ଜନ କରି ଓଡ଼ିଶା ବିତ୍ତଶୀଳ ହେବ, ଅତୀତର ଗୌରବମୟ କଳିଙ୍ଗ-ନୌବାଣିଜ୍ୟର ପୁନରୁତ୍‌ଥାନ ହେବ-ଏସ୍ୱପ୍ନ ବିଜୁବାବୁଙ୍କର ଥିଲା, ଏବେ ବି ରହିଛି, ତାର ପ୍ରମାଣ ପାରାଦ୍ୱୀପ ବନ୍ଦର ଓ ଏକସ୍‌ପ୍ରେସ ହାଇୱେ । କୋଟି କୋଟି ଟଙ୍କା ବ୍ୟୟିତ ହୋଇଛି, ଅପବ୍ୟୟ ମଧ୍ୟ ହୋଇଛି; ତଥାପି ପାରାଦ୍ୱୀପ ବନ୍ଦର ଆଧୁନିକ ଓଡ଼ିଶାର ଗର୍ବ ଓ ଗୌରବ ବୋଲି ସ୍ୱୀକାର କରିବାକୁ ହେବ । ସେଇଭଳି ବହୁ କୋଟି ଟଙ୍କା ବ୍ୟୟରେ ନିର୍ମିତ ଏକସ୍‌ପ୍ରେସ ହାଇୱେ ଅନ୍ୟ ଏକ ଉଲ୍ଲେଖନୀୟ ଓ ସ୍ମରଣୀୟ କୀର୍ତ୍ତି । କୃତି ଓ କୀର୍ତ୍ତିରେ ହିଁ ମଣିଷ ବଞ୍ଚେ, ଅମର ରହେ-ପଦପଦବୀ କିମ୍ବା କ୍ଷମତା ପାଇଁ ନୁହେଁ। ରାଜ୍ୟର ପ୍ରତ୍ୟେକ ପଞ୍ଚାୟତରେ ପଞ୍ଚାୟତ ଶିଳ୍ପ ତଥା ଟାଇଲି କାରଖାନା ଓ ପ୍ରତ୍ୟେକ ଗାଁରେ ନଳକୂପ ପ୍ରତିଷ୍ଠା କରିବାର ଲକ୍ଷ୍ୟ ନେଇ ବିଜୁବାବୁ ତାଙ୍କ ମୁଖ୍ୟମନ୍ତ୍ରୀତ୍ୱବେଳେ ଆଗୁସାର ହୋଇଥିଲେ । ଅବଶ୍ୟ ବହୁ ପଞ୍ଚାୟତ

ଶିଳ୍ପ ଓ ଟାଇଲ କାରଖାନା ଗଢ଼ି ଉଠିଥିଲା । ସେ ସବୁ କେଜାଣି କାହିଁକି ଅଳ୍ପାୟୁ ହୋଇଗଲେ । ମାତ୍ର ଦୁଇ ଦଶନ୍ଧି ପରେ ଏବେ ସେ ସବୁର ଅସ୍ତିତ୍ୱ ସନ୍ଦିହାନ କିମ୍ବା ତାହା କେବଳ ସ୍ମୃତି ।

ଗତିଶୀଳ ଓ ପ୍ରଭାବଶାଳୀ ବ୍ୟକ୍ତିତ୍ୱ ସମ୍ପନ୍ନ ଏହି ବ୍ୟକ୍ତି ନିଜେ ରାଜ୍ୟରେ ଓ କେନ୍ଦ୍ରରେ ଶାସନ କ୍ଷମତାରେ ଥିଲାବେଳେ ଓ ତାଙ୍କ ଅନୁଗତ ବ୍ୟକ୍ତି କ୍ଷମତାରେ ଥିଲାବେଳେ, ସେ ଓଡ଼ିଶା ପାଇଁ ଅନେକ କିଛି କରିପାରିଥାନ୍ତେ । ସୁଯୋଗ ଓ ଅବକାଶ ମିଳିଥିଲା । ସେ ସୁଯୋଗର ସଦୁପଯୋଗ ହୋଇ ପାରିଥିଲେ ଓଡ଼ିଶା ଅଧିକ ଉନ୍ନତ ଓ ସମୃଦ୍ଧ ହୋଇପାରିଥାନ୍ତା-ଶିଳ୍ପ, କୃଷି, ଶିକ୍ଷା, ସ୍ୱାସ୍ଥ୍ୟ, ଯୋଗାଯୋଗ, ବିଜ୍ଞାନୀ ଓ କାରୀଗରୀ ଇତ୍ୟାଦି ବିଭିନ୍ନ କ୍ଷେତ୍ରରେ । କିନ୍ତୁ ହୋଇପାରିଲା ନାହିଁ । ତାହା ଏକ ପ୍ରଶ୍ନବାଚୀ ଓ ଏହାର ଉତ୍ତର ବିବାଦୀୟ ।

ବିଜୁବାବୁ କଂଗ୍ରେସରେ ଥିଲେ, ପ୍ରଦେଶ କଂଗ୍ରେସ ସଭାପତି ହେଲେ, ନିଖିଳ ଭାରତ କଂଗ୍ରେସ କାର୍ଯ୍ୟକାରୀ କମିଟିର ଜଣେ ଟାଣୁଆ ସଦସ୍ୟ ହେଲେ । ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହେରୁଙ୍କ ସମୟରେ ବିଜୁବାବୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିଲେ । ତାଙ୍କ ଉଦ୍ୟମରେ ଭୁବନେଶ୍ୱରରେ ନିଖିଳ ଭାରତ କଂଗ୍ରେସ ଅଧିବେଶନ ସମ୍ଭବ ହୋଇ ପାରିଥିଲା ଓ କଂଗ୍ରେସ ପ୍ରଦେଶରେ ସମାଜବାଦୀ ସମାଜ ଗଠନର ସଂକଳ୍ପ ନେଇଥିଲା ।

ବିଜୁବାବୁ ସ୍ୱାଧୀନତା ପରେ ଓଡ଼ିଶାରେ ପ୍ରଥମଥର ପାଇଁ ନିର୍ବାଚନରେ ରାଜ୍ୟ ବିଧାନ ସଭାକୁ ବହୁ ସଂଖ୍ୟାରେ କଂଗ୍ରେସକୁ ଜୟଯୁକ୍ତ କରାଇ ଆଣିଥିଲେ ।

ସେ କିନ୍ତୁ କଂଗ୍ରେସ ଛାଡ଼ିଲେ କାହିଁକି ? ଦଳ ଭିତରେ ମନୋମାଳିନ୍ୟ, ମତାନୈକ୍ୟ, ବିବାଦ ଥାଏ ଓ ରହିଥାଏ । ବେଳେବେଳ ରାଜନୈତିକ ଚିନ୍ତାଧାରାରେ ମଧ୍ୟ ଆଲୋଡ଼ନ ସୃଷ୍ଟି କରିଥାଏ, ଏହା ବାସ୍ତବ । କିନ୍ତୁ ଶ୍ରୀ ବିଜୁ ପଟ୍ଟନାୟକ କଂଗ୍ରେସକୁ ତ୍ୟାଗ କରିବାର ଯୌକ୍ତିକତା ଓ ଯଥାର୍ଥତା ସମ୍ପର୍କରେ ହୁଏତ ତାଙ୍କ ଡ଼ାଏରୀ କିଛି ଆଲୋକପାତ କରିବ ।

ଏକଦା ଡକ୍ଟର ହରେକୃଷ୍ଣ ମହତାବଙ୍କର ଏକାନ୍ତ ଅନୁଗତ ଓ ଷୋଳଅଣା ସମର୍ଥକ ଥିବା ବିଜୁବାବୁ ଓ ଗୁରୁ ମହତାବଜୀଙ୍କ ମଧ୍ୟରେ ବିଭେଦ ହୋଇଥିଲା ।

ମନ ଫାଟିଗଲା । ଆଜି ଯେମିତି ବିଭେଦ ଘଟିଛି ଜାନକୀବାବୁ ଓ ତାଙ୍କର ଏକାନ୍ତ ଅନୁଗତଥିବା ଅନୁଜପ୍ରତିମ ଶ୍ରୀ ବସନ୍ତ କୁମାର ବିଶ୍ୱାଳଙ୍କ ମଧ୍ୟରେ, ଏହାରି ନାଁ ରାଜନୀତି ! ''ରାଜନୀତି ହେଉଛି ବିଚିତ୍ର ଶଯ୍ୟାସଙ୍ଗୀମାନଙ୍କର ପୀଠ'' ବୋଲି ଜଣେ କିଏ ପଣ୍ଡିତ କହିଯାଇଛନ୍ତି ।

ବିଜୁବାବୁ କଂଗ୍ରେସ ତ୍ୟାଗକରି ଓଡ଼ିଶାରେ 'ଉତ୍କଳ କଂଗ୍ରେସ' ଗଢ଼ିଲେ । ଏହା ଏକ ପ୍ରାଦେଶିକ ରାଜନୈତିକ ଦଳ । ବିଜୁବାବୁ ଜାତୀୟ ସ୍ତରରୁ ପ୍ରାଦେଶିକ ସ୍ତରକୁ ଖସି ଆସିଲେ ତଥାପି ମନ ଦୃଢ଼ କରି ଏହି ନବଗଠିତ ଦଳକୁ ନେଇ ନିର୍ବାଚନ-ରଣାଙ୍ଗନରେ ଅବତୀର୍ଣ୍ଣ ହେଲେ । ଉଲ୍ଲେଖନୀୟ ସଫଳତା ମଧ୍ୟରେ ହାସଲ କଲେ । ବିଜୁବାବୁ ଥିଲେ 'ଉତ୍କଳ କଂଗ୍ରେସ'ର ସଭାପତି ଓ ନେତା । କିନ୍ତୁ 'ଉତ୍କଳ କଂଗ୍ରେସ' ବି ଅଧିକକାଳ ରହିପାରିଲା ନାହିଁ । ତା'ର ଅସ୍ତିତ୍ୱ ଲୋପ ପାଇଗଲା, ଯେପରି ଲୋପପାଇଗଲା ଡ଼ଃ ମହତାବଙ୍କର 'ଜନକଂଗ୍ରେସ' ଦଳ ।

ଶ୍ରୀ ବିଜୁ ପଟ୍ଟନାୟକ ଓ ତାଙ୍କର ଏକାନ୍ତ ଅନୁଗତ ଥିବା ତାଙ୍କ ଅନୁଜପ୍ରତିମ ବିରେନ୍ ମିତ୍ର (ସ୍ୱର୍ଗତ)ଙ୍କ ବିରୋଧରେ ଦୁର୍ନୀତି ଓ ଶାସନ-ଅନୌଚିତ୍ୟ ଅଭିଯୋଗ ଅନେକ ହୋଇଥିଲା । ରାଜପଥରେ ଲୋକେ ପ୍ଳାକାର୍ଡ ଧରି ସ୍ଲୋଗାନ ଦେଇ ବୁଲିଲେ । ବିଜୁବାବୁଙ୍କ ବିରୁଦ୍ଧରେ ତଦନ୍ତପାଇଁ ସୁପ୍ରିମକୋର୍ଟର ଜଷ୍ଟିସ ଖାନ୍ନାଙ୍କୁ ନେଇ କମିଶନ ନିଯୁକ୍ତ ହୋଇଥିଲା । ଜଷ୍ଟିସ ଖାନ୍ନା ବିଜୁବାବୁଙ୍କ ବିରୁଦ୍ଧରେ 'ଶାସନଗତ ଅସଙ୍ଗତି'ର ମନ୍ତବ୍ୟ ଦେଲେ । ଏହାକୁ ଖଣ୍ଡନ କରି ବିଜୁବାବୁ ଅବଶ୍ୟ ବିବୃତି ଦେଇଥିଲେ ।

ଅବଶ୍ୟ ଏହା ସତ୍ୟ ଯେ, ରାଜନୀତି-ପଥ ପିଚ୍ଛଳ ଓ ଅନିଶ୍ଚିତ । ''ଆଜି ଯେ ରାଜେନ୍ଦ୍ରାସନେ କାଲି ସେ ଫକୀର ।'' ରାଜନୀତିରେ ଗାଳି-ତାଳି, ଯୋତାମାଳ-ଫୁଲହାର ଉଭୟ ରହିଥାଏ । ନିନ୍ଦା ଓ ପ୍ରଶଂସା, ଚରିତ୍ର ସଂହାର ଓ ବ୍ୟକ୍ତି ପୂଜା ମଧ୍ୟ ରହିଥାଏ । ରାଜନୀତି କରୁଥିବା ଲୋକେ କେତେବେଳେ କେଉଁ ଅବସ୍ଥାର ସମ୍ମୁଖୀନ ହେବେ ବା ହୁଅନ୍ତି, ତାହା ହଠାତ୍ କଳିହୁଏ ନାହିଁ । ବିଜୁବାବୁ ଜନତା ଦଳର ଜଣେ ତୁଙ୍ଗ ନେତା । ଅତୀତରେ କଂଗ୍ରେସର ନେତା ଭାବରେ ପଣ୍ଡିତ ନେହେରୁ, ଇନ୍ଦିରାଗାନ୍ଧି, ଜଗଜ୍ଜୀବନ ରାମ, ମୌଲାନା ଆଜାଦ ପ୍ରମୁଖଙ୍କ ସହିତ ତାଙ୍କର ଯେପରି

ନିବିଡ଼ ସମ୍ପର୍କଥିଲା, ଅବିଭକ୍ତ ଜନତା ଦଳର ମୋରାରଜୀ ଦେଶାଇ, ଚନ୍ଦ୍ରଶେଖର, ବାଜପେୟୀ, ଆଡ଼ଭାନୀ, ରାମକୃଷ୍ଣ ହେଗଡ଼େ ପ୍ରମୁଖଙ୍କ ସହିତ ତାଙ୍କର ନିବିଡ଼ ସମ୍ପର୍କ ରହିଛି । ସେ ଏବେ ଓଡ଼ିଶାରେ ଜନତା ଦଳର ସଭାପତି । ଗତ ନିର୍ବାଚନରେ ବିଜୁବାବୁ ଆଶା କରୁଥିଲେ ଯେ, ଓଡ଼ିଶାରେ ଜନତାଦଳ ଅଧିକ ଆସନ ପାଇବ, ହୁଏତ ସରକାର ଗଢ଼ିବ । କିନ୍ତୁ ତା' ହେଲା ନାହିଁ । ବିଜୁବାବୁ ଲୋକସଭାକୁ ବିପୁଳ ସମର୍ଥନରେ ନିର୍ବାଚିତ ହେଲେ, ଦିଲ୍ଲୀ ଗଲେ; କିନ୍ତୁ ଶେଷ ଜୀବନରେ ଓଡ଼ିଶାବାସୀଙ୍କର ସେବା କରିବା ତାଙ୍କର ଇଛା ପ୍ରକାଶ କଲେ । ସେ ଭାବିଲେ-"କରିଛି ଆଶା କରିବି ଯାପନ, ଓଡ଼ିଶା ମାଟିରେ ମୋ ଶେଷ ଜୀବନ ।" ତେଣୁ ଲୋକ ସଭା ଆସନରେ ଥାଇ ବିଧାନ ସଭାକୁ ଉପନିର୍ବାଚନରେ ଲଢ଼ି ଓ ଜିତି; ଶେଷରେ ଓଡ଼ିଶାର ସେବା ପାଇଁ ଲୋକସଭା ଆସନ ଛାଡ଼ିଲେ ଓ ବିଧାନସଭାରେ ରହିଲେ । ବିଜୁବାବୁ ଓଡ଼ିଶା ବିଧାନସଭାକୁ ଆସିବା ପରେ, ବିଧାନସଭାରେ ତଥା ବିରୋଧୀ ଦଳରେ ଉଷ୍ଣତା ଆସିଲା । ନିସ୍ତେଜ ବିରୋଧୀ ଦଳ ସତେଜ ଓ ସକ୍ରିୟ ହେଲା ବୋଲି କହିବାକୁ ହେବ ।

ବିଜୁବାବୁଙ୍କର ବୋଧହୁଏ ଅନ୍ତିମ ଅଭିଳାଷ- ଓଡ଼ିଶାରେ କିଛି ଉନ୍ନୟନ କାର୍ଯ୍ୟ କରିବା ପାଇଁ ସେ ଆଉଥରେ ଶାସନ କ୍ଷମତାକୁ ଆସିବେ ଓ ମୁଖ୍ୟମନ୍ତ୍ରୀ ହେବେ । ସେଥିଲାଗି, ଓଡ଼ିଶାରେ ବର୍ତ୍ତମାନ ଶାସନ କଂଗ୍ରେସର କନ୍ଦଳର କିଛି ବିନିଯୋଗ ସେ ଚାହାନ୍ତି । ତେଣୁ ଅସନ୍ତୁଷ୍ଟ କଂଗ୍ରେସ ଗୋଷ୍ଠୀ ଯଦି ସରକାର ଗଢ଼ିବେ, ତେବେ ତାଙ୍କ ଜନତାଦଳ ସମର୍ଥନ ଦେବ ବୋଲି ଏଇ ଅଳ୍ପ ଦିନ ତଳେ ଓଡ଼ିଶାର ଅସନ୍ତୁଷ୍ଟ କଂଗ୍ରେସ ବିଧାୟକମାନଙ୍କୁ ସେ ଆହ୍ୱାନ ଦେଇଥିଲେ । ମାତ୍ର ଅସନ୍ତୁଷ୍ଟ କଂଗ୍ରେସ ଗୋଷ୍ଠି ବିଜୁବାବୁଙ୍କର ଏ ଆହ୍ୱାନକୁ ପ୍ରତ୍ୟାଖ୍ୟାନ କରିଛନ୍ତି ।

କିନ୍ତୁ ବିଜୁବାବୁଙ୍କର କିଭଳି ଗୋଟାଏ ଧାରଣା ଓ ବିଶ୍ୱାସ ହୋଇଯାଇଛି ଯେ, ଓଡ଼ିଶାରେ ବର୍ତ୍ତମାନର ସରକାର ଭାଙ୍ଗିବ ଓ ମଧ୍ୟବର୍ତ୍ତୀ ନିର୍ବାଚନ ହେବ । ସେ ରାଜ୍ୟର ବିଭିନ୍ନ ଅଞ୍ଚଳ ବୁଲି ଜନସଭାମାନଙ୍କରେ ଏ ସମ୍ଭାବନାକୁ ମଧ୍ୟ ବ୍ୟକ୍ତି କରୁଛନ୍ତି ପ୍ରକାଶ୍ୟରେ । ବିଜୁବାବୁ ଆଶା କରିବା ସ୍ୱାଭାବିକ ଯେ, ନିର୍ବାଚନରେ ତାଙ୍କ ଦଳ ଅର୍ଥାତ୍ ଜନତାଦଳର ନେତା ବିଜୁବାବୁଙ୍କୁ

ନିଶ୍ଚିତ ଭାବରେ ଏଭଳି ଆଶାବାଦୀ କରାଇଛି ।

ବିଜୁବାବୁ ଅତୀତରେ ବହୁ ପ୍ରତିଭାବାନ ଓ ବିଭିନ୍ନ କ୍ଷେତ୍ରରେ ଅଧିଷ୍ଠିତ ଉଚ୍ଚଶିକ୍ଷିତ ତରୁଣମାନଙ୍କୁ ନିଜ ଦଳକୁ ଟାଣି ଆଣି ପାରିଥିଲେ । ଆକର୍ଷଣ କରିବାର ଚୁମ୍ବକିୟ ଶକ୍ତି ତାଙ୍କର ରହିଛି । ଫଳରେ ଡ଼ାକ୍ତର, ଇଞ୍ଜିନିୟର, ଅଧ୍ୟାପକ, ଆଇନଜୀବୀ ଓ ଅଫିସରମାନେ ନିଜ ବୃତ୍ତି ଛାଡ଼ି ବିଜୁବାବୁଙ୍କ ଦଳରେ ସାମିଲ ହୋଇଛନ୍ତି । ବିଜୁବାବୁ ଅକ୍ଷ ହୋଇ ରହିବାକୁ ଚାହାନ୍ତି ନାହିଁ, ଚକ ହୋଇ ଘୂରିବାକୁ ଚାହାନ୍ତି । ତେଣୁ ଓ.ଟି.ଏମ୍. କଳିଙ୍ଗ ଟ୍ୟୁବସ୍, 'କଳିଙ୍ଗ' ସମ୍ବାଦପତ୍ର ଇତ୍ୟାଦି ତାଙ୍କର ଚଞ୍ଚଳ ମନୋଭାବ ଯୋଗୁ ଅନ୍ତର ହୋଇ ଯାଇଛନ୍ତି । ଡକ୍ଟର ମହତାବ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ଶିଳ୍ପ ଦାୟିତ୍ୱରେ ଥିଲା ବେଳେ ତାଙ୍କର କାର୍ଯ୍ୟ ସଂପର୍କରେ କେତେକ ସମ୍ବାଦ ପ୍ରକାଶ କରିଥିବାରୁ 'ମାତୃଭୂମି' ବିରୁଦ୍ଧରେ ସେ ଏକଲକ୍ଷ ଟଙ୍କାର ମାନହାନି ମକଦ୍ଦମା କରିଥିଲେ । ସେତେବେଳ ଶ୍ରୀ ବିଜୁପଟ୍ଟନାୟକ ମଧ୍ୟ ମାତୃଭୂମିର କେତେକ ମତାମତ ହେତୁ କ୍ଷୁର୍ଣ୍ଣ ହୋଇ 'ମାତୃଭୂମି' ବିରୁଦ୍ଧରେ ଏକଲକ୍ଷ ଟଙ୍କାର ମାନହାନି ମକଦ୍ଦମା କରିଥିଲେ । ମାତ୍ର ମକଦ୍ଦମାର ତଦ୍‌ବିର ନ କରିବାରୁ ତାଙ୍କ ମକଦ୍ଦମା ଖାରଜ ହୋଇଯାଇଥିଲା । ଗୋଟିଏ ନିରପେକ୍ଷ ସମ୍ବାଦପତ୍ରଙ୍କୁ ଅଯଥା ଅକଳରେ ପକାଇବା ବୋଧହୁଏ ତାଙ୍କର ଇଚ୍ଛା ନ ଥିଲା । କାରଣ ସେ ଜଣେ ସମ୍ବାଦପତ୍ରପ୍ରେମୀ ।

ବିଜୁବାବୁ ଯେ ଜଣେ ସର୍ବଭାରତୀୟ ତୁଙ୍ଗ ନେତା, ଏ କଥାକୁ ନିର୍ବିବାଦରେ ଗ୍ରହଣ କରିବାକୁ ପଡ଼ିବ । କିନ୍ତୁ ତାଙ୍କ ଭଳି ତୁଙ୍ଗସ୍ଥାନର ଅଧିକାରୀ ହେବାର କିମ୍ବା ୨ୟ ର୍‍ୟାଙ୍କ୍‌ର ନେତା ସେ ଓଡ଼ିଶାରେ ଆଉ କାହାକୁ ଗଢ଼ିଲେ ? ନ ଗଢ଼ିଲେ ବା କାହିଁକି ? କେବଳ ବିଜୁବାବୁଙ୍କ ବ୍ୟତୀତ ଆଜି ଓଡ଼ିଶାରେ ଜନତା ଦଳର ସେଭଳି ନେତା ବା ବ୍ୟକ୍ତି କାହାନ୍ତି, ଯିଏ କି ଜନତାର ନେତା ହୋଇପାରିବେ ? ସମସ୍ତେ ନ ହେଲେ ମଧ୍ୟ ସବୁ ଅଞ୍ଚଳରେ ଲୋକେ ସେହି ବ୍ୟକ୍ତିଙ୍କୁ ନେତା ଭାବେ ଗ୍ରହଣ କରିବେ ? ବିଜୁବାବୁ ଦଳର ଏ ଅଭାବଟାକୁ ଉପଲବ୍ଧି କରୁନାହାନ୍ତି କିପରି ?

ଆଜି ଏଇ ପ୍ରଚଣ୍ଡ ବ୍ୟକ୍ତିତ୍ୱର ବାସ୍ତରିତମ ଜନ୍ମ ଜୟନ୍ତୀରେ ମୁଁ ପ୍ରଣାମ ଜଣାଇ ଏଇ ପ୍ରଶ୍ନ ତାଙ୍କୁ ପଚାରୁଛି ଅତି ବିନମ୍ର ଭାବରେ । ନିବେଦନ

କରୁଛି-ଓଡ଼ିଶାର ଉନ୍ନତି ଓ ସମୃଦ୍ଧି ପାଇଁ ବିଜୁବାବୁ ତାଙ୍କର ଯୋଜନା ଓ
ପରିକଳ୍ପନା ପ୍ରକାଶ କରନ୍ତୁ । ଓଡ଼ିଶାର ରାଜନୀତି-ପଶାପାଲିରେ ସେ କିଛି
ଗୋଟାଏ ସ୍ୱ-ଅଭିଜ୍ଞତା ଓ ଅନୁଭୂତି ସଂପନ୍ନ ଚାଲ୍ ଚଳାଇବେ ବୋଲି ଅନେକ
ଆଶା କରନ୍ତି ।

# ନିର୍ଭୀକତାର ପ୍ରତୀକ ବିଜୁ

**ପଦ୍ମଶ୍ରୀ ସଦାଶିବ ରଥଶର୍ମା**

କୌଣସି ବ୍ୟକ୍ତିଙ୍କର ପ୍ରତ୍ୟକ୍ଷ ପରିଚୟ ଅପେକ୍ଷା ପରୋକ୍ଷ ପରିଚୟ ମଧୁର । ଓଡ଼ିଶାର ବରପୁତ୍ର ବିଜୟାନନ୍ଦ ପଟ୍ଟନାୟକଙ୍କ ସହ ମୁଁ ନିତାନ୍ତ ଅପରିଚିତ ନୁହେଁ ବା ନିତ୍ୟ ସମ୍ପୃକ୍ତ ନୁହେଁ । ମୋର ସ୍ୱର୍ଗତ ପିତା ତାଙ୍କର ପିତୃଦେବ ରାମଚଣ୍ଡି ସାହିରେ ରହୁଥିବାବେଳେ ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କ ସହ ତାଙ୍କର ଅତ୍ୟନ୍ତ ସମ୍ବନ୍ଧ ଥିଲା । ବିଜୁ ପଟ୍ଟନାୟକଙ୍କର ଏକ ସଭା ସିଂହଦ୍ୱାରରେ ହେଉଥିଲା ବେଳେ ମୋର ନନା କହିଲେ ବହୁ ଛୋଟବେଳେ ତାଙ୍କୁ ଦେଖିଥିଲି, ମୋତେ ନେଇଚାଲିଲ ମୁଁ ତାଙ୍କୁ ଟିକେ ଦେଖିବି । ମୁଁ ତାଙ୍କୁ ପରିଣତ ବୟସ ସତ୍ତ୍ୱେ ନେଲି ଓ ସଭାର ନିକଟରେ ଗୋଟିଏ ଦୋକାନରେ ବସାଇଦେଲି । ସେ ତାଙ୍କର ବକ୍ତୃତା ଶୁଣି ମନେ ମନେ ବଡ଼ଖୁସି ହୋଇ କହିଲେ ସେ ତ ନୀତିର କଥା କହୁଛନ୍ତି । ସେ କହିଥିଲେ ପ୍ରଜା ବା ଜନସାଧାରଣଙ୍କୁ ଆପଣାର ଗାଦି ପାଇଁ ବ୍ୟଭିଚାର ଶିଖାଉଛନ୍ତି ଏହା ସମାଜ ପକ୍ଷେ ବିପଦଜନକ । ନନା ଫେରିବା ବେଳେ କହିଲେ ସେ ଠିକ୍ କହୁଛନ୍ତି –

ତସ୍ମାତ ସ୍ୱଧର୍ମଂ ଭୂତାନାଂ ରାଜାନବ୍ୟଭିଚାରୟେତ୍
ସ୍ୱଧର୍ମ ସଂବଧାନେ ହି ପ୍ରେତ୍ୟ ଚେହ ଚ ନନ୍ଦତି । (ଚାଣକ୍ୟ)

ମୁଁ ଯେତେବେଳେ ତାଙ୍କ ସଭାରେ ଶୁଣିବାର ଅବକାଶ ପାଏ ଶୁଣେ, ଶୁଣିବାପରି ଶୁଣେ । ଏହା ମଧ୍ୟରେ ଦଲ୍ଲୀର ଶିଳ୍ପପତି ଶ୍ରୀ ଶାନ୍ତିପ୍ରସାଦ ଜୈନ ଚଉଦୁଆର ଆସିଥାନ୍ତି ସେ ମୋତେ ଭକ୍ତି କରନ୍ତି ତାଙ୍କଠାରୁ ପତ୍ର ପାଇ ମୁଁ ଚୌଦୁଆର ଯାଇଥାଏ । ବୋଧହୁଏ ୧୯୪୮ ହେବ ? ଗୋଟିଏ ବଡ଼ କୋଠାରେ ସେ ଓ ବିଜୁବାବୁ ବହୁ ସମୟଧରି ଆଲୋଚନା ରତ ରହି ଆସିବା ବେଳେ ମୁଁ କୋଠା ବାହାରେ ବସି ଅପେକ୍ଷା କରୁଥିବା ଦେଖି ଶ୍ରୀ ଜୈନ ବ୍ୟସ୍ତ ହୋଇପଡ଼ିଲେ । ଉଭୟେ ମୋ ପାଖକୁ ଆସି ଏପରି ଅପେକ୍ଷା କରୁଥିବାରୁ ଶିଷ୍ଟାଚାରର ସହିତ ବାରଣ କରିବା ବେଳେ ମୁଁ ଜାଣିଥିଲି ବିଜୁବାବୁ ମୋତେ ତ ଚିହ୍ନି ନାହାନ୍ତି ମୁଁ ମାନ୍ୟତା ଜଣାଇବା

ବେଳେ ସେ ଜୈନଙ୍କୁ କହିଲେ ଓଡ଼ିଶାର ଗୌରବ ଜଗନ୍ନାଥ ସଂସ୍କୃତି ତାହାର ପରିପ୍ରଚାରରେ ପଣ୍ଡିତଜି ବନ୍ଧୁ ତ୍ୟାଗର ସହିତ କାର୍ଯ୍ୟ କରୁଛନ୍ତି । ତାଙ୍କର କାର୍ଯ୍ୟପାଇଁ ସେ ଗୋଟିଏ ଟାଇପ୍ ମେସିନ୍ ଆବଶ୍ୟକ କରନ୍ତି । ସେ କିପରି ଏହା ଜାଣିଲେ ମୁଁ ବିଚାରିବା ବେଳକୁ କଟକର ଗୋଟିଏ କୋଠାରେ ନିରୋଳାରେ ମୁଁ ଏ ଅଭାବ କଥା କହିଥିଲି । ତାଙ୍କର କିପରି ସ୍ମରଣ ଥିଲା ମୁଁ ଆଶ୍ଚର୍ଯ୍ୟ ହେଲି ଓ ତାଙ୍କର ବଚନାନୁସାରେ ଶ୍ରୀ ଜୈନ ଗୋଟିଏ ରୟେଲ୍ ଟାଇପ୍ ମେସିନ୍ ମୋପାଖକୁ ଆଠଦିନ ପରେ ୯ ଆଲିପୁର ପାର୍କ ପ୍ଲେସରୁ ନେଇଯିବାକୁ ପତ୍ର ଦେଲେ । ମୁଁ ଗଲି ସେ ଟାଇପ୍ ମେସିନ୍ ତ ତୁରନ୍ତ ଦେଲେ ଓ କହିଲେ-''ବିଜୁ ପଟ୍ଟନାୟକ ଏକ କାମର ଲୋକ କାମ ତଥା ଦେଶର ଉନ୍ନତି ପାଇଁ ଚିନ୍ତା ତାଙ୍କର ସ୍ୱଭାବସିଦ୍ଧ । ସେ ଲାଗିଲେ କାମ ସାରିବେ ଓ ତୃପ୍ତିର ନିଶ୍ୱାସ ମାରନ୍ତି । ଆପଣ ତାଙ୍କ ସହିତ ମଧ୍ୟେ ମଧ୍ୟେ ମିଳୁଥିବେ । ମୁଁ କେବେ ଅଳ୍ପ ସମୟ ପାଇଁ ମିଳିଛି ମାତ୍ର ପ୍ରତ୍ୟକ୍ଷ ସମ୍ବନ୍ଧ ଅପେକ୍ଷା ମୁଁ ତାଙ୍କର ପ୍ରେରଣାପଦ ବକ୍ତୃତା ଶୁଣିବାକୁ ପସନ୍ଦ କରେ ଦୂରରୁ । ଦୂରପର୍ବତ ସୁନ୍ଦର । ଥରେ ଡ଼େଲାଙ୍ଗ ହାଟ ବଜାରର ଗୋଟିଏ ସଭାରେ ତାଙ୍କର ବକ୍ତୃତା ଶୁଣିବା ପାଇଁ କାମ ସାରି ରହିଲି। ସେ କହିଲେ ଲୋକେ ବୁଝି ଶୁଝି ମତାମତ ଦେବା ଉଚିତ । ହୀରାକୁଦ ପ୍ରକଳ୍ପ ବେଳେ କିଛିଲୋକ ନଦୀର ଗତିଅବରୋଧକୁ ଭାରତୀୟ ପରମ୍ପରାର ବିରୋଧଯୋଗ୍ୟ ବୋଲି ସାଧାରଣରେ ପ୍ରଚାର କଲେ ଫଳତଃ ବହୁକଷ୍ଟ ହେଲା ।

ମୁଁ ଏ ପାରମ୍ପରିକ କଥାଟି ମନେ ରଖିଥିଲି । ଦେଖିଲି ନଦୀରେ ବନ୍ଧ ପ୍ରକଳ୍ପର ପରମ୍ପରା ଅତିପ୍ରାଚୀନ କୌଟିଲ୍ୟ ୨/୧ ରେ ଅଛି ।

ରାଜା ସହୋଦକ ବା ଜଳଭଣ୍ଡାର କରିବା କର୍ତ୍ତବ୍ୟ, ଏଥିପାଇଁ ନଦୀ ଝରଣାଦି ଅବରୋଧ କରି ଜଳସେଚନ କରିବା ଉଚିତ । ଏଥିରେ ଧର୍ମପ୍ରାଣ ପ୍ରଜା ପୂର୍ଣ୍ଣ ସହଯୋଗ କରିବା କର୍ତ୍ତବ୍ୟ ।

''ସହୋଦକ ମାହାର୍ଯ୍ୟୋଦଳ ବା ସେତୁ ବନ୍ଧୟେତ୍ ।'' ଇତ୍ୟାଦିବାକ୍ୟ ପାରାଦ୍ୱୀପ ବନ୍ଦର କାମରେ ଲାଗିଥାନ୍ତି ମିଃ ପଟ୍ଟନାୟକ । ପରିଶ୍ରମର ଅନ୍ତ ନଥାଏ । ମୁଁ ସେତେବେଳେ ସେ ଅଞ୍ଚଳରେ ମୋର ସଂଗ୍ରହ କାର୍ଯ୍ୟ ପାଇଁ

ମଧୁବନରେ ପଡ଼ିଥାଏ । ମଧ୍ୟେ ମଧ୍ୟେ ସଭା ହୁଏ ଶୁଣିବାକୁ ଯାଏ । ଥରେ ସଭାରେ କହିଲେ ବିଦେଶୀ ଅର୍ଥ ଯେଉଁ ଦେଶରେ ନ ପଶେ ସେ ସମୃଦ୍ଧ ଦେଶ ହେବ କିପରି ? ରପ୍ତାନି କାରବାର ହିଁ ଦେଶର ସମୃଦ୍ଧିର କାରଣ ।

ଅନେକେ ଓ ମୁଁ ବିଦେଶୀ ଅର୍ଥର ପ୍ରଲୋଭନ ବାଣୀକୁ ଭୁଲ ବୁଝିଲୁ ଏହା ଭୋଗର ବାଟ ସମୃଦ୍ଧିର ନୁହେଁ । ପରନ୍ତୁ ପଣ୍ୟଦ୍ରବ୍ୟ ସମ୍ବନ୍ଧୀୟ ବନ୍ଦରାଦିର ଶୁଳ୍କକୁ ଆତିଥ୍ୟ ଶୁଳ୍କ ବୋଲି ନୀତିଜ୍ଞମାନେ କହିଛନ୍ତି ଏହାଦ୍ୱାରା ଦେଶ ବିଦେଶ ଆଦାନ ପ୍ରଦାନ ଚାଲେ । ଜାତିର ଆଖି ଖୋଲେ ।

ସେତେବେଳେ ପାରଦ୍ୱୀପ ବନ୍ଦର ସମ୍ବନ୍ଧୀୟ କଅଣ ଏକ ଚୁକ୍ତି ହୋଇଥାଏ । ଯାହା ଏକ କର୍ତ୍ତୃପକ୍ଷ ସ୍ୱୀକାର ନକରି ବାଏଁ ଦାଏଁ ଉଡ଼ାଇବା ଉପରେ ଥାନ୍ତି । ସେ ଘନ ଘନ କରତାଳି ମଧ୍ୟରେ କହିଲେ । ଚୁକ୍ତି ସର୍ତ୍ତନାମା ଯେତେବେଳେ ସ୍ୱୀକୃତ ଓ ତାହା ଅନୁସାରେ ମୁଁ ଅର୍ଥର ଯୋଗାଡ଼ କଲିଣି ପରେ ତାହା ନିଶ୍ଚୟ ସ୍ୱୀକାରଯୋଗ୍ୟ ହେବ ଏଥିରେ ସନ୍ଦେହ ଲାଗି ପଡ଼ିବ । ଏହା ଆମ ଜାତିର ଏକ ସମୃଦ୍ଧିସୂଚକ ଅନୁଷ୍ଠାନ ମୋର ଜୀବନର ପଣ ଏହାକୁ ଠିଆ କରାଇବାକୁ ସହମତ ହୁଏ । ମୋର ମନେ ପଡୁଥାଏ ରାଜନୀତିବିଜ୍ଞମାନେ ଉନ୍ମାଦତା ସୃଷ୍ଟି କରନ୍ତି ମାତ୍ର ତାହା ଅଶାସ୍ତ୍ରୀୟ ନୁହେଁ ।

କୌଟିଲ୍ୟଙ୍କ ବାକ୍ୟ ମନେ ପଡୁଥାଏ ବ୍ୟବହାର ସ୍ଥାପନାର ଏକ ବିଷୟ ନିର୍ଦ୍ଦିଷ୍ଟ ଦିବସାଦି ଉଲ୍ଲେଖନୀୟ ଚୁକ୍ତି ॥ ବାଦିପ୍ରତିବାଦି ପ୍ରଶ୍ନାନର୍ଥାନୁପୂର୍ବ ନିବେଶୟେତ୍ ନିବିଷ୍ଟାଣ୍ଟାବେକ୍ଷେ ଚ ॥ ଏହିପରି କେତେ ଉନ୍ମାଦକ କଥା ଶୁଣିଛି ଥରେ ଥରେ ଅଳ୍ପ ସମୟପାଇଁ ଭେଟିଛି । ବେଙ୍ଗ ପାଣିଆର ପ୍ରାଣବଳି ସୀମା ଆନ୍ଦୋଳନରେ ପୁରୀ ସହରର ହୃଦୟ କମ୍ପାଇ ଦେଇ ଅନିର୍ଦ୍ଦିଷ୍ଟ କାଳକୁ ନୀରବ ହୋଇ ଖପରାଘର ଓ ପୁରୁଷୋତ୍ତମର ରେଳ ଷ୍ଟେସନ ଦେଖିଲେ ମୋଗଲସରାଇର ସେଡ଼ ଘର ପରି ଦିଶୁଥାଏ । ସେ ସମସ୍ୟା ପଟ୍ଟନାୟକଙ୍କ ମସ୍ତିଷ୍କର ଟିସୁକୁ ଛୁଇଁଲା । ସେ ଆସି ଦେଖିବା ବେଳେ ଆମେ କେତେ ଲୋକ ଥିଲୁ । ଏବେ "ଦେବ" ଶବ୍ଦଟି ଆଶା ଦେଖାଇ ଅଳ୍ପ ଦିନରେ ଏକ ରୁଚିସମ୍ପନ୍ନ ଷ୍ଟେସନରେ ପରିଣତ ହେଲା । ତାଙ୍କରି ହାତରେ ଉଦଘାଟିତ ହେଲା । ବଚନ ଟାଣ ବ୍ୟକ୍ତି ସେ । ଜଗନ୍ନାଥ ତାଙ୍କୁ ଦୀର୍ଘାୟୁ କରନ୍ତୁ । ଦେଶପକ୍ଷେ ତାଙ୍କର ଜୀବନ ଏକ ନିଧି

# ସଂଗ୍ରାମୀ ବୀରଙ୍କୁ ଆଶୀର୍ବାଦ

**ଅଦ୍ୱୈତବଲ୍ଲଭ ରାୟ୍**

'ବିଜୟ' ଓ 'ଆନନ୍ଦ' ଏହି ଉଭୟ ଶବ୍ଦ ବିଜୁ ପଟ୍ଟନାୟକଙ୍କ ନାମ ସହ ସଂଯୁକ୍ତ । ତେଣୁ ସେ ସର୍ବଦା ସବୁ କ୍ଷେତ୍ରରେ ବିଜୟ ହାସଲ ପାଇଁ ଆନନ୍ଦ ଉପଭୋଗ କରନ୍ତି ଓ ଜନତାକୁ ଆନନ୍ଦିତ କରିଥାନ୍ତି ।

ସେ ବୟସରେ ମୋ ଠାରୁ କମ୍ ହୋଇଥିଲେ ମଧ୍ୟ କାର୍ଯ୍ୟରେ ମୋ ଠାରୁ ଆଗୁଆ ହୋଇପାରିଛନ୍ତି ।

ସମୁଦ୍ର ଜୁଆରରେ ଅଚାନକ ଭାବରେ ହଜାର ହଜାର ଲୋକ ରାଜନଗର ଓ ମହାକାଳପଡ଼ା ଅଞ୍ଚଳରେ ଭାସି ଯାଇଥିବା ବେଳେ ସରକାରୀ କଳ ଏ ଖବର ପାଇବା ପୂର୍ବରୁ ବିଜୁ ପଟ୍ଟନାୟକ ଏହି ଜନସାଧାରଣଙ୍କୁ ସାହାଯ୍ୟ ଦେଇଥିଲେ ଏବଂ ବିଭିନ୍ନ ସଂସ୍ଥା ପକ୍ଷରୁ ଏ ଅଞ୍ଚଳରେ ସାହାଯ୍ୟ ପାଇଁ ବ୍ୟବସ୍ଥା କରାଯାଇଥିଲା ।

ପାରାଦ୍ୱୀପ ବନ୍ଦର ଓଡ଼ିଶାର ଉନ୍ନତିକଳ୍ପେ ଯଥେଷ୍ଟ ସାହାଯ୍ୟ କରିବ, ଏହି ଚିନ୍ତା ବିଜୁ ପଟ୍ଟନାୟକଙ୍କ ମୁଣ୍ଡରେ ହିଁ ପ୍ରଥମେ ପ୍ରବେଶ କରିଥିଲେ ।

ବନ୍ଦରର ଅଗ୍ରଗତି ହେଉଥିଲାବେଳେ ଜନସାଧାରଣ ବିଜୁ ପଟ୍ଟନାୟକଙ୍କ କୀର୍ତ୍ତିକୁ ଭୁଲି ପାରୁନାହାନ୍ତି । ଏକ୍ସପ୍ରେସ ହାଇୱେ ଆରମ୍ଭ ହୋଇ ଦୈତାରୀ ଖଣି ଅଞ୍ଚଳରେ ପଥର ବୋଝେଇ ଟ୍ରକ କେବଳ ଯେ ବନ୍ଦରକୁ ପଥର ବୁହାଇ ଚାଲିଛି ତାହା ସଙ୍ଗେ ସଙ୍ଗେ ପାଟକୁରା, ମହାକାଳପଡ଼ା, ରାଜନଗର, ମାହାଙ୍ଗା, ବଡ଼ଚଣା ଥାନାର ଜନସାଧାରଣ ଏ ରାସ୍ତାଦ୍ୱାରା ଉପକୃତ ହୋଇ ଯାତାୟତର ସୁବିଧା ସୁଯୋଗ ପାଇ ପାରିଛନ୍ତି, ଏଥିରେ ସନ୍ଦେହ ନାହିଁ । ଏ କାର୍ଯ୍ୟଟି ବିଜୁ ପଟ୍ଟନାୟକଙ୍କ ଯୋଗୁଁ ସମ୍ଭବ ହେଲା ବୋଲି ସାଧାରଣ ଲୋକେ ତାଙ୍କୁ ସାଧୁବାଦ ଦେଇଛନ୍ତି ।

ଯୁବସମାଜକୁ କର୍ତ୍ତବ୍ୟ ପଥରେ ସାହସର ସହିତ ଆଗେଇ ନେବା ଉପଦେଶ କେବଳ ବିଜୁ ପଟ୍ଟନାୟକଙ୍କ ଠାରୁ ମିଳିଥାଏ ।

ଓଡ଼ିଶାର କଳୁଷିତ ରାଜନୀତି ଭିତରେ ପଶି ବରଂ ବିଜୁ ପଟ୍ଟନାୟକଙ୍କୁ

ସାମୟିକ ଗଣ୍ଡଗୋଳିଆ ପରିସ୍ଥିତିରେ ପଡ଼ିବାକୁ ହୋଇଛି, ନଚେତ୍ ସେ ଜଣେ ସାହସୀ ବୀର । ତହିଁର ପରିଚୟ ସାହାରିଅରଙ୍କୁ ଉଦ୍ଧାର କଲାବେଳେ ସେ ଦେଇଛନ୍ତି ଓ ଏଥିଯୋଗୁଁ ଭାରତବାସୀ ତାଙ୍କୁ ଭୁଲିବେ ନାହିଁ । ପଣ୍ଡିତ ଜବାହାରଲାଲ ମଧ୍ୟ ବିଜୁ ପଟ୍ଟନାୟକଙ୍କ ଭୁରି ଭୁରି ପ୍ରଶଂସା କରିଛନ୍ତି । ସ୍ୱାଧୀନତା ସଂଗ୍ରାମୀ ବୀର ହିସାବରେ ସେହି ଦିନରୁ ତାଙ୍କୁ ହିଁ କୁହାଯାଏ ।

ଭଗବାନ ତାଙ୍କୁ ଦୀର୍ଘାୟୁ କରନ୍ତୁ ଓ ତାଙ୍କ ଉଦ୍ୟମ ସର୍ବତ୍ର ବିଜୟଲାଭ କରୁ, ଏହାହିଁ ମୋର ଆନ୍ତରିକ ପ୍ରାର୍ଥନା ।

# ସଂଗ୍ରାମୀ ବୀରଙ୍କୁ ଆଶୀର୍ବାଦ

**ଅଦ୍ୱୈତବଲ୍ଲଭ ରାୟ**

'ବିଜୟ' ଓ 'ଆନନ୍ଦ' ଏହି ଉଭୟ ଶବ୍ଦ ବିଜୁ ପଟ୍ଟନାୟକଙ୍କ ନାମ ସହ ସଂଯୁକ୍ତ । ତେଣୁ ସେ ସର୍ବଦା ସବୁ କ୍ଷେତ୍ରରେ ବିଜୟ ହାସଲ ପାଇଁ ଆନନ୍ଦ ଉପଭୋଗ କରନ୍ତି ଓ ଜନତାଙ୍କୁ ଆନନ୍ଦିତ କରିଥାନ୍ତି ।

ସେ ବୟସରେ ମୋ ଠାରୁ କମ୍ ହୋଇଥିଲେ ମଧ୍ୟ କାର୍ଯ୍ୟରେ ମୋ ଠାରୁ ଆଗୁଆ ହୋଇପାରିଛନ୍ତି ।

ସମୁଦ୍ର ଜୁଆରରେ ଅଚାନକ ଭାବରେ ହଜାର ହଜାର ଲୋକ ରାଜନଗର ଓ ମହାକାଳପଡ଼ା ଅଞ୍ଚଳରେ ଭାସି ଯାଇଥିବା ବେଳେ ସରକାରୀ କଳ ଏ ଖବର ପାଇବା ପୂର୍ବରୁ ବିଜୁ ପଟ୍ଟନାୟକ ଏହି ଜନସାଧାରଣଙ୍କୁ ସାହାଯ୍ୟ ଦେଇଥିଲେ ଏବଂ ବିଭିନ୍ନ ସଂସ୍ଥା ପକ୍ଷରୁ ଏ ଅଞ୍ଚଳରେ ସାହାଯ୍ୟ ପାଇଁ ବ୍ୟବସ୍ଥା କରାଯାଇଥିଲା ।

ପାରାଦ୍ୱୀପ ବନ୍ଦର ଓଡ଼ିଶାର ଉନ୍ନତିକଳ୍ପେ ଯଥେଷ୍ଟ ସାହାଯ୍ୟ କରିବ, ଏହି ଚିନ୍ତା ବିଜୁ ପଟ୍ଟନାୟକଙ୍କ ମୁଣ୍ଡରେ ହିଁ ପ୍ରଥମେ ପ୍ରବେଶ କରିଥିଲେ ।

ବନ୍ଦରର ଅଗ୍ରଗତି ହେଉଥିଲାବେଳେ ଜନସାଧାରଣ ବିଜୁ ପଟ୍ଟନାୟକଙ୍କ କୀର୍ତ୍ତିକୁ ଭୁଲି ପାରୁନାହାନ୍ତି । ଏକ୍ସପ୍ରେସ ହାଇୱେ ଆରମ୍ଭ ହୋଇ ଦୈତାରୀ ଖଣି ଅଞ୍ଚଳରେ ପଥର ବୋଝେଇ ଟ୍ରକ କେବଳ ଯେ ବନ୍ଦରକୁ ପଥର ବୁହାଇ ଚାଲିଛି ତାହା ସଙ୍ଗେ ସଙ୍ଗେ ପାଟକୁରା, ମହାକାଳପଡ଼ା, ରାଜନଗର, ମାହାଙ୍ଗା, ବଡ଼ଚଣା ଥାନାର ଜନସାଧାରଣ ଏ ରାସ୍ତାଦ୍ୱାରା ଉପକୃତ ହୋଇ ଯାତାୟତର ସୁବିଧା ସୁଯୋଗ ପାଇ ପାରିଛନ୍ତି, ଏଥିରେ ସନ୍ଦେହ ନାହିଁ । ଏ କାର୍ଯ୍ୟଟି ବିଜୁ ପଟ୍ଟନାୟକଙ୍କ ଯୋଗୁଁ ସମ୍ଭବ ହେଲା ବୋଲି ସାଧାରଣ ଲୋକେ ତାଙ୍କୁ ସାଧୁବାଦ ଦେଇଛନ୍ତି ।

ଯୁବସମାଜକୁ କର୍ତ୍ତବ୍ୟ ପଥରେ ସାହସର ସହିତ ଆଗେଇ ନେବା ଉପଦେଶ କେବଳ ବିଜୁ ପଟ୍ଟନାୟକଙ୍କ ଠାରୁ ମିଳିଥାଏ ।

ଓଡ଼ିଶାର କଳୁଷିତ ରାଜନୀତି ଭିତରେ ପଶି ବରଂ ବିଜୁ ପଟ୍ଟନାୟକଙ୍କୁ

ସାମୟିକ ଗଣ୍ଡଗୋଳିଆ ପରିସ୍ଥିତିରେ ପଡ଼ିବାକୁ ହୋଇଛି, ନଚେତ୍ ସେ ଜଣେ ସାହସୀ ବୀର । ତହିଁର ପରିଚୟ ସାହାରିଅରଙ୍କୁ ଉଦ୍ଧାର କଲାବେଳେ ସେ ଦେଇଛନ୍ତି ଓ ଏଥିଯୋଗୁଁ ଭାରତବାସୀ ତାଙ୍କୁ ଭୁଲିବେ ନାହିଁ । ପଣ୍ଡିତ ଜବାହାରଲାଲ ମଧ୍ୟ ବିଜୁ ପଟ୍ଟନାୟକଙ୍କ ଭୂରି ଭୂରି ପ୍ରଶଂସା କରିଛନ୍ତି । ସ୍ୱାଧୀନତା ସଂଗ୍ରାମୀ ବୀର ହିସାବରେ ସେହି ଦିନରୁ ତାଙ୍କୁ ହିଁ କୁହାଯାଏ ।

ଭଗବାନ ତାଙ୍କୁ ଦୀର୍ଘାୟୁ କରନ୍ତୁ ଓ ତାଙ୍କ ଉଦ୍ୟମ ସର୍ବତ୍ର ବିଜୟଲାଭ କରୁ, ଏହାହିଁ ମୋର ଆନ୍ତରିକ ପ୍ରାର୍ଥନା ।

# ସେ ଲୋକଟି ବିଜୁ ପଟ୍ଟନାୟକ

**ଅରୁଣ କୁମାର ପଣ୍ଡା**

'ବିଜୁ ପଟ୍ଟନାୟକ': ଗତ ପ୍ରାୟ ତିନିଦଶକ ଧରି ଏହି ଦୁଇଟି ଶବ୍ଦ ରାଜ୍ୟର ରାଜନୈତିକ, ସାମାଜିକ ଓ ଅର୍ଥନୈତିକର ଜୀବନ ଭିତରେ ବେଶ ଚାଞ୍ଚଲ୍ୟ ସୃଷ୍ଟି କରିଛି ।

୧୯୬୦ ମସିହାରେ ନୂତନ ଭାବରେ ଆବିଷ୍କୃତ ଏହି ଦୁଇଟି ଶବ୍ଦ ଯୌବନର ଉଦ୍ଦୀପନା, ଉତ୍ସାହ, ସାହସ, ପରାକ୍ରମ ଏବଂ ଲକ୍ଷ୍ୟ ପ୍ରତି ଅବିଚଳତାର ପ୍ରତୀକ ହୋଇପଡ଼ିଛି ।

ଯେଉଁ ଲୋକଟି ଏକ ସାଧାରଣ ପରିବାରରୁ ଆସି, ସାଧାରଣ ଭାବରେ ବଢ଼ି, ଏକ ସାଧାରଣ ବ୍ୟକ୍ତିରେ ପରିଣତ ହୋଇପାରିଲା, ଆଜି ମଧ୍ୟ ବାର୍ଦ୍ଧକ୍ୟର ଦ୍ୱିତୀୟ ପାହାଚରେ ଯାହା ଭିତରେ ତାରୁଣ୍ୟର ଲହଡ଼ି ଭାଙ୍ଗୁଛି, ଗଣତାନ୍ତ୍ରିକ ବ୍ୟବସ୍ଥା ଓ ମୂଲ୍ୟବୋଧର ଥୁଣ୍ଟା(ଶାଣିତ ନୁହେଁ) ଅସ୍ତ୍ରରେ ଯେଉଁ ବ୍ୟକ୍ତିଟି ଅନ୍ୟାୟୀ ଦୁର୍ନୀତିଗ୍ରସ୍ତ ଶାସନର ପଂଝାଭେଦ କରିବା ପାଇଁ ଚେଷ୍ଟା କରୁଛି- ସେହି ଲୋକଟିକୁ ଲୌକିକ ଦୃଷ୍ଟିରୁ ଚିହ୍ନିବା ପାଇଁ ଯେଉଁ ଦୁଇଟି ଶବ୍ଦର ବଳୟ ସୃଷ୍ଟି କରାଗଲା, ତାହା ହେଉଛି 'ବିଜୁ ପଟ୍ଟନାୟକ' ।

ଏ ଲୋକଟି ହାତରୁ ମୁଁ ପ୍ରଥମେ କାନମୋଡ଼ା ଖାଇଥିଲି ୧୯୬୧ ରେ । ସେ ସେତେବେଳେ ମୁଖ୍ୟମନ୍ତ୍ରୀ । କେନ୍ଦୁଝର ସହରର ଏକ ସାଧାରଣ ସଭାରେ ତଳେ ବସିଥିବା ପ୍ରଥମ ଧାଡ଼ିର ଶ୍ରୋତାଙ୍କ ମଧ୍ୟରେ ବସିଥିବା କେତୋଟି ବାଲୁଙ୍ଗା ସ୍କୁଲ ପିଲାଙ୍କ ମଧ୍ୟରେ ମୁଁ ଥିଲି ଅନ୍ୟତମ । ମୋତେ ହାତଠାରି ପାଖକୁ ଡ଼ାକି ଲୋକଟି ପଚାରିଲା, ''ଆରେ ! ମୋ ନାଁ କହିଲୁ ।'' ମୁଁ କହିଲି, ''ବିଜୁ ପଟ୍ଟନାୟକ ।'' ମୋ କାନଟିକୁ ଟିକେ ଯୋରରେ କିନ୍ତୁ ସ୍ନେହଭରା ହାତରେ ମୋଡ଼ି ଦେଇ ଲୋକଟି କହିଲା, ''ଅଭଦ୍ର ପିଲା ! କହୁଛି କ'ଣ ନା ବିଜୁ ପଟ୍ଟନାୟକ । ମୋ ନାଁ ହେଲା- ଶ୍ରୀଯୁକ୍ତ ବିଜୟାନନ୍ଦ ପଟ୍ଟନାୟକ, ବୁଝିଲୁ ?''

ଅତି ଭାବପୂର୍ଣ୍ଣ ଅଥଚ ଏହି ସରଳ ବିନୋଦଟିକୁ ସେଦିନ ମୁଁ ସେତେଟା ବୁଝିପାରି ନଥିଲେ ମଧ୍ୟ ଆଜି ତାର ମୂଲ୍ୟ ଠିକ୍ ବୁଝିପାରୁଛି ।

୧୯୬୪ ମସିହାରେ ସେତେବେଳେ ରାଜ୍ୟରେ ବିରାଟ ଛାତ୍ର ଆନ୍ଦୋଳନ ଚାଲିଥାଏ । ସେତେବେଳେ ମୁଁ ଜଣେ ଛାତ୍ରନେତା ଭାବେ ଏହି ଲୋକଟି ବିରୋଧରେ ଭାଷଣ ଦେଲି, ସ୍ଲୋଗାନ ଦେଲି, କେତେ ଗାଳିଗୁଲଜ କଲି, ଖରାପ କଥା କହିଲି, ଜେଲ ମଧ୍ୟ ଗଲି ଡ଼ି. ଆଇ.ଆର୍‌ରେ । ସେତେବେଳେ ଏହି ଦୁଇଟି ଶବ୍ଦ ପ୍ରତି ମୋ ମନରେ ଏକପ୍ରକାର ଅବମାନନାର ଭାବନା ଆସିଥିଲା ।

କିନ୍ତୁ ସେହି ଲୋକଟି ପୁଣି ଆବିଷ୍କୃତ ହେଲା ଜୟପ୍ରକାଶଙ୍କ ସମ୍ପୂର୍ଣ୍ଣ କ୍ରାନ୍ତିର ବିପ୍ଳବୀଦୂତ ଭୂମିକାରେ । ପାରାଦ୍ୱୀପ ବନ୍ଦରଠାରୁ ଆରମ୍ଭ କରି କଳିଙ୍ଗ ଏୟାରଲାଇନ୍‌ସ କିମ୍ବା ଭାରତୀୟ ସ୍ୱାଧୀନତା ସଂଗ୍ରାମଠାରୁ ଇଣ୍ଡୋନେସିଆର ସ୍ୱାତନ୍ତ୍ୟ ଆନ୍ଦୋଳନରେ ଅଭୂତପୂର୍ବ ଯୋଗଦାନ ପାଇଁ ସେ ଯେତେ ପରିମାଣରେ କୃତିତ୍ୱର ଅଧିକରୀ ହୋଇ ପାରିନାହାନ୍ତି, ତତୋଽଧିକ ହୋଇଛନ୍ତି ଜୟପ୍ରକାଶଙ୍କ ସମ୍ପୂର୍ଣ୍ଣ କ୍ରାନ୍ତିର ଜଣେ ଅଗ୍ରଣୀ ନେତା ଭାବରେ । ଦେଶର ବିରୋଧୀ ଦଳଙ୍କୁ ଏକ କରି ସ୍ୱେଚ୍ଛାଚାର, ପରିବାରବାଦ ଏବଂ ଏକଛତ୍ରବାଦ ଦୁର୍ନୀତିଗ୍ରସ୍ତ ଶାସନ ବିରୋଧରେ ଲଢ଼େଇ କରିବା ପାଇଁ ପଟ୍ଟନାୟକ ଯେଉଁଦିନ ନାୟକ ସାଜିଲେ ସେଦିନ ଭକ୍ତିରେ ମୋ ମୁଣ୍ଡ ତାଙ୍କ ପାଖରେ ନଇଁ ପଡ଼ିଥିଲା ।

୧୯୬୦ ର ସେହି ଉଚ୍ଚା, ଡ଼େଙ୍ଗା, ସିଧା ବିଜୁ ପଟ୍ଟନାୟକ ୧୯୮୫ରେ ମାନସିକ ଦୃଷ୍ଟିରେ ସେତିକି ସିଧା ଓ ଟାଣ ଥିଲେ ମଧ୍ୟ, ଶାରୀରିକ ଦୃଷ୍ଟିରୁ ନଇଁ ପଡ଼ିଛନ୍ତି । ଏକଦା ରାଜ୍ୟରେ ଶିଳ୍ପର ସାମ୍ରାଜ୍ୟ ସୃଷ୍ଟି କରିଥିବା ଏହି ବ୍ୟକ୍ତିଜଣକର ସେହି ସାମ୍ରାଜ୍ୟ ଭୁଷୁଡ଼ି ପଡ଼ିଥିଲେ ମଧ୍ୟ ଓଡ଼ିଶାର ଅଗଣିତ ଜନତାଙ୍କ ଭବିଷ୍ୟତ ଆଶା ଆକାଙ୍କ୍ଷାର ସେ ବର୍ତ୍ତମାନ ଏକ ପ୍ରତୀକ ହୋଇ ପଡ଼ିଛନ୍ତି ।

ଅନେକ ଥର ଏହି ଲୋକଟିର ବିଭିନ୍ନ ସଭାକୁ ରିପୋର୍ଟ କରିବା ଅଳରେ ଯିବାର ସୁଯୋଗ ମିଳୁଛି । କି ପ୍ରବଳ ଆଗ୍ରହ ସମବେତ ବିରାଟ ଜନତାର ଏହି ଲୋକଟିକୁ ଟିକେ ଦେଖିବାପାଇଁ, ସୁଯୋଗ ପାଇଲେ ତା ଦେହଟିକୁ ଟିକେ ଛୁଇଁ ଦେବାପାଇଁ ।

ବିଜୁ ପଟ୍ଟନାୟକ ତାଙ୍କ ଭାଷଣରେ ତାଙ୍କ ସ୍ୱପ୍ନର ଓଡ଼ିଶା କଥା କହନ୍ତି । ତାଙ୍କ ସ୍ୱପ୍ନର ଓଡ଼ିଶା ସଫଳ ହେବ କି ନାହିଁ ସେ ତ ଅଲଗା କଥା;

କିନ୍ତୁ ଲୋକଟି ଯେ ଏ ବୟସରେ ମଧ୍ୟ ସ୍ୱପ୍ନ ଦେଖିପାରେ, ତାହାହିଁ ତାର ବୈଶିଷ୍ଟ୍ୟ । ଭାଷଣରେ ସେ ଓଡ଼ିଶାର ଯୁବକଙ୍କୁ ସ୍ୱପ୍ନ ଦେଖିବା ପାଇଁ କହେ । ଉଡ଼ାଜାହାଜ ଡ଼େଣାକୁ ଛୁଇଁ ଦେଇଥିଲା ବୋଲି ୧୯୨୪ ରେ ବ୍ରିଟିଶ୍ ପୋଲିଶ ହାତରୁ ସେ ଲାଠି ମାଡ଼ ଖାଇଲା । ପ୍ରତିଜ୍ଞା କଲା ସେ ପାଇଲଟ ହେବ । ପାଇଲଟ ହେଲା, ନିଜର ଉଡ଼ାଜାହାଜ କିଣିଲା ।

କିନ୍ତୁ ମୋ ମତରେ ଏହି ସଂକଳ୍ପ କିମ୍ବା ସ୍ୱପ୍ନ ଅତି ମାମୁଲି- ସାଧାରଣ ଏହି ସାମାନ୍ୟ କଥା ପାଇଁ ଆମ ଯୁବକ ସ୍ୱପ୍ନ ଦେଖନ୍ତୁ । ଏହି କଥାର ମୁଁ ପକ୍ଷପାତୀ ନୁହେଁ ।

ଓଡ଼ିଶାର ଯୁବକ ସ୍ୱପ୍ନ ଦେଖିବା ଉଚିତ 'ମୁଁ ମଣିଷପରି ମଣିଷଟିଏ ହେବି' । କଳିଙ୍ଗର ଐତିହ୍ୟ, ଗାରିମା ଏବଂ ଇତିହାସର ଏକ ପୌରୁଷଯୁକ୍ତ ନବୀକରଣପାଇଁ ସମାଜର ସବୁ ସ୍ତରରୁ ରାଜନୀତିର ପ୍ରାଧାନ୍ୟ ଲୋପ ପାଇଁ, ବାସ୍ତବ ମଣିଷଙ୍କୁ ସମାଜରେ ସମ୍ମାନ ମିଳୁ ସେଥିପାଇଁ ଖାଲି ସ୍ୱପ୍ନ ଦେଖିଲେ ଚଳିବ ନାହିଁ- ଆଜିଠୁ କାମରେ ଲାଗିଯିବାକୁ ପଡ଼ିବ ।

ବତୀଘର ପରି ଆମ ଆଗରେ ଅଥଳ ନିରାଶାର ସମୁଦ୍ର ମଝିରେ ଯେଉଁ ଲୋକଟି ଛିଡ଼ା ହୋଇଛି ତାକୁ ଲକ୍ଷ୍ୟକରି ଆଗେଇ ଚାଲ ଏବଂ ସେ ଲୋକଟି ସମେତ ଅନ୍ୟ କେହି ଯଦି ତୁମ ରାସ୍ତା ରୋକିବାକୁ ଚେଷ୍ଟା କରେ ତାହା ସହ ଯୁଦ୍ଧ ଘୋଷଣା କର । କିନ୍ତୁ ମୋର ବିଶ୍ୱାସ ଏହି ଲୋକଟି ତୁମ ସହ ହାତ ମିଳାଇ ଚାଲିବ । କାରଣ ସେ ଲୋକଟି ଆଉ କେହି ନୁହେଁ - ସେ ହେଉଛି ବିଜୁ ପଟ୍ଟନାୟକ ।

## ସେ କ୍ଷଣଜନ୍ମା

### ଜ୍ୟୋତିର୍ବିଦ୍ ନିମାଇଁ ବାନାର୍ଜୀ

ଆଜି ବସନ୍ତର କୋଳାହଳ, ଧରାବକ୍ଷରେ ତା'ର ଅଭିନବ ଫଗୁ ବର୍ଷା । କୋକିଳର ତାନ ଆଉ ରଙ୍ଗବେରଙ୍ଗ ପୁଷ୍ପରେଣୁ ଭ୍ରମରର ଗୁଣୁ ଗୁଣୁ ଗୁଞ୍ଜନ, ଚତୁର୍ଦ୍ଦିଗରେ ଏକ ନୂତନ ମହକ । ଏଇ ବସନ୍ତକୁ ଆଦରରେ ସଙ୍ଗୋଳି ବସନ୍ତ ପଞ୍ଚମୀ ବିଗତ ହୋଇଗଲାଣି କେଜାଣି କେତେବେଳୁ । ଏମିତି ଏକ ମନମତାଣିଆ ବସନ୍ତରେ ସ୍ୱର୍ଗତ ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କର ଔରସରୁ, ମାତା ଆଶାଲତା ଦେବୀଙ୍କର ଗର୍ଭରୁ ଭୂମିଷ୍ଠ ହୋଇଥିଲେ ଆଜିର ବିଜୟାନନ୍ଦ ଯେ ନିଜ ବିଜୟରେ ନିଜେ ଆନନ୍ଦିତ ହେବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କୁ ସେ ଆନନ୍ଦ ଅକାତରେ ବିତରଣ କରି ଚାଲିଛନ୍ତି ।

ସେଦିନ ଜ୍ୟୋତିଷୀ ତାଙ୍କର ଜନ୍ମ ଉତ୍ସବରେ ନିଶ୍ଚୟ ଜାତକ ପ୍ରସ୍ତୁତ କରିଥିବେ । ବହୁ ବନ୍ଧୁବାନ୍ଧବଙ୍କ ଗହଣରେ ତାଙ୍କର ଭବିଷ୍ୟତ କହିଥିବେ ।

(ବିଜୁ ପଟ୍ଟନାୟକଙ୍କ ଜନ୍ମ ପତ୍ରିକା ଜନ୍ମ ସମୟକୁ ଶନି ମହାଦଶା ବାକୀ ବ ୧୭।୨।୧୫ ।)

ନିଜର ଭାଗ୍ୟବଳରୁ ଓ ପିତା ମାତାଙ୍କର ସୁକୃତରୁ ସେଦିନର ବିଜୟାନନ୍ଦ ଆଜି ବିଜୁ ବାବୁ; ଦେଶର ନମସ୍ୟ, ଜାତିର ଆଦର୍ଶ, କୀର୍ତ୍ତିମାନ ଏବଂ ଲୋକପ୍ରିୟ ଜନନାୟକ । ତାଙ୍କ ଜନ୍ମ ସମୟରେ ଗ୍ରହାବସ୍ଥାନକୁ ଥରେ ଅନୁଧ୍ୟାନ

କଲେ ଯାହା ପରିଷ୍କାର ଜଣାପଡ଼େ, ଜନ୍ମ ସମୟରେ ଯେଉଁମାନେ ବଳବାନ ଗ୍ରହ ନେଇ ଜନ୍ମ ହୋଇଥାନ୍ତି, ସେହିମାନେ ଏ ସୃଷ୍ଟିରେ କୀର୍ତ୍ତିର ଅଧିକାରୀ ହୁଅନ୍ତି ।

ତାଙ୍କର ତୃତୀୟରେ ତେଜକାରକ ବକ୍ରିଗ୍ରହ ମଙ୍ଗଳ ବୃହସ୍ପତି ଦୃଷ୍ଟିରେ ଥିବାରୁ ସେ ନିଜ ବିକ୍ରମରେ ବିକ୍ରମୀ ହେବାର ସୁଯୋଗ ଅର୍ଜନ କରିପାରିଛନ୍ତି। ତାଙ୍କ ଜାତକରେ ଲଗ୍ନପତି ଶୁକ୍ର ବର୍ଗୋତ୍ତମ ହୋଇଥିବାରୁ ସେ ସତତ ପରିଶ୍ରମୀ, ଲୋକପ୍ରିୟ ଓ କର୍ମଠ ରହିବେ । ତାଙ୍କୁ ଭାଗ୍ୟ କେତେକ ସ୍ଥଳରେ ସହାୟକ ନହେବା ଦ୍ୱାରା ସେ ବିଭିନ୍ନ ଅସୁବିଧା ଭିତର ଦେଇ ଗତି କଲେ ମଧ୍ୟ ଜୀବନରେ ଉଚ୍ଚାଭିଳାଷ, ଲୋକ କଲ୍ୟାଣ ତଥା ଜନତାର ସେବାରେ ସତତ ନିୟୋଗୀ ରହିବେ । ତାଙ୍କ ଜାତକରେ ଥିବା କେତୋଟି ବଳିଷ୍ଠ ଯୋଗର ଏବେ ଚର୍ଚ୍ଚା କରାଯାଉ ।

(୧) ଛତ୍ର ଚାମର ଯୋଗ:- ମକରଠାରୁ କର୍କଟ ମଧ୍ୟରେ ଅବସ୍ଥିତ ଗ୍ରହମାନେ ଏ ଯୋଗ ସୃଷ୍ଟି କରିଛନ୍ତି । ଏ ଯୋଗରେ ଜନ୍ମ ହେଲେ ବ୍ୟକ୍ତିର ଉପରେ ଛତ୍ରୀ ଧରାଯାଏ ଓ ଆଲଟ ଚାମର ପଡ଼େ ।

ଜ୍ୟୋତିଷ ଶାସ୍ତ୍ର 'ବେଦାଙ୍ଗ' ବିଶେଷ ଓ ଏହାର ସମସ୍ତ ନିୟମାବଳୀ ବହୁ ପ୍ରାଚୀନ ମୁନିଋଷିଙ୍କଦ୍ୱାରା ସୃଷ୍ଟି । ସେତେବେଳେ ରାଜାରାଜୁଡ଼ା ଶାସନ ଥିଲା ଓ ରାଜାମାନଙ୍କ ଉପରେ ଛତ୍ରୀ ଧରାଯାଉଥିଲା ଓ ଆଲଟ ଚାମର ପଡୁଥିଲା । ଆଜି ଯଦିଓ ସେଇ ରାଜା ଭିନ୍ନ ଭାବରେ 'ମନ୍ତ୍ରୀ' ରୂପରେ ଆଧୁନିକ ସମାଜରେ ପରିଚିତ ଓ ଛତ୍ରୀ ଚାମର ନାହିଁ ମାତ୍ର ସେହି ପରିସ୍ଥିତି ଓ ପରିବେଶ ରହିଛି । ଯୁଗ ବଦଳିଛି, ବିଧି ବଦଳିଛି । ଏଣୁ ରାଜାରାଜୁଡ଼ା ଶାସନର ବିଧି ନଥିଲେ ମଧ୍ୟ ସେ ଯୋଗରେ ଜନ୍ମ ହେଉଥିବା ବ୍ୟକ୍ତି ରାଜା ଭଳି ସମ୍ମାନ ପାଇଛନ୍ତି ଏବଂ ଶାସନଭାର ଗ୍ରହଣ କରୁଛନ୍ତି ।

ଆମର ପ୍ରିୟ ନେତା ବିଜୁ ପଟ୍ଟନାୟକଙ୍କ ଜାତକରେ ଏହି ଛତ୍ର ଚାମର ଯୋଗ ତାଙ୍କୁ ଓଡ଼ିଶାର ମୁଖ୍ୟମନ୍ତ୍ରୀତ୍ୱଠାରୁ କେନ୍ଦ୍ରମନ୍ତ୍ରୀତ୍ୱ ପର୍ଯ୍ୟନ୍ତ କ୍ଷମତାର ଅଧିକାରୀ କରାଇବାରେ ସକ୍ଷମ ହୋଇଥିଲା ଏବଂ ଏଇ ଯୋଗର ଫଳ ସ୍ୱରୂପ ସେ ଆଜି ବିଶ୍ୱବିଦିତ ।

(୨) ସପ୍ତଗ୍ରହ ମାଳିକା ଯୋଗ :- ଯଦିଓ ଅନେକ ଗ୍ରନ୍ଥକାର ମତ ଦିଅନ୍ତି ଯେ, ଲଗ୍ନଠାରୁ କ୍ରମାନ୍ୱୟରେ ସାତଟି ରାଶିରେ ଗ୍ରହମାନେ ଅବସ୍ଥାନ କଲେ ସପ୍ତଗ୍ରହ ମାଳିକା ଯୋଗ ସୃଷ୍ଟି ହୋଇଥାଏ । କିନ୍ତୁ ଯେକୌଣସି

ଭାବଠାରୁ କ୍ରମାନ୍ୱୟରେ ସାତଟି ରାଶିରେ ଏ ସମାବେଶ ହେଲେ, ସପ୍ତମାଳିକା ଯୋଗ ସଂଗଠିତ ହୋଇଛି । ଯାହାର ଫଳସ୍ୱରୂପ ସେ ବହୁ ସୌଭାଗ୍ୟର ଅଧିକାରୀ ହୋଇଛନ୍ତି ।

(୩) କ୍ଷେତ୍ର ସିଂହାସନ ଯୋଗ :-ଦଶମାଧିପତି କେନ୍ଦ୍ରକୋଣ ବା ଧନ ସ୍ଥାନରେ ଅବସ୍ଥାନ କଲେ ବ୍ୟକ୍ତି ଏ ଯୋଗର ଅଧିକାରୀ ହୁଏ । ଯେଉଁମାନେ ଏ ଯୋଗରେ ଜନ୍ମ ହୋଇଥାନ୍ତି ସେମାନେ ନିଶ୍ଚିତ ଭାବରେ 'କୋଟିକରେ ଗୋଟିଏ' ହେବାର ସୁଯୋଗ ଲାଭ କରିଥାନ୍ତି । କ୍ଷମତା, ଯଶ ଓ ସୁନାମର ଅଧିକାରୀ ହୁଅନ୍ତି । ଜନତାର ବିଶ୍ୱାସ ଭାଜନ ମଧ୍ୟ ହୁଅନ୍ତି । ଶ୍ରୀଯୁକ୍ତ ପଟ୍ଟନାୟକ ଜାତକରେ ଦଶମାଧିପ ଯୋଗକାରକ ଶନି ୨ୟ ବା ଧନସ୍ଥାନସ୍ଥ ହେତୁ ସେ ଏ ଯୋଗର ଅଧିକାରୀ ହୋଇପାରିଛନ୍ତି ।

(୪) ଗୁରୁଚାନ୍ଦ୍ରି ଯୋଗ :- ବୃହସ୍ପତି ଚନ୍ଦ୍ର ଏକତ୍ର ଅବସ୍ଥାନ କଲେ ଏ ଯୋଗ ସଙ୍ଗଠିତ ହୋଇଥାଏ । ଏ ଯୋଗରେ ଜାତକ ସରଳ, ଲୋକପ୍ରିୟ, ଧନୀ, ବହୁ ସୁନାମର ଅଧିକାରୀ ହୋଇଥାଏ ।

(୫) କୁଳଦୀପକ ଯୋଗ:- ଦୁଇଟି ଦୁଇଟି ଗ୍ରହ ୩ଟି ରାଶିରେ ଓ ଗୋଟିଏ ଗୋଟିଏ ଗ୍ରହ ୩ଟି ରାଶିରେ ଅବସ୍ଥାନ କଲେ ଜାତକ କୁଳଦୀପକ ହୁଏ । ଏ ଜାତକରେ ସୃଷ୍ଟି ହୋଇଥିବା ଉପରୋକ୍ତ ଯୋଗ ତାଙ୍କୁ କେବଳ ତାଙ୍କ କୁଳର ଦୀପକ କରିନାହିଁ, ସମଗ୍ର ଓଡ଼ିଆ ଜାତିର କୁଳଦୀପକ କରି ପ୍ରତିଷ୍ଠିତ କରିଛି ।

(୬) କ୍ଷେତ୍ର ବିନିମୟ ଯୋଗ :- ୨ୟାଧିପ ୯ମରେ ଓ ୯ମଧିପ ୨ୟରେ ରହିବା ଏକ ବଳିଷ୍ଠ କ୍ଷେତ୍ର ବିନିମୟ ଯୋଗ ସୂଚକ । ଯେଉଁଥିପାଇଁ ସେ ଦିନେ ବିଶିଷ୍ଟ ଧନୀ ହୋଇ ପାରିଥିଲେ । ଏହା ଏକ ମହାଯୋଗ ଏବଂ ଉଭୟ ଶନି, ବୁଧର ସମ୍ପର୍କ ନେଇ ଏ ଯୋଗ ସୃଷ୍ଟି ହୋଇଥିବାରୁ ସେ ଜଣେ ବିଶିଷ୍ଟ ଶିଳ୍ପପତି ତଥା ବିମାନଚାଳକ ହୋଇପାରିଛନ୍ତି ।

(୭) ଜାତକର ଉନ୍ନତ ଗ୍ରହ ରବି:- ରବି ନିଜେ ଗ୍ରହ ଜଗତର ରାଜାଧିରାଜ । ଶ୍ରୀଯୁକ୍ତ ପଟ୍ଟନାୟକଙ୍କ ଜାତକରେ ସେ ରବି ୪ର୍ଥାଧିପ ହୋଇ ୧୦ମ କେନ୍ଦ୍ରରେ ଏବଂ ସ୍ୱଭାବକୁ ଦୃଷ୍ଟି ଦେଉଛନ୍ତି । କର୍ମାଧିପ ଶନି ସହ ନବଂ ପଞ୍ଚମ ସମ୍ବନ୍ଧ ସୃଷ୍ଟି କରିଛନ୍ତି । ପୁନଶ୍ଚ ଯୋଗ ସୃଷ୍ଟିକାରୀ ବୃହସ୍ପତିର ନକ୍ଷତ୍ରରେ ଅବସ୍ଥାନ କରିଛନ୍ତି । ଶାସକ ହେବାପାଇଁ ଏ ଯୋଗ କମ୍ ଆଶୀର୍ବାଦଜନକ

ନୁହେଁ । ରବିଙ୍କର ଏହି ସ୍ଥିତି ସ୍ୱରୂପ ରବି ମହାଦଶାରେ ୧୯୭୭ ମସିହାରେ ସେ କେନ୍ଦ୍ରମନ୍ତ୍ରୀ ହୋଇପାରିଥିଲେ । ଶନି ଲୁହାର କାରକ ଗ୍ରହ, ଏଣୁ ରବି ଶନିଙ୍କ କ୍ଷେତ୍ରରେ ଥିବାରୁ ସେ ଇସ୍ପାତମନ୍ତ୍ରୀ ହୋଇପାରିଥିଲେ । କେବଳ ସେତିକି ନୁହେଁ, ବିଭିନ୍ନ ସମୟରେ ସେ କେନ୍ଦ୍ର ସରକାରଙ୍କ ସହ ସମ୍ପର୍କ ରକ୍ଷା କରିପାରିଥିଲେ ଓ ପ୍ରଧାନମନ୍ତ୍ରୀଙ୍କର ବିଶ୍ୱସ୍ତ ହୋଇ କେତେକ ଗୁରୁତ୍ୱପୂର୍ଣ୍ଣ ପଦବୀର ଦାୟିତ୍ୱ ନେବାପାଇଁ ନିମନ୍ତ୍ରିତ ହୋଇଥିଲେ ।

ତାଙ୍କ ଜାତକରେ ଲଗ୍ନାଧିପତି ଶୁକ୍ର ଏବଂ ଉପରୋକ୍ତ ଯୋଗ ସୃଷ୍ଟି କରିଥବା ରବିର ଦଶାରେ ସେ ବିଶ୍ୱବିଦିତ ହେବାର ସୁଯୋଗ ପାଇଥିଲେ ।

ଏମିତି ଆଲୋଚନା କରି ବସିଲେ ଏ ଜାତକରେ ଏତେ ଯୋଗ ଦୃଷ୍ଟିକୁ ଆସେ, ଯାହାର କଳନା ନାହିଁ । ପ୍ରତ୍ୟେକ ମନୁଷ୍ୟ ନିକଟରେ ଯେପରି କେତେକ ଭଲ ଗୁଣ ରହିବା ସଂଗେ ସଂଗେ ଖରାପ ଗୁଣ ମଧ୍ୟ କେତୋଟି ଥାଏ, ଠିକ୍ ସେହିପରି ପ୍ରତ୍ୟେକ ଗ୍ରହ ମଧ୍ୟ ଦୁର୍ଗୁଣ ଓ ସୁଗୁଣ ଉଭୟର ଅଧିକାରୀ । ଫଳତଃ ପ୍ରତ୍ୟେକ ଯୋଗର ଅନେକ ସୁଫଳ ଥିଲେ ମଧ୍ୟ କେତେକ କୁଫଳ ମଧ୍ୟ ବାଦ ପଡ଼େ ନାହିଁ । ଯେଉଥିପାଇଁ ଶ୍ରୀଯୁକ୍ତ ପଟ୍ଟନାୟକ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ସଂଘର୍ଷ କରି ଆସିଛନ୍ତି ଏବଂ ବହୁ ସୌଭାଗ୍ୟ ଲାଭ କରିବା ସଂଙ୍ଗେ ସଂଙ୍ଗେ ଦୁର୍ଭାଗ୍ୟ ମଧ ତାଙ୍କଠାରୁ ଦୂରେଇ ଯାଇନାହିଁ ।

ତାଙ୍କ. ଜାତକରେ ଶୁକ୍ର ମହାଦଶା ଆରମ୍ଭ ହୁଏ ୧୯୫୭ରୁ ୧୯୭୭ ପର୍ଯ୍ୟନ୍ତ । ସେ ସମୟ ତାଙ୍କ ପାଇଁ ବହୁ ଉଲ୍ଲେଖନୀୟ । ୧୩-୨-୧୯୬୧ରେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ସେ ହୁଅନ୍ତି ସଭାପତି । ପରେ ପରେ ତାଙ୍କ ରାଜନୈତିକ ସ୍ଥିତି ଦୃଢ଼ ହୋଇଉଠେ । ସେହି ୧୯୬୧ରେ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ଓଡ଼ିଶାରେ ଅନୁଷ୍ଠିତ ହୁଏ ଓ ତାଙ୍କ କଂଗ୍ରେସ ୮୨ଟି ସ୍ଥାନ ହାସଲ କରିବାରୁ ସେ ହୁଅନ୍ତି ଆମର ମୁଖ୍ୟମନ୍ତ୍ରୀ । ସେତେବେଳର ପ୍ରଧାନମନ୍ତ୍ରୀ ସ୍ୱର୍ଗତ ପଣ୍ଡିତ ନେହେରୁଙ୍କ ସେ ବହୁ ଶ୍ରଦ୍ଧାର ପାତ୍ର ହୁଅନ୍ତି, ଏପରିକି ଭାରତ-ଚୀନ ଯୁଦ୍ଧ ସମୟରେ ସେ ଆମେରିକା ପ୍ରଭୃତି ଦେଶ ସହ କୂଟନୈତିକ ସମ୍ପର୍କ ବୃଦ୍ଧି ପାଇଁ ବାରମ୍ବାର ବିଦେଶ ଭ୍ରମଣ କରନ୍ତି । ତାଙ୍କର ଦୁଃସାହସିକତା ସମସ୍ତଙ୍କୁ ମୁଗ୍ଧ କରିଥାଏ । ପରେ ପରେ ପାରାଦ୍ୱୀପ ବନ୍ଦର, ବୁର୍ଲାର ଇଞ୍ଜିନିୟରିଂ କଲେଜ, ଭୁବନେଶ୍ୱରରେ ସୈନିକ ସ୍କୁଲ, ରେଜିଓନାଲ କଲେଜ

ଅଫ୍ ଏଜୁକେସନ୍ ଭଳି ସଂସ୍ଥାମାନ ପ୍ରତିଷ୍ଠା କରି ଓଡ଼ିଶାର ମାନ ଉନ୍ନତ କରିବାରେ ଲାଗିପଡ଼ନ୍ତି । ତାଙ୍କ ଜାତକରେ ଶୁକ୍ର ବ୍ୟୟସ୍ଥ ହେଲେ ମଧ୍ୟ ଲଗ୍ନାଧିପ ହୋଇ ବର୍ଗୋତ୍ତମ ହୋଇଥିବାରୁ ଶୁକ୍ରଦଶାରେ ସେ ବହୁ ବଡ଼ ବଡ଼ କାମରେ ହାତ ଦେଇ ସଫଳକାମ ହୁଅନ୍ତି ।

ତା'ପରେ ତାଙ୍କର ରବି ମହାଦଶା ୬ବର୍ଷ ପାଇଁ ଆରମ୍ଭ ହୁଏ ଓ ଏହି ସମୟରେ ସେ ହୁଅନ୍ତି ଆମର କେନ୍ଦ୍ରମନ୍ତ୍ରୀ । କେନ୍ଦ୍ର ମନ୍ତ୍ରିମଣ୍ଡଳ ଭାଙ୍ଗିବା ସମୟକୁ ତାଙ୍କର ରବି ମହାଦଶାରେ ଅଶୁଭ ଗ୍ରହ ଅନ୍ତର ଆସିଯାଇଥାଏ । ତା'ପରଠାରୁ ସେ ନାନା ଘାତପ୍ରତିଘାତ ଭିତରେ ଜନସେବାରେ ନିଜକୁ ଉତ୍ସର୍ଗ କରିଚାଲିଛନ୍ତି ।

ବର୍ତ୍ତମାନ ତାଙ୍କର ଚନ୍ଦ୍ରମହାଦଶା ଚାଲିଛି ଏବଂ ଏହି ଦଶା ୧୯୯୩ ପର୍ଯ୍ୟନ୍ତ ଚାଲିବ । ଜାତକରେ ଚନ୍ଦ୍ରଙ୍କ ଅବସ୍ଥାନ ମଧ୍ୟମ ଧରଣର । ଚନ୍ଦ୍ର ଜନତାର କାରକ, ସେ ପୁଣି ଅନ୍ୟ କାରକ ଗ୍ରହ ଶନିଦୃଷ୍ଟ । ଏଣୁ ସେ ତାଙ୍କର ଜନସେବା ଅବ୍ୟାହତ ରଖିବେ ଓ ଦିନକୁ ଦିନ ତାଙ୍କର ଦେଶପ୍ରୀତି ବଢ଼ି ଚାଲିବା ସଂଗେ ସଂଗେ ଅଜସ୍ର ଶ୍ରମ ଓ ସମୟ ସେ ବିନିଯୋଗ କରି ଚାଲିବେ ଜନତା ଜନାର୍ଦ୍ଦନର ସେବାରେ ।

ସେ ତ କ୍ଷଣଜନ୍ମା, ଦୀର୍ଘାୟୁ ଯୋଗରେ ସେ ଯୋଗଜନ୍ମା । ଭଗବାନ ତାଙ୍କୁ ଲମ୍ବା ଆୟୁ ଆଉ ସୁସ୍ଥ ଶରୀର ପ୍ରଦାନ କରନ୍ତୁ । ଲୋକକଲ୍ୟାଣରେ ସେ ପାଆନ୍ତୁ ଅସୀମ ଆନନ୍ଦ ।

# ନିର୍ଭୀକ ବ୍ୟକ୍ତିତ୍ୱଃ ବିଜୁବାବୁ

**ମନୋରମା ମହାପାତ୍ର**

ଜାତିକୁ ନେତୃତ୍ୱ ଦେବାପାଇଁ ଯେଉଁ ଦୁଇଟି ମୁଖ୍ୟ ଚାରିତ୍ରିକ ବୈଶିଷ୍ଟ୍ୟ ଅତ୍ୟାବଶ୍ୟକ ତାହା ହେଲା ନିର୍ଭୀକ ଓ ସାହସ । ଏହି ଦୁଇଟି ମହାନ୍ ଶକ୍ତିରେ ଯେ ବିଭୂଷିତ ନ ହୋଇପାରିଲା, ସେ ଆଉ ଯାହା ହେଉ ପଛକେ, ଜାତିର ମଙ୍ଗୁଆଳ ହେବାକୁ କଦାପି ସମର୍ଥ ହୋଇପାରିବ ନାହିଁ । ନେତୃତ୍ୱ ସଂମ୍ପର୍କରେ ଯଥାର୍ଥରେ ଲାଲ୍ ଲଜପତ୍ ରାୟ କହିଛନ୍ତି ସେ ହେଉଛନ୍ତି ପ୍ରକୃତ ନେତା, ଯାହାଙ୍କ ନେତୃତ୍ୱ କାର୍ଯ୍ୟରେ ସନ୍ତୋଷ ଦେଇ ପାରିବ ଓ ପ୍ରଭାବଶାଳୀ ହୋଇପାରିବ, ଯେ କି ଆପଣଙ୍କଠାରୁ ଆଗୁଆଥିବେ, ଯେ ଲୋକ ନିର୍ଭୀକ ଓ ସାହସୀ ଏବଂ ସର୍ବୋପରି ଯାହାଙ୍କ ନିଃସ୍ୱାର୍ଥପରତା ସନ୍ଦେହ ମୁକ୍ତ ହୋଇଥିବ। ଏସବୁ ଗୁଣ ଯେତେଦିନ ପର୍ଯ୍ୟନ୍ତ ସେ ରକ୍ଷା କରିପାରିବେ, ସେତେଦିନ ଯାଏ ସେ ନେତା ପଦରେ ରହିପାରିବେ । ଯେଉଁମାନେ ନିର୍ଭୀକ ଓ ସାହସୀ ନୁହନ୍ତି, ସେମାନେ ସବୁବେଳେ କୌଣସି ଏକ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟପାଇଁ ସମୟକୁ ଅପେକ୍ଷା କରନ୍ତି । "ସମୟ ଆସିନାହିଁ" କହନ୍ତି । ଯେଉଁମାନେ ସମୟକୁ ଚାକି ରହନ୍ତି, ସେମାନେ ବିଚାରନ୍ତି ତାଙ୍କ ଆଗଗୋଡ଼ରେ କଣ୍ଟା ଫୁଟିବ ନାହିଁ ।ଜାତୀୟ ମୁକ୍ତିର ଚାବି ଆପେ ଆପେ ତାଙ୍କ ହାତ ମୁଠାକୁ ଆସିଯିବ। ଏଭଳି ବ୍ୟକ୍ତି ଜାତୀୟ ଜୀବନକୁ ସମୃଦ୍ଧକରି ଜାତିର ଘଡ଼ି ସନ୍ଧି ମୁହୂର୍ତ୍ତରେ ଜାତିକୁ ନେତୃତ୍ୱ ଦେଇପାରିନାହାନ୍ତି ।ପୁଣ୍ୟାତ୍ମା ଗୋପବନ୍ଧୁ ଉତ୍କଳ ସମ୍ମିଳନୀରେ ଯଥାର୍ଥରେ କହିଥିଲେ, "ଯାହାର ଥରେ ସମୟ ଆସିନାହିଁ, ତାହାର ବୋଧହୁଏ କେବେ ସମୟ ଆସିବ ନାହିଁ ।" ଯେଉଁମାନେ ଜାତିର ମୁକ୍ତିପାଇଁ କାମ କରୁଛନ୍ତି, ସେମାନେ ବହୁ କଷ୍ଟ, ବହୁ ଯନ୍ତଣା ସହୁଛନ୍ତି । କେତେ ଯନ୍ତଣା ସହିବାକୁ ଆମର ବଳ ଅଛି ଏବଂ ଏହି ଜାତିର ଆନ୍ଦୋଳନରେ ଯୋଗଦେଲେ କେତେ ଯନ୍ତଣା ଠିକ୍ ମିଳିବ, ତାହା ଆମେ ସହି ପାରିବା କି ନାଁ ଏକଥା ମଧ ବିଚାରୀ ହିସାବ କିତାବ କରି କେହିଁ ଜାତୀୟ ଆନ୍ଦୋଳନରେ ଯୋଗ ଦିଅନ୍ତି ନାହିଁ । " ସମୟ ଆସିନାହିଁ-ଏ କେବଳ ଅକର୍ମା ଭୀରୁର ବଚନ। ଏ ଗୋଟାଏ ଦାସତ୍ୱର ମୋହ ।" ସାହସୀ ବ୍ୟକ୍ତି ଏସବୁ ହିସାବ

କିତାବର ଉର୍ଦ୍ଧ୍ୱରେ ଥା'ନ୍ତି । ସେମାନଙ୍କର ପ୍ରଚଣ୍ଡ ଆତ୍ମବିଶ୍ୱାସ ଘୋର ଦୁର୍ଦ୍ଦିନରେ ମଧ୍ୟ ଆତ୍ମପ୍ରତ୍ୟୟ ନେଇ ଲଢ଼ିବାର ଶକ୍ତି ସେମାନଙ୍କୁ ଯୋଗାଏ । ସେହିମାନେ ହିଁ ଯଥାର୍ଥରେ ନେତୃପଦ ବାଚ୍ୟ ।

ଆଜି ସେହିଭଳି ଜଣେ ନିର୍ଭୀକ , ସାହସୀ ,ରାଜନୀତିଜ୍ଞ, କୂଟନୀତି ବିଶାରଦ ,ସ୍ପଷ୍ଟବାଦୀ ,ସୁଦକ୍ଷ ଜନନେତା ଓଡ଼ିଶାକୁ ନେତୃତ୍ୱ ଦେଉଛନ୍ତି । ଓଡ଼ିଶାର ଏହି ବରିଷ୍ଠ ନେତା ଶ୍ରୀ ବିଜୟାନନ୍ଦ ପଟ୍ଟନାୟକ (ବିଜୁବାବୁ ) ବହୁ ଘାତ ପ୍ରତିଘାତ ମଧ୍ୟରେ ଗତ ଚାରିଦଶନ୍ଧି ଧରି ଦେଶର ରାଜନୈତିକ ଜୀବନ ଗଭୀର ଭାବରେ ଜଡିତ ହୋଇ ସାହସିକତା ପ୍ରଦର୍ଶନପୂର୍ବକ ଜାତୀୟ ଲକ୍ଷ୍ୟ ପୂରଣ ନିମନ୍ତେ ପ୍ରଚେଷ୍ଟା କରି ଆସିଛନ୍ତି । ଆଜି ତାଙ୍କର ୭୫ ତମ ଜୟନ୍ତୀ ଦିବସ । ବାର୍ଦ୍ଧକ୍ୟର ସୀମାରେ ପହଞ୍ଚି ମଧ୍ୟ ଯେଉଁ ଦୃଢ଼ତା ଓ ଦକ୍ଷତାର ସହ କଠୋର ପରିଶ୍ରମ କରି ସେ ଦେଶର ଦୁର୍ଦ୍ଦିନରେ ଓଡ଼ିଶାକୁ ନେତୃତ୍ୱ ଦେଇଛନ୍ତି, ତାହା ଦେଖିଲେ ତାଙ୍କ ଭିତରେ ଯେ ଅଖଣ୍ଡ ଯୌବନସୁଲଭ ଉଦ୍ଦିପନା, କର୍ମଶକ୍ତି ଏବଂ ଦୃଢ଼ତା ପରିପୂର୍ଣ୍ଣ ହୋଇ ରହିଛି, ଏକଥା ସମସ୍ତେ ମୁକ୍ତ କଣ୍ଠରେ ସ୍ୱୀକାର କରିବେ । ପୁରୁଷକାରରେ ତାଙ୍କର ଯେଭଳି ବିଶ୍ୱାସ, ଯୁବଶକ୍ତି ଉପରେ ସେହି ଭଳି ଆସ୍ଥା ଏବଂ ବିପଦ ମଧ୍ୟକୁ ଲମ୍ଫ ପ୍ରଦାନ କରିବାରେ ସେ ସେହିଭଳି ସମର୍ଥ । ସେ ଆଶାବାଦୀ, ପ୍ରଗତିପନ୍ଥୀ ଓ ଦୁଃସାହସିକ ପଦକ୍ଷେପ ନେବା ନିମନ୍ତେ ସଦା ପ୍ରସ୍ତୁତ ଏକ ଅନନ୍ୟସାଧାରଣ ବ୍ୟକ୍ତିତ୍ୱ । ସେ ଏକାଧାରରେ ଜଣେ ପ୍ରତିଷ୍ଠିତ ଶିଳ୍ପପତି ଏବଂ ଜନନେତା। ବିଜ୍ଞାନକୁ ଲୋକପ୍ରିୟ କରିବା ଦିଗରେ ଶ୍ରେଷ୍ଠ ଅବଦାନ ଥିବା ବୈଜ୍ଞାନିକଙ୍କୁ ଯେଉଁ କଳିଙ୍ଗ ପୁରସ୍କାର ଦ୍ୱାରା ସମ୍ମାନିତ କରାଯାଏ, ବିଜୁବାବୁ ତା'ର ସ୍ରଷ୍ଟା । କଳିଙ୍ଗ ଟ୍ରଷ୍ଟ ପ୍ରତିଷ୍ଠା କରି ବହୁ ମେଧାବୀ ଛାତ୍ର ଛାତ୍ରୀଙ୍କୁ ଅଧ୍ୟୟନ ପାଇଁ ସେ ଯେଉଁଭଳି ସାହାଯ୍ୟ ଦେଇ ଆସୁଛନ୍ତି, ତାହା ଉଲ୍ଲେଖ ଯୋଗ୍ୟ। ସମଗ୍ର ଭାରତ ବର୍ଷରେ ଜଣେ ପ୍ରତିଷ୍ଠିତ ଅଗ୍ରଗାମୀ ନେତା ଭାବରେ ତାଙ୍କର ଖ୍ୟାତି ରହିଛି । ୧୯୪୧ ଅଗଷ୍ଟ ସଂଗ୍ରାମ ସମୟରେ ସେ ଜୟପ୍ରକାଶ ପ୍ରମୁଖଙ୍କୁ ସାହାଯ୍ୟ କରି ଗିରଫ ହୋଇଥିଲେ ।ତରୁଣ ବୟସରେ ସେ ଯେଭଳି ଆପଣା ଜୀବନକୁ ବିପନ୍ନ କରି ଇଣ୍ଡୋନେସିଆର ଜାତୀୟବାଦୀ ନେତା ଡକ୍ଟର ସୁଲତାନ ସାରିଆର୍‌ଙ୍କୁ ଡ଼ଚ୍ ଶାସକଙ୍କ କବଳରି ମୁକ୍ତ କରି ଉଡ଼ାଜାହାଜରେ ଭାରତ ନେଇ ଆସି ତାଙ୍କର ଅମୂଲ୍ୟ ଜୀବନ ରକ୍ଷା କରିଥିଲେ, ତାହା ଇତିହାସ କେବେହେଲେ ଭୁଲିବ ନାହିଁ। ଏଥିପାଇଁ ଇଣ୍ଡୋନେସିଆ ବାସୀ

ତାଙ୍କୁ'ଭୂମିପୁତ୍ର' ରୂପେ ପୂଜା କରୁଛନ୍ତି । ପ୍ରଚଣ୍ଡ ଦେଶପ୍ରେମର ନିଦର୍ଶନ ସ୍ୱରୂପ ଭାରତ ପାକିସ୍ଥାନ ଯୁଦ୍ଧବେଳେ ବିଜୁବାବୁଙ୍କର ଭୂମିକା ସର୍ବଜନବିଦିତ। ଏହି ଯୁଦ୍ଧ ସମୟରେ ହିମାଳୟର ବରଫାବୃତ ଅଞ୍ଚଳରେ ଭାରତୀୟ ସେନାବାହିନୀ ଖାଦ୍ୟ ସାମଗ୍ରୀପାଇଁ ଅପେକ୍ଷା କରି ରହିଥାନ୍ତି । ସୁଦକ୍ଷ ଚାଳକ, ଓଡିଶାର ବରପୁତ୍ର ବିଜୁବାବୁ ଦୁଃସାହସିକତାର ସହ ପରିବହନ ବିମାନରେ ଖାଦ୍ୟସାମଗ୍ରୀ ନେଇ ସର୍ବପ୍ରଥମେ ସେଠାରେ ପହଞ୍ଚିଥିଲେ ।ସାଙ୍ଗରେ ଥିଲେ ତତ୍‌କାଳୀନ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରାଗାନ୍ଧୀ । ପ୍ରଥମ ଓଡ଼ିଆପୁଅ ସଂଗ୍ରାମରତ ସୈନିକମାନଙ୍କର ଜୀବନ ରକ୍ଷା କରି ଉଚ୍ଚ ପ୍ରଶଂସିତ ହୋଇଥିଲେ ଏବଂ ଓଡ଼ିଶାର ଗୌରବ ବୃଦ୍ଧି କରିଥିଲେ । ସର୍ବ ଭାରତୀୟ ରାଜନୀତିରେ ଜଣେ ଜାତୀୟ ନେତା ଭାବରେ ବିଜୁବାବୁଙ୍କର ଅଖଣ୍ଡ ପ୍ରତିଷ୍ଠା ଥିଲା ଏବଂ ବର୍ତ୍ତମାନ ମଧ୍ୟ ସେ ଭାରତୀୟ ରାଜନୀତିରେ ଜଣେ ସୁ ପ୍ରତିଷ୍ଠିତ ନେତା ଭାବରେ ସମ୍ମାନର ଅଧିକାରୀ ।

ଓଡ଼ିଆ ସ୍ୱାଭିମାନର ପ୍ରତୀକ ବିଜୁବାବୁଙ୍କର ବ୍ୟକ୍ତିତ୍ୱ ଅନନ୍ୟସାଧାରଣ। ଦୀର୍ଘକାଳ କ୍ଷମତା ରାଜନୀତିରେ ନ ରହିଲେ ମଧ୍ୟ ରାଜନୈତିକ କ୍ଷେତ୍ରରେ ଜଣେ ପ୍ରଭାବଶାଳୀ ବ୍ୟକ୍ତି ଭାବରେ ସେ ଭାରତୀୟ ରାଜନୀତିରେ ମୁଖ୍ୟ ଭୂମିକା ଗ୍ରହଣ କରିଛନ୍ତି । ଆଜି ଦୀର୍ଘ ୨୭ ବର୍ଷ ପରେ ଓଡ଼ିଶା ବାସୀ ଏହି କୁଶଳୀ,ଉଚ୍ଚାଭିଳାଷୀ, ସମ୍ବେଦନଶୀଳ ଜନନେତା, ବିଜୁପଟ୍ଟନାୟକଙ୍କ ଉପରେ ଗଭୀର ଆସ୍ଥା ସ୍ଥାପନ କରି ତାଙ୍କ ହାତରେ ଶାସନ ଡ଼ୋର ଅର୍ପଣ କରିଛନ୍ତି। ସେ ନିରାମୟ ଶରୀରରେ କର୍ମ ଦକ୍ଷତା ସହ ଏହି ଗୁରୁ ଦାୟିତ୍ୱ ବହନ କରି ଦେଶବାସୀଙ୍କର ଆଶା ଆକାଙ୍କ୍ଷା ପୂରଣ କରନ୍ତୁ ଏବଂ ଦୀର୍ଘଜୀବୀ ହୁଅନ୍ତୁ- ଏହା ପ୍ରତ୍ୟେକ ଓଡ଼ିଶାବାସୀଙ୍କର ଆନ୍ତରିକ କାମନା । ତାଙ୍କର ବଳିଷ୍ଠ ନେତୃତ୍ୱରେ ଆକର୍ଷିତ ଓଡ଼ିଶା ବାସୀ ପୂର୍ଣ୍ଣ ବିଶ୍ୱାସ କରୁଛନ୍ତି ଯେ ନୀତିନିଷ୍ଠ ଭାବରେ ଅବହେଳିତ ଓଡ଼ିଶାର ପୂର୍ବ ସମ୍ମାନ ଫେରାଇ ଆଣିବା ଦିଗରେ କାର୍ଯ୍ୟ କରିବା ପାଇଁ ଭଗବାନ ତାଙ୍କୁ ଶକ୍ତି ଦେବେ,ଏହାହିଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ।

# ବିଜୁବାବୁଙ୍କ ବହୁ କାର୍ଯ୍ୟ ସ୍ମରଣୀୟ

**ଚନ୍ଦ୍ରଶେଖର ମହାପାତ୍ର**

ନିକଟରେ ଜୟଶ୍ରୀ କେମିକାଲର ଜଣେ ଅଫିସର କହିଲେ ୨୫ ବର୍ଷ ପୂର୍ବେ ଏହି ଶିଳ୍ପର ପ୍ରତିଷ୍ଠାତା ଶ୍ରୀ ବାଙ୍ଗୁର କଲିକତାରୁ ଆନ୍ଧ୍ର ଯାଉଥିବା ବେଳେ ସ୍ୱଳ୍ପ ସମୟ ପାଇଁ ଭୁବନେଶ୍ୱରରେ ଅବସ୍ଥାନ କରିଥିଲେ। ବିଜୁ ବାବୁଙ୍କ ସହିତ ତାଙ୍କର ପୂର୍ବରୁ ପରିଚୟ ଥିଲା । ସେତେବେଳେ ବିଜୁବାବୁ ମୁଖ୍ୟମନ୍ତ୍ରୀ ଥିଲେ । ତେଣୁ ଭଦ୍ରତା ଦୃଷ୍ଟିରୁ ତାଙ୍କ ସହିତ ଶ୍ରୀ ବାଙ୍ଗୁର ଦେଖା କରି ଆଲୋଚନା ପ୍ରସଙ୍ଗରେ କହିଲେ ଏକ ନୂତନ ଶିଳ୍ପ ପ୍ରତିଷ୍ଠା ପାଇଁ ସେ ଆନ୍ଧ୍ର ଯାଉଛନ୍ତି । ଏହା ଶୁଣି ବିଜୁବାବୁ ତତ୍‌କ୍ଷଣାତ୍ ଶିଳ୍ପ ବିଭାଗ ସେକ୍ରେଟେରୀଙ୍କୁ ଡ଼କାଇଲେ । ଆନ୍ଧ୍ର ଅପେକ୍ଷା ଶିଳ୍ପ ପ୍ରତିଷ୍ଠା ପାଇଁ ତାଙ୍କୁ ଓଡ଼ିଶାରେ ଅଧିକ ସୁବିଧା ମିଳିବ ଓ ବିଜୁଳି ଶକ୍ତି ପ୍ରତି ଇଉନିଟ୍ ପିଛା ଏକ ପଇସା ଊଣାରେ ଦେବ ବୋଲି ଶିଳ୍ପ ବିଭାଗ ସେକ୍ରେଟେରୀଙ୍କ ସହିତ ଆଲୋଚନା କରି ବିଜୁବାବୁ ତାଙ୍କୁ ଜଣାଇ ଦେଲେ । ତେଣୁ ଅନୁନ୍ନତ ଓଡ଼ିଶାରେ ଶିଳ୍ପ ପ୍ରତିଷ୍ଠା ପାଇଁ ଆଗ୍ରହ ଥିଲେ ସେହିଠାରେ ଚୁକ୍ତି ସାକ୍ଷର କରିବାକୁ ବିଜୁବାବୁ ତାଙ୍କୁ କହିଥିଲେ। ତା'ପରେ ଶିଳ୍ପ ବିଭାଗ ସେକ୍ରେଟାରୀଙ୍କ କୋଠରୀକୁ ଯାଇ ସେ ଚୁକ୍ତି ସ୍ୱାକ୍ଷର କଲେ । ଏବେ ବିଜୁଳିଶକ୍ତି ଊଣା ମିଳୁଥିଲେହେଁ ଶୁଳ୍କ ହାର ବୃଦ୍ଧି ପାଇଛି । ବାକି ରଖିଲେ ଚକ୍ରବୃଦ୍ଧି ହାରରେ ସୁଧ ସହିତ ପରିଶୋଧ କରିବାକୁ ପଡୁଛି । ଓଡ଼ିଶା ବାହାରୁ ଯେତିକି ମୂଲ୍ୟରେ ବିଜୁଳି ମିଳୁଛି ଓଡ଼ିଶାର ବିଜୁଳି ପାଇଁ ତା' ଅପେକ୍ଷା ଅଧିକ ଦେବାକୁ ପଡୁଛି । ଫଳରେ ଏହି କାରଖାନା ୬କୋଟି ଟଙ୍କା ପର୍ଯ୍ୟନ୍ତ କ୍ଷତି ସହ୍ୟ କଲାଣି । ବିଜୁଳି ଅଭାବରୁ ଉତ୍ପାଦନ କ୍ରମାଗତ ହ୍ରାସ ପାଉଛି । ଆଉ କେତେଦିନ କର୍ମଚାରୀଙ୍କୁ ଅନିୟମିତ ବେତନ ଦେଇ ଏହି କାରଖାନା ଚଳାଇ ହେବ ସେ ବିଷୟରେ ସେ ଗଭୀର ଆଶଙ୍କା କରିଥିଲେ । କାରଣ ଆପତ୍ତି ଶୁଣି ପ୍ରତିକାର କରିବାକୁ କେହି ନାହାନ୍ତି ।

୧୯୬୦ ମସିହା ଅକ୍ଟୋବର ୨ ତାରିଖ ମହାତ୍ମାଗାନ୍ଧିଙ୍କ ଜୟନ୍ତୀ ଦିନ ଓଡ଼ିଶାର ସାମ୍ବାଦିକତା କ୍ଷେତ୍ରରେ ଏକ ନୂତନ ଅଧ୍ୟାୟ ସୃଷ୍ଟି ହେଲା ।

ସେଦିନ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଦ୍ୱାରା ପ୍ରତିଷ୍ଠିତ କଳିଙ୍ଗ ଟ୍ରଷ୍ଟ ପକ୍ଷରୁ 'କଳିଙ୍ଗ' ନାମରେ ଏକ ନୂତନ ଦୈନିକ ସମ୍ବାଦପତ୍ର ଫ୍ଲାଟବେଡ୍ ମେସିନରୁ ମୁଦ୍ରଣ ଆରମ୍ଭ ହେଲା । ବାସ୍ତବରେ ଅକ୍ଟୋବର ୧ ତାରିଖ ସଂନ୍ଧ୍ୟାରୁ ଏହା ପ୍ରକାଶିତ ହେଲା । ଓଡ଼ିଶାର ଦୈନିକ ସମ୍ବାଦ ପତ୍ରଗୁଡ଼ିକ ମୁଖ୍ୟତଃ ସଂନ୍ଧ୍ୟାବେଳେ ପ୍ରକାଶିତ ହୁଏ । ଆଜି ସଂନ୍ଧ୍ୟାରେ ପ୍ରକାଶିତ ସମ୍ବାଦ ପତ୍ରରେ ଆସନ୍ତାକାଲି ତାରିଖ ହୋଇଥାଏ । କେବଳ ମୁଦ୍ରିତ ହେଉଥିବା ସ୍ଥାନରେ ଏହା ସଂନ୍ଧ୍ୟାବେଳେ ପାଠକମାନଙ୍କୁ ମିଳିଥାଏ । ଅନ୍ୟ ସମସ୍ତ ସ୍ଥାନରେ ଏହା ପରଦିନ ସକାଳୁ ବିକ୍ରି ହୁଏ । ଓଡ଼ିଶା ୧୮୮୬ ପର୍ଯ୍ୟନ୍ତ କୃଷି, ଶିକ୍ଷା, ଶିଳ୍ପ ଓ ରାସ୍ତାଘାଟ କ୍ଷେତ୍ରରେ ଏକ ଅନୁନ୍ନତ ଓ ପଛୁଆ ରାଜ୍ୟଭାବେ ପରିଚିତ । ମାତ୍ର ବିଜୁବାବୁ ପ୍ରଥମେ 'କଳିଙ୍ଗ' ପ୍ରକାଶ କରି ସାମ୍ବାଦିକ ଓ ସାମ୍ବାଦିକତା କ୍ଷେତ୍ରରେ ନୂତନ ଆଶା ଓ ଉତ୍ସାହ ସୃଷ୍ଟି କରିଥିଲେ । ସେତେବେଳେ ଓଡ଼ିଶାରେ ପ୍ରକାଶିତ ହେଉଥିବା ସମ୍ବାଦପତ୍ରମାନଙ୍କରେ ଥିବା ସାମ୍ବାଦିକମାନେ ସମାଜରେ ଭଦ୍ରବ୍ୟକ୍ତିଭାବେ ଚଳିବା ପାଇଁ ଆୟ କରୁ ନଥିଲେ। ପ୍ରକାଶକମାନେ ଏଥିରୁ ରାଜନୈତିକ ଓ ଅର୍ଥନୈତିକ ସୁବିଧା ହାସଲ କରି ସାମ୍ବାଦିକମାନଙ୍କୁ ନ୍ୟାର୍ଯ୍ୟ ପ୍ରାପ୍ୟରୁ ବଞ୍ଚିତ କରୁଥିଲେ । ସମାଜଭଳି ପୁରାତନ ସମ୍ବାଦ ପତ୍ରରେ ସାମ୍ବାଦିକ ମାନେ ସେତେବେଳେ ଯାହାପାଉଥିଲେ ତା ପକ୍ଷେ ୨୦୦ ଟଙ୍କା ଅଧିକ ଦେବାକୁ କହିବାରୁ ବିଜବାବୁଙ୍କ ଆଡ଼କୁ ବହୁ ସାମ୍ବାଦିକ ଆକୃଷ୍ଟ ହୋଇଥିଲେ । ମାତ୍ର ବିଜୁବାବୁ ସେତିକିରେ ସନ୍ତୁଷ୍ଟ ନଥିଲେ । ସେ ବାରମ୍ବାର କହୁଥିଲେ ପଞ୍ଚାୟତ ଶିଳ୍ପ ପ୍ରତି ପଞ୍ଚାୟତରେ ପ୍ରତିଷ୍ଠିତ ହେବ। ନଳକୂପଦ୍ୱାରା ପାନୀୟଜଳ ସମସ୍ତ ଗ୍ରାମକୁ ଯୋଗାଣ ହେବ । ପ୍ରତି ପଞ୍ଚାୟତକୁ ଖଣ୍ଡେ ଦୈନିକ କଳିଙ୍ଗ ପଠାଇବା ପାଇଁ ଅନ୍ତତଃ ୫୦ ହଜାର ମୁଦ୍ରଣ କରିବାକୁ ପଡ଼ିବ । ଏଥିପାଇଁ ରୋଟାରୀ ମେସିନ୍ ଆସିବ । ସେତେବେଳକୁ କେବଳ ପ୍ରଜାତନ୍ତ୍ର ଏକ କ୍ଷୁଦ୍ର ରୋଟାରୀ ମେସିନରେ ଘଣ୍ଟାରେ ୩ ହଜାର ମୁଦ୍ରଣ ହେଉଥାଏ । ମାତ୍ର ବିଜୁବାବୁ ଅମୃତ ବଜାର ପତ୍ରିକାରୁ ତା' ଅପେକ୍ଷା ବୃହତ୍ତର ରୋଟାରୀ ମେସିନ ଆଣିଥିଲେ । ସେଥିରେ ଅମୃତ ବଜାରର କଟକ ସଂସ୍କରଣ ଏବଂ କଳିଙ୍ଗ ପ୍ରକାଶ ପାଇଁ ବ୍ୟବସ୍ଥା କରିଥିଲେ ।

୧୯୬୧ ମସିହା ନିର୍ବାଚନ ଓଡ଼ିଶାରେ ସେ ପ୍ରଦେଶ କଂଗ୍ରେସ ସଭାପତିଭାବେ ପରିଚାଳନା କଲେ । କଂଗ୍ରେସ ୧୪୭ଟି ସ୍ଥାନରୁ ୮୨ଟିରେ ବିଜୟୀ ହେଲା । ତା ପୂର୍ବରୁ ନିର୍ବାଚନରେ କଂଗ୍ରେସ ଓଡ଼ିଶାରେ ସଂଖ୍ୟାଗରିଷ୍ଠ ହୋଇନଥିଲା । ୧୯୫୬ ମସିହାରେ ସଂଖ୍ୟାଗରିଷ୍ଠତା ନଥିବାରୁ ଟଣା ଓଟରା କରି ମହତାବ ବାବୁ କିଛିଦିନ ପାଇଁ ମନ୍ତ୍ରିମଣ୍ଡଳ ଗଠନ କଲେ । ମାତ୍ର ତଦ୍ୱାରା ରାଜନୈତିକ ସ୍ଥିରତା ଆସିଲା ନାହିଁ । ତେଣୁ ଗଣତନ୍ତ୍ର ପରିଷଦ ସହିତ ସେ ମିଳିତ ମନ୍ତ୍ରିମଣ୍ଡଳ ଗଠନ କରିଥିଲେ । ଏହି ମିଳିତ ମନ୍ତ୍ରିମଣ୍ଡଳ ଦ୍ୱାରା ଓଡ଼ିଶାର ଯୋଜନାଅନୁସାରେ ପ୍ରଗତି ବାଧାପ୍ରାପ୍ତ ହେବାରୁ ବିଜୁବାବୁ ଏହା ଭାଙ୍ଗିଦେବାକୁ ଚାହୁଁଥିଲେ । ସେ ପ୍ରଦେଶ କଂଗ୍ରେସ ସଭାପତି ନିର୍ବାଚିତ ହେବାପରେ ଏହା ସହଜସାଧ ହୋଇଥିଲା । ମୁଖ୍ୟମନ୍ତ୍ରୀ ହେବାପରେ ପାରାଦ୍ୱୀପରେ ଭାରତର ବୃହତ୍ତମ ଓ ଗଭୀରତମ ବଂଦର ନିର୍ମାଣ ପାଇଁ ପ୍ରଥମ ଉଦ୍ୟମ କଲେ । ଖଣିଜ ପଦାର୍ଥ ରପ୍ତାନି ନିମନ୍ତେ ବମ୍ବେ ଭଳି ଓଡ଼ିଶାରେ ଏକ୍ସପ୍ରେସ୍ ପଥ ନିର୍ମାଣ କଲେ । ଶିଳ୍ପ ପ୍ରସାର ପାଇଁ ଆଇ.ଡ଼ି.ସି. ବା ଶିଳ୍ପ ବିକାଶ ସଂସ୍ଥା ଗଠନ କଲେ ମାତ୍ର ଏହି ସବୁ ସଂସ୍ଥାଦ୍ୱାରା ଦଶବର୍ଷ ପରେ ରାଜ୍ୟର ବିକାଶ ପାଇଁ ଦ୍ୱାର କିପରି ଉନ୍ମୁକ୍ତ ହେବ ତାହାହିଁ କଳ୍ପନା କରି ପ୍ରବନ୍ଧ, ଗଳ୍ପ ଓ କବିତା ଆଦି ଲେଖିବାକୁ ଉତ୍ସାହିତ କରୁଥିଲେ । ୧୯୬୧ ମସିହାରେ ପାରାଦ୍ୱୀପ ବନ୍ଦର ପ୍ରତିଷ୍ଠାଦ୍ୱାରା ଓଡ଼ିଶାରେ ବାଣିଜ୍ୟ ବିକାଶର ଯେଉଁ କଳ୍ପନା କରାଯାଇଥିଲା, ୧୯୭୨ ମସିହା ବେଳକୁ ତା ଅପେକ୍ଷା ବାଣିଜ୍ୟ ବହୁ ପରିମାଣରେ ଅଧିକ ହୋଇଥିଲା । ମାତ୍ର ନଳକୂପ ଜରିଆରେ ଗ୍ରାମାଞ୍ଚଳର ପ୍ରାକୃତିକ ସମ୍ପଦ ବିନିଯୋଗ କରି ଶିଳ୍ପ ପ୍ରସାର ପାଇଁ ସେ ଯେଉଁ କଳ୍ପନା କରିଥିଲେ, ତାଙ୍କ ସହକର୍ମୀମାନଙ୍କ ନିଷ୍ଠା ଅଭାବରୁ ତାହା ବାସ୍ତବରେ ପରିଣତ ହେଲା ନାହିଁ ।

ସେ ସମୃଦ୍ଧ କଳିଙ୍ଗର ସର୍ବଦା କଳ୍ପନା କରନ୍ତି । କଳିଙ୍ଗ ଭଳି ଆଜିର ଦରିଦ୍ର ଓଡ଼ିଶାକୁ ସମୃଦ୍ଧ କରିବାକୁ ତାଙ୍କର ସ୍ୱପ୍ନ ବାସ୍ତବରେ ପରିଣତ ହେବାକୁ ଏବେ ଦୀର୍ଘପଥ ଅତିକ୍ରମ କରିବାକୁ ପଡ଼ିବ । ତାଙ୍କର ଏହି ଅଦ୍ୟମ ଅଭିଳାଷକୁ ବାସ୍ତବରେ ପରିଣତ କରିବାପାଇଁ ସେ ଅବିଶ୍ରାନ୍ତ ଉଦ୍ୟମ ଚଳାଇଛନ୍ତି । ତାଙ୍କର କ୍ଷୁଦ୍ର ଚିନ୍ତା କେବେ ନଥିଲା । ଏବେ ମଧ୍ୟ ନାହିଁ । କଳିଙ୍ଗ

ସମ୍ବାଦପତ୍ର ଜୀବିତ ଥିଲେ ତାହା ହୁଏତ ଆଜି ଓଡ଼ିଶାର ବୃହତ୍ତମ ସମ୍ବାଦପତ୍ର ଅନୁଷ୍ଠାନରେ ପରିଣତ ହୋଇ ଥାଆନ୍ତା । ମାତ୍ର କେତେକ ଆପଣା ସ୍ୱାର୍ଥସର୍ବସ୍ୱ ବ୍ୟକ୍ତି ନିଜର ସ୍ୱାର୍ଥସାଧନ ପାଇଁ ଉଦ୍ୟମ କରିବାରୁ ଏହି ଅନୁଷ୍ଠାନରେ କେବଳ ଖର୍ଚ୍ଚ ବୃଦ୍ଧି ପାଇଲା । ଶେଷରେ ମୁଦ୍ରାଯନ୍ତ୍ର ଆଦି ବିକ୍ରୟ ହେଲା । ତାହାଥିଲା ବର୍ତ୍ତମାନ ମଧ୍ୟ କଳିଙ୍ଗର ପୁନଃପ୍ରକାଶ ସମ୍ଭବ ହୋଇଥାନ୍ତା ।

କାମରାଜ ଯୋଜନାରେ ସେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଲାବେଳେ ତାଙ୍କର ବହୁ ବନ୍ଧୁ ଓ ଶୁଭେଚ୍ଛୁ ତାଙ୍କୁ ଇସ୍ତଫା ନ ଦେଇ କିଛିଦିନ ଓଡ଼ିଶାର ଦ୍ରୁତ ବିକାଶ ପାଇଁ ଉଦ୍ୟମ କରିବାକୁ କହିଥିଲେ । କାମରାଜ ଯୋଜନାରେ ଗଠନମୂଳକ ବିଚାର ନଥିଲା ।ତେଣୁ ଇସ୍ତଫା ଦେବା ଲୋକଙ୍କ ପାଇଁ ପରବର୍ତ୍ତୀ କାର୍ଯ୍ୟକ୍ରମ କିଛି ନ ଥିଲା । ଏହା ଗାନ୍ଧିଜୀଙ୍କ ବିଚାରସମ୍ମତ ନୁହେଁବୋଲି ସେତେବେଳେ କଳିଙ୍ଗରେ ମୁଁ ଏକ ପ୍ରବନ୍ଧ ଲେଖିଥିଲି । କାମରାଜ ଯୋଜନାରେ ମୁଖ୍ୟମନ୍ତ୍ରୀ ପଦରୁ ସେ ଇସ୍ତଫା ଦେବା ପରେ ଶତ୍ରୁମାନେ ତାଙ୍କୁ ନିନ୍ଦିତ କରିବାପାଇଁ ତଦନ୍ତ କମିଶନ ନିଯୁକ୍ତି ପାଇଁ ଦାବୀ କଲେ । ତାଙ୍କ ବିରୁଦ୍ଧରେ କମିଶନ ନିଯୁକ୍ତ ହେଲା । ତାଙ୍କଦ୍ୱାରା ପ୍ରତିଷ୍ଠିତ କଳିଙ୍ଗ ଟିଉବ୍‌ସରୁ ସେ ମୁଖ୍ୟମନ୍ତ୍ରୀ ଥିବାବେଳେ ବହୁ ଅଧିକା ଦାମରେ ସରକାର ଟିଉବ୍ କିଣିଥିବା ଅଭିଯୋଗ ହୋଇଥିଲା । ମାତ୍ର ଜଷ୍ଟିସ୍ ଖାନ୍ନା ସମସ୍ତ ଅଭିଯୋଗର ତଦନ୍ତ କରି ଶେଷରେ ରିପୋର୍ଟ ଦେଲେ ଯେ ବିଜୁ ପଟ୍ଟନାୟକ କଳିଙ୍ଗ ଟିଉବ୍‌ସର ବିକା କିଣା ସହିତ ସଂପୃକ୍ତ ନାହାନ୍ତି କିମ୍ବା ଏହି କାରବାରରେ ସେ ପଇସାଟିଏ ନିଜେ ଆୟ କରିନାହାନ୍ତି । ଯେଉଁମାନେ ତାଙ୍କୁ ନିନ୍ଦିତ କରିବାକୁ ଷଡ଼ଯନ୍ତ୍ର ଚଳାଇଥିଲେ ସେମାନେ ଅନ୍ୟ କମିଶନ୍‌ରେ ନିନ୍ଦିତ ହେଲେ । ତୁହାଇ ତୁହାଇ ପୁଟ ଦେଇ ନିଜକୁ ସୁନା କରିବା ଉଦ୍ୟମ ସେମାନଙ୍କର ବ୍ୟର୍ଥ ହେଲା। ବିଜୁବାବୁ ଅଗ୍ନି ପରୀକ୍ଷାରେ ସଂପୂର୍ଣ୍ଣ ପାପହୀନ ନିର୍ମଳ ବିବେଚିତ ହେଲେ। ପ୍ରଥମେ ଓଡ଼ିଶା ଟେକ୍‌ସଟାଇଲ ମିଲ୍ ପ୍ରତିଷ୍ଠା କରି ସେ ଚୌଦ୍ୱାରରେ ଶିଳ୍ପ ଆରମ୍ଭ କଲେ । ତା'ପରେ ସେଠାରେ ସେ କଳିଙ୍ଗ ଟିଉବ୍‌ସ ପ୍ରତିଷ୍ଠା କଲେ । ଆଜି ତାଙ୍କଯୋଗୁଁ ଚୌଦ୍ୱାର ଏକ ଶିଳ୍ପ ନଗରୀରେ ପରିଣତ ହୋଇଛି । ତାଙ୍କର ଆଉ ଓଡ଼ିଶା ଟେକ୍‌ସଟାଇଲ ମିଲ କିମ୍ବା କଳିଙ୍ଗ ଟିଉବ୍‌ସ ସହିତ କିଛି ସଂମ୍ପର୍କ ନାହିଁ । ତେଣୁ ଚୌଦ୍ୱାର ଆଜି ନ ହେଲେ ବି କାଲି ତାଙ୍କ ନାମରେ ନାମିତ ହେବ ।

# ଏ ଜାତି କ'ଣ ତାଙ୍କୁ ବୁଝିବ ?

## ଅଧ୍ୟାପକ କାଳିନ୍ଦୀ ବେହେରା

୧୯୮୩ ମସିହା ମେ ମାସର ଏକ ସ୍ମରଣୀୟ ମଧ୍ୟାହ୍ନ । ମୁଣ୍ଡ ଉପରେ ଉତ୍ତପ୍ତ ସୂର୍ଯ୍ୟର ଦେହପୋଡା କିରଣ । ସବୁଆଡେ ଏକ ଅସ୍ୱସ୍ତିକର ପରିବେଶ ସତେକି ଲୁ' ବହୁଛି ।

ଏହି ଦେହପୋଡା ଖରାରେ ଆମର ଗାଡି ଚାଲିଥାଏ । ଆମର ବୋଇଲେ ବିଜୁବାବୁଙ୍କର ସେହି ଚିରପରିଚିତ ଭ୍ୟାନ୍ । ଆଗରେ ବିଜୁବାବୁ ପଛସିଟ୍‌ରେ ମୁଁ, ବନ୍ଧୁ ସହରାଇ ଓରାମଓ ରଘୁନାଥ ହେମ୍ବ୍ରମ୍ । କେନ୍ଦୁଝରରୁ ଆମେ ଚାଲିଥାଉ କରଞ୍ଜିଆ । କରଞ୍ଜିଆରେ ସାଧାରଣ ସଭା ଦିନ ୩ଟାରେ । ମନେ ମନେ ଭାବୁଥାଏ, ଏ ରଡ ନିଆଁଭିଳି ଜଳୁଥିବା ଟାଣ ଖରାରେ ଦିନ ୩ଟାରେ କିଏ ଆସିବ ଏ ସଭାକୁ । ପଛରୁ ଧୀରେ ଧୀରେ ଆମେ କଥାବାର୍ତ୍ତା ହେଉଥାଉ- ବିଜୁବାବୁ କିନ୍ତୁ ନୀରବ- ଚାରିଆଡେ ସତେକି ସାହାରା ! ମଧୁର ନିଝୁମ୍ ନୀରବତା ତାଥେଇ-ତାଥେଇ ନାଚୁଛି । ବିଲସବୁ ଫାଟି ଆଁ କରିଛି । କେଉଁଠି ଫସଲର ଗନ୍ଧ ବି ନାହିଁ । ପୋଖରୀ ଗଡିଆ ଶୁଖି ପଥର । ଏଇ ଖରାରେ ଘାସଶୂନ୍ୟ ବିଲରେ ଗୋରୁଗାଈଙ୍କର କଙ୍କାଳସାର ପଟୁଆର ସତେକି ଚାଲିଛି !

ମୁଁ ବିଜୁବାବୁଙ୍କୁ ନିରେଖି ଚାହିଁଲି । ଖୁବ୍ ଗମ୍ଭୀର ମୁହଁରେ ବିଭିନ୍ନ ପ୍ରକାର ଭାବ ଆସୁଛି, ପୁଣି ମିଳେଇ ଯାଉଛି । ଯେଉଁଠି ସାମାନ୍ୟ ଛୋଟ ଜନପଦଟିଏ ଅଛି ସେଠାରେ ସ୍ତ୍ରୀ-ପୁରୁଷ, ପିଲାଛୁଆଙ୍କ ଭିଡ- ବିଜୁବାବୁଙ୍କୁ ଦେଖିବାର କାମନା- ଜୟ ଜୟକାର ପକାଇବାର ଅସୀମ ଆଗ୍ରହ ।

ମୁଁ ଲକ୍ଷକଲି ଏସବୁ ପ୍ରତି ବିଜୁବାବୁଙ୍କର ସତେକି ଆଗ୍ରହ ନାହିଁ ! ସେ ହସୁଛନ୍ତି । ଲୋକଙ୍କର ଆଗ୍ରହର ଉତ୍ତର ହସି ହସି ଦେଉଛନ୍ତି । ମାତ୍ର ସେଥିରେ ତାଙ୍କର ପ୍ରାଣଭରା ଆନନ୍ଦ ନାହିଁ । ସେହି ସ୍ନେହବତ୍ସଳ ପ୍ରଲେପ ନାହିଁ । ହସିବାକୁ ହେବ । ତେଣୁ ହସୁଛନ୍ତି ।

''କ'ଣ ହେଲା ଦାଦା-ହେଡ୍ ସାର୍ ପୂରାପୂରି ମୁଡ୍ ଆଉଟ୍'' ଖୁବ୍ ଧୀରେ ମୋତେ ପଚାରିଲେ ସହରାଇ ଦାଦା

ଭାବଗମ୍ଭୀର ହୋଇ ଉଠିଲେ, ମୁଁ ବା କିମିତି କହି ପାରିବି । ଏ ଅବସ୍ଥାରେ ତାଙ୍କୁ କିଏ ବା ପ୍ରଶ୍ନ କରିବ ?

ତାଙ୍କୁ ଚାହିଁ ମୋର ବି ଭାବାନ୍ତର ହେଲା । ନୀଳମଣି ବାବୁଙ୍କଠାରୁ ବିଜୁବାବୁଙ୍କ ସଂପର୍କରେ ଶୁଣିଥିବା ଏକ କାହାଣୀ ମନେପଡିଲା । ମନେପଡିଲା ନୁହେଁ, ସତେକି ସେ ପରିବେଶର ମନୋଜ୍ଞ ଦୃଶ୍ୟପଟ୍ଟ ମୋ ଆଗରେ ଉଦ୍‌ଭାସିତ ହୋଇଉଠିଲା ।

ପାରାଦ୍ୱୀପ ବନ୍ଦରର ପ୍ରାକ୍‌ପ୍ରତିଷ୍ଠା ସମୟର କଥା । ସ୍ୱର୍ଗତ ପଣ୍ଡିତ ଜବାହାରଲାଲ ନେହେରୁ ଆସିଥାନ୍ତି । ବନ୍ଦର ପ୍ରତିଷ୍ଠାର ସିଦ୍ଧାନ୍ତ ନେବେ । ବହୁ ଟଣାଓଟରା । ନିଜର ବ୍ୟକ୍ତିତ୍ୱ ବଳରେ ବିଜୁବାବୁ ବନ୍ଦର ପ୍ରତିଷ୍ଠା କରିବାର ନିଷ୍ପତ୍ତି ନେଇଥାନ୍ତି । ଏଥିପାଇଁ ବହୁ ବିରୋଧର ସମ୍ମୁଖୀନ ହୋଇଥାନ୍ତି ସେ । ତେଣୁ ନିଜେ ପ୍ରଧାନମନ୍ତ୍ରୀ ଆସିଥାନ୍ତି ଶେଷ ସିଦ୍ଧାନ୍ତ ଶୁଣାଇବା ପାଇଁ । ଆଶା ନିରାଶା ମଧ୍ୟରେ ନୀଳମଣିବାବୁ ପ୍ରଭୃତି ବ୍ୟସ୍ତ ବିବ୍ରତ ଥିଲାବେଳେ ବିଜୁବାବୁ ଚିରଚଞ୍ଚଳ । ନିଜ ଆତ୍ମବିଶ୍ୱାସରେ ସେ ନିଶ୍ଚିନ୍ତ, ଆଶାବାଦୀ-ନେହେରୁ ତାଙ୍କ ସିଦ୍ଧାନ୍ତକୁ ଆଦୌ ଆଡେଇ ଦେଇପାରିବେନି ।

ବଙ୍ଗୋପସାଗରର କାହିଁ ଅପରୂପ ଦୂର ଦିଗ୍‌ବଳୟ ତଳେ ସୁନାଆଉଟା ରଙ୍ଗରେ ରଞ୍ଜିତ ସୂର୍ଯ୍ୟ ଅସ୍ତ ହେବାକୁ ଯାଉଛନ୍ତି ।

ଡ଼େଣାଏ ଡ଼େଣାଏ ଅସ୍ତଗାମୀ ସୂର୍ଯ୍ୟଙ୍କର ସୁନେଲି କିରଣ ସତେ କି ସମୁଦ୍ର ସାରା ଡ଼େଇଁ ଡ଼େଇଁ ନାଚୁଛି । ଉତ୍ତାଳ ଲହଡ଼ିର ତାଳେ ତାଳେ ଚକ୍ରବାକ ଦମ୍ପତି ବିରହ ରାଗିଣୀ ତୋଳି ଘୁରି ବୁଲୁଛନ୍ତି ।

ଏକ ମନୋଜ୍ଞ ଚିତାକର୍ଷକ ଆମେଜ୍-କବିପ୍ରାଣ ନେହରୁ ଭାବବିହ୍ୱଳ-ବିମୁଗ୍‌ଧ-ସମସ୍ୟାବହୁଳ ଭାରତର ସମସ୍ୟା ବର୍ତ୍ତମାନ ତାଙ୍କ ମନରେ ନାହିଁ । ମନରେ ତାଙ୍କର କେବଳ ରୂପବତୀ ଚିରଚଞ୍ଚଳା ସାଗରକନ୍ୟାର ରୂପସମ୍ଭାର-ମାଇଲ ମାଇଲ ବ୍ୟାପି ଲହଡ଼ିମାଳାର ଅପରୂପ ରୂପ-ବର୍ଣ୍ଣାଢ଼୍ୟ ପରିବେଶ ।

ଏହା ହେଉଛି ପକୃତ ସମୟ । ଏତିକିବେଳେ ପାରାଦ୍ୱୀପ ବନ୍ଦରର ସ୍ରଷ୍ଟା ବିଜୁବାବୁଙ୍କର ବାସ୍ତବ କାର୍ଯ୍ୟକ୍ରମ ଆରମ୍ଭ ହେଲା । ମାତ୍ର ନେହେରୁଙ୍କର

ଏପରି ଅବସ୍ଥାରେ ଧ୍ୟାନଭଗ୍ନ କରିବ କିଏ ? ସେହି ନିର୍ଭୀକ- ଆତ୍ମବିଶ୍ୱାସୀ ବିଜୁବାବୁ ହିଁ ଏ ପରିସ୍ଥିତିରେ ନେହେରୁଙ୍କର ଧ୍ୟାନଭଗ୍ନ କରିଥିଲେ ।

ପାରାଦ୍ୱୀପ ପୋର୍ଟ........

''ଓ-ମୋତେ ଟିକେ ଶାନ୍ତିରେ ରହିବାକୁ ଦେବନି-ସବୁବେଳେ କାମ-କାମ-କାମ'' ।

''ଏ ଗରିବ ଓଡ଼ିଶାର ପେଟପାଟଣା କଥା- ଆପଣ ଓଡ଼ିଶାକୁ ଦେଖନ୍ତୁ। ପ୍ରାକୃତିକ ସମ୍ପଦରେ ଭରପୂର ଏ ଓଡ଼ିଶାର ଅର୍ଥନୈତିକ ବିକାଶପାଇଁ ଏ ବନ୍ଦର ଏକାନ୍ତ ଆବଶ୍ୟକ ।'' ବିଜୁବାବୁଙ୍କର ଆତ୍ମବିଶ୍ୱାସଭରା ଅନୁରୋଧ। ଶେଷରେ ବିଜୁବାବୁଙ୍କ କଥା ରହିଲା- ଜନ୍ମନେଲା ପାରାଦ୍ୱୀପ ବନ୍ଦର। ଦସ୍ତଖତ ଦେଲେ ନେହେରୁ । ଦେଲେ ନୁହେଁ, ଦେବାପାଇଁ ବାଧ୍ୟହେଲେ ସେ ।

ଆଜି ଠିକ୍ ସେହିଭଳି ପରିସ୍ଥିତି । ନିଜେ ବିଜୁବାବୁ ଭାବମଗ୍ନ; କିନ୍ତୁ କାହିଁକି ?

ଦୂରରେ ଫସଲଶୂନ୍ୟ ଫଟା ବିଲରେ ଝାଇଁଝାଇଁଆ ଖରା ନାଚୁଛି। ଗାଡ଼ି ଭିତରେ ଅସହ୍ୟ ଗରମ । କିନ୍ତୁ ବିଜୁବାବୁ ଏପରି ନିଶ୍ଚୁପ୍ ଗମ୍ଭୀର କାହିଁକି ?

''ଗାଡ଼ିରଖ- ବିଜୁବାବୁଙ୍କ କଣ୍ଠସ୍ୱରରେ ଚମକିପଡ଼ି ଆମେ ସମସ୍ତେ ଚାହିଁଲୁ- ବିଜୁବାବୁ ନିଜେ ଡ଼ୋରଖୋଲି ତଳକୁ ଓହ୍ଲାଇ ପଡ଼ିଲେଣି ।

''ଏ ମା-ଶୁଣିଗଲୁ-''

ଆମେ ସମସ୍ତେ ଚାହିଁଲୁ-ଖଣ୍ଡେ ମଇଳା ସାତସିଆଁ ଲୁଗାପିନ୍ଧି ମଧ୍ୟବୟସ୍କା ସ୍ତ୍ରୀ ଲୋକଟିଏ; ଛୁଆଟିଏ କୋଳରେ ଧରିଛି- ଆଗରେ ଆଉ ତିନୋଟି ଛୋଟ ଛୋଟ ପିଲା- ଦେହରେ ହାଡ଼ ଗଣି ହୋଇ ପଡୁଛି- ସତେକି ଧକ୍କା ଖାଇ ଖାଇ ଚାଲିଛନ୍ତି ସେମାନେ । ପିଲାଗୁଡ଼ିଙ୍କର ଦେହରେ ବଳ ନାହିଁ । ସତେକି କୋଳ ଛୁଆଟା କେବଳ କେତେଖଣ୍ଡି ହାଡ଼ର ସମଷ୍ଟି- ଚମ ଧୁଡୁ ଧୁଡୁ- ଶୁଖିଲା ଥନରୁ କ୍ଷୀର ଖାଇବାକୁ ଚେଷ୍ଟା କରୁଛି- ନ ମିଳିବାରୁ ରାହା ଧରି କେମିତି ଚେଁ ଚେଁ ହୋଇ କାନ୍ଦୁଛି -

''ଏ ମା-ଶୁଣୁ ତ ! ଏଇଠିକି ଆ-''

ମୁଣ୍ଡ ଉପରେ ଧୁ ଧୁ ଖରା- ନିର୍ବିକାର ଭାବରେ ବିଜୁବାବୁ ସେହି ଖରାରେ ଠିଆ ହୋଇଛନ୍ତି । ଆମେ ସବୁ ଠିଆହେଲୁ ଯାଇ ପାଖରେ-''କୁଆଡ଼େ ଯାଉଛୁ ମା !'' ବିଜୁବାବୁଙ୍କର ଧୀର ପ୍ରଶ୍ନ ।

''ବିଜୁ ପଟକୁ ଦେଖିବାକୁ- କରଞ୍ଜିଆ ଯିବି ବାବୁ !'' ସ୍ତ୍ରୀ ଲୋକଟିର ନିର୍ଲିପ୍ତ ଉତ୍ତର ।

କରଞ୍ଜିଆ ତଥାପି ୧୫ କିଲୋମିଟରରୁ ଅଧିକ ବାଟ- ଏଇ ଛୁଆଙ୍କୁ ନେଇ ବିଚାରୀ ଏତେବାଟ ଯିବ ? ଆମ ମନରେ ବିସ୍ମୟ ।

ବିଜୁବାବୁଙ୍କର ଆଖି କିନ୍ତୁ ଲୁହ ଛଳ ଛଳ- ମୁଁ ତାଙ୍କୁ ଏପରି ବିମର୍ଷ ଥିବାର ଦେଖିନାହିଁ ।

''କେତେବାଟରୁ ଆସିଛୁ ମା-'' ପୁଣି ସ୍ନେହବୋଳା ପ୍ରଶ୍ନ ବିଜୁବାବୁଙ୍କର ।''ଏଇ ସେଇ ଯୋଉଁ ପାହାଡ଼ ଦେଖୁଛ ବାବୁ- ସେଇ ପାଖରୁ ଆସିଛୁଁ। ସକାଳୁ ଚାଲିଛି ବାବୁ ।

ଭାବବିହ୍ୱଳ ବିଜୁବାବୁଙ୍କ ମୁହଁକୁ ଚାହିଁଲି ମୁଁ । କିପରି ବ୍ୟଥାପୂର୍ଣ୍ଣ ଭାବ ତାଙ୍କ ମୁହଁରେ- ନିରେଖି ଦେଖୁଛନ୍ତି ସେ ହାଡ଼ମାଳର ଛୋଟିଆ ପଟୁଆରକୁ ।

''କାହିଁକି ବିଜୁ ପଟକୁ ଦେଖିବାକୁ ଯାଉଛୁ ମା- କ'ଣ ସେ କରିବ ତୋ ପାଇଁ ?''

''ଏ ବାବୁ ତୁ ବିଜୁ ପଟକୁ ଜାଣିଚୁ ?- ଆମ ଦୁଃଖରେ କିଏ ବା ଅଛି- ସେହି ବିଜୁ ।''

''କିନ୍ତୁ ତ ଭୋଟ ପାଇନି- ମନ୍ତ୍ରୀ ହୋଇନି- ସେ କ'ଣ କରିବ ତୋ ପାଇଁରେ ମା ?''

''ମନ୍ତିରୀ ନ ହେଲେ କ'ଣ ହେଲା- ଭୋଟ ନ ପାଇଲେ କ'ଣ ହେଲା- ବିଜୁ ପଟ ଭାରି ବଡ଼ ଲୋକ- ସବୁ କରିପାରିବ ବାବୁ ।''

ଏତେ ବିଶ୍ୱାସ ରଖିଛି ଏ ସ୍ତ୍ରୀ ଲୋକଟି ତାଙ୍କ ଉପରେ- ବିଜୁବାବୁଙ୍କ ଆଖି ଲୁହ ଛଳ ଛଳ- ଆମେ ସବୁ ନିର୍ବାକ-ନୀରବ ।

''ତୋ ଗେରସ୍ତ କାହିଁ ମା ?''

''ସେ ନାଇଁଅଛି ବାବୁ- ଏଇଠି କାମ ନାଇଁ ମିଳିଲା ବାବୁ- ଗେରସ୍ତ

କଟକ ଚାଲିଗଲା। କାମ ଖୋଜିବାପାଇଁ- ସେଇଠି ଆମ୍ ରୁତ୍ରୁମ୍ ରୋଗ ନେଇ ଆସିଲା- ଘରେ ପଡ଼ି ପଡ଼ି ମଲା- ମୁଇଁ ଏ ଛୁଆଙ୍କୁ ନେଇ ମରୁଛି ବାବୁ ।''

''ମୁଇ ତୋର ବିଜୁ ପଟ୍‌ରେ ମା- କିନ୍ତୁ କ'ଣ କରିପାରିବି ତୋ ପାଇଁ- କ'ଣ ଅଛି ମୋହାତରେ-ତମେ ତ ସବୁ ମୋତେ ଭୋଟ ଦେଲନି ସରକାର ତ କିଛି କରୁନି- ମୁଁ କ'ଣ ଭଲା କରିବି ।'' ବିଚଳିତ ବିଜୁବାବୁ। ଏତେ ଚିନ୍ତିତ- ଏତେ ଗମ୍ଭୀର ମୁଁ ତାଙ୍କୁ ପୂର୍ବରୁ କେବେ ଦେଖିନଥିଲି।

ପକେଟରେ ହାତ ପୁରାଇ ଯାହା ବାହାରିଲା, ତାହା ହାତକୁ ବଢ଼େଇ ଦେଲେ ବିଜୁ ବାବୁ ।

''ଯା ମା ଏତେ ବାଟ ଆଉ କାହିଁକି ଯିବୁ- ସଉଦା କିଣିନେଇ ଯା- ବିଖଣ୍ଡ ଶାଢ଼ୀ-ତୋ ପିଲାଙ୍କପାଇଁ ପ୍ୟାଣ୍ଟ ସାର୍ଟ-ସବୁ କିଣିନେଇ ଫେରିଯା।''

ସ୍ତ୍ରୀ ଲୋକଟି ତା ପିଲାମାନଙ୍କୁ ନେଇ ସେଇଠୁ ଫେରିଯାଇଥିଲା- କିନ୍ତୁ ବିଜୁବାବୁଙ୍କ ମନରୁ ସେଇ ବିମର୍ଷ ମୂର୍ତ୍ତିଟି ଆଜି ବି ଅପସରି ଯାଇନାହିଁ। ବହୁ ସଭାରେ ବହୁ ଲୋକଙ୍କୁ ସେ ଏହି କଥାର ଅବତାରଣା କରି ଦୁଃଖରେ ଅଭୀଭୂତ ହୋଇ ପଡ଼ନ୍ତି । ଖଣ୍ଡେ ଲୁଗାରେ କିପରି କି ଦୁଃଖରେ ସେ ଚଳୁଥିଲା- କିପରି ଛୁଆଙ୍କୁ ପାଳୁଥିଲା-ଏହି କଥା ଅନେକ ସମୟରେ ତାଙ୍କ ମନରେ ଗଭୀର ଚିନ୍ତା ଉଦ୍ରେକ କରେ- କରୁଛି ବି ।

କିନ୍ତୁ ଏ ସମସ୍ୟାର ସମାଧାନ ହେବ କିପରି ? ସମସ୍ୟା ଯେ ଅସୁମାରୀ-କଳାହାଣ୍ଡିଠାରୁ କୋରାପୁଟ ଭିତରେ ଏହିଭଳି ଶହଶହ ସ୍ତ୍ରୀ ଲୋକଙ୍କର କଙ୍କାଳସାର ପଟୁଆର ଆଜି ବି ଚାଲିଛି । କିନ୍ତୁ ସରକାର ଏସବୁ ସ୍ୱୀକାର କରିବାକୁ ନାରାଜ-ସତ୍ୟ ଗ୍ରହଣ କରିବାକୁ ଅମତ ।

କେବଳ ନିଜ ନାଁ ଲେଖାଫଳକ ବିଭିନ୍ନ ସ୍ଥାନରେ ବସାଇ, ନିଜ ନାଁକୁ ସ୍ଥାୟୀ କରିବାର ପରିକଳ୍ପନା । ଶୁଭଦାନ ବା ଉଦ୍‌ଘାଟନ ନାଁରେ ଆଜି ଯେଉଁ ପ୍ରହସନ ଚାଲିଛି, ଲକ୍ଷଲକ୍ଷ ଟଙ୍କାର ଯେଉଁ ରାଜକୀୟ ଅପବ୍ୟୟ ହେଉଛି ତାହା ଗଣତନ୍ତ୍ର ଦେଶରେ ଏକ ଜଘନ୍ୟ ଅପରାଧ । ବିଜୁବାବୁ

ଏଥିପାଇଁ ଖୁବ୍ ମର୍ମାହତ-ବିବ୍ରତ-ଚିନ୍ତିତ ବି ।

ମରୁଡ଼ି ପ୍ରପୀଡ଼ିତ ବୁଭୁକ୍ଷୁ ଜନତାଙ୍କ ପାଇଁ କୌଣସି ସୁପରିକଳ୍ପିତ ଯୋଜନା ନାହିଁ-ହାତରେ କାମ ନାହିଁ-ପେଟକୁ ଦାନା ନାହିଁ-ଅଣ୍ଟାକୁ କନା ନାହିଁ କି ମୁଣ୍ଡକୁ ତେଲ ନାହିଁ; ଅଥଚ ସରକାରୀ ଖର୍ଚ୍ଚରେ ଯେଉଁ ଅସଙ୍ଗତ ରାଜକୀୟ ପ୍ରହସନ ଚାଲିଛି ତାହା ବାସ୍ତବରେ ଅକ୍ଷମଣୀୟ ଅପରାଧ ।

''କ'ଣ ହେବ ଏ ରାଜ୍ୟର ଗତି ? କିପରି ସମସ୍ୟାର ସମାଧାନ ହେବ ?''-

ଏହାହିଁ ଆଜି ବିଜୁବାବୁଙ୍କ ଚିନ୍ତା । ଓଡ଼ିଆ ଜାତିପାଇଁ ଏହାହିଁ ଆଜି ତାଙ୍କର ଭାବନାର କାରଣ । କିନ୍ତୁ ଏ ଜାତି କ'ଣ ଏ କଥା ବୁଝୁଛି ନା ବୁଝିବ ? ସେ ବ୍ୟକ୍ତିତ୍ୱର ମହାନୁଭିତାର ସମ୍ମାନ ଦେବ ?

## ଦୁଇ

## ଡିସେମ୍ବର ପହିଲାରୁ ମାର୍ଚ୍ଚ ପାଞ୍ଚ - ଏକ କ୍ରାନ୍ତିକାରୀ ସମନ୍ୱୟର ଅଭ୍ୟୁଦୟ

ବହୁ ଆଶା-ଆକାଂକ୍ଷାର ପ୍ରତୀକ ଭାବେ ଦୀର୍ଘ ଦଶନ୍ଧିପରେ ଓଡିଶାରେ ଜନତାଦଳର ସରକାର ପ୍ରତିଷ୍ଠିତ ହେବା ସମଗ୍ର ଓଡିଆ ଜାତିପାଇଁ ଗୌରବାବହ ଘଟଣା ନିଶ୍ଚିତ । ନିର୍ଯ୍ୟାତନା, ତାଡନା, ଶୋଷଣ ଓ ପ୍ରୀତିପୋଷଣର ଅମାରାତି ପରେ ଆଶା ସୂର୍ଯ୍ୟୋଦୟ-ସଂଙ୍ଗୀତରେ ବିଭୋର ମଣିଷଜାତି ସମସ୍ୟାର ଜତୁ ଗୃହରେ କଠିନ ପରୀକ୍ଷା ସମ୍ମୁଖୀନ।

ଜାତୀୟ ସ୍ତରରେ ଜାତୀୟସାମୁଖ୍ୟସରକାର ଗଠନ କ୍ଷେତ୍ରରେ ବରେଣ୍ୟ ଜନନାୟକ, ନବଉତ୍କଳର ନିର୍ମାତା, ତୁଙ୍ଗନେତା ଶ୍ରୀ ବିଜୁ ପଟ୍ଟନାୟକଙ୍କର ଭୂମିକା ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଓ ମର୍ଯ୍ୟାଦାବନ୍ତ । ଓଡ଼ିଶା ଭବନର ତିନି ନମ୍ବର କୋଠରୀରୁ ମହାନ୍ ତପସ୍ୱୀ ବିଜୁବାବୁ ସବୁ ସଙ୍କଟ ଓ ଘାଣ୍ଟୁତାକୁ ଦୂରକରି ସେଦିନ ସର୍ବସମ୍ମୁଖରେ ଯେଉଁ ପ୍ରସ୍ତାବ ଉପସ୍ଥାପନ କରି ଭି. ପି. ସିଂହଙ୍କୁ ଦଳର ନେତା ଭାବରେ ପ୍ରତିଷ୍ଠିତ କଲେ ତାହା ଭାରତବର୍ଷର ତୁଙ୍ଗ

ନେତାମାନଙ୍କୁ ଖାଲି ଆଶ୍ଚର୍ଯ୍ୟାନ୍ୱିତ କରିନାହିଁ ବରଂ ବିସ୍ମୟ ଭିତରକୁ ଠେଲି ଦେଇଛି । ଜନତା ଦଳର ନେତା ଶ୍ରୀ ଚନ୍ଦ୍ରଶେଖର ସାମ୍ମୁଖ୍ୟର ପାର୍ଲାମେଣ୍ଟାରୀ ଦଳ ନେତା ନିର୍ବାଚନରେ ବିଜୁବାବୁଙ୍କ କୌଶଳ ଓ ଚତୁରତାର ତାରିଫ୍ କରି ଶେଷମୁହୂର୍ତ୍ତ ପର୍ଯ୍ୟନ୍ତ ସେ କିଛି ଜାଣିପାରି ନଥିଲେ ବୋଲି ପ୍ରକାନ୍ତରରେ ପ୍ରକାଶ କରିଛନ୍ତି ।

ଜଣେ ସଚ୍ଚା ଖେଳୁଆଡ଼ ଭାବେ ବିଜୁବାବୁ ଭି.ପି.ସିଂହ, ଦେବୀଲାଲ ଏବଂ ଚନ୍ଦ୍ରଶେଖରଙ୍କୁ ଏକାଠି କରି ଦେବୀ ଲାଲଙ୍କୁ ଉପ-ପ୍ରଧାନମନ୍ତ୍ରୀ ରୂପେ ପ୍ରସ୍ତାବ ବାଢ଼ି ଚନ୍ଦ୍ରଶେଖର ଓ ଅଜିତ ସିଂହଙ୍କୁ ଯେଉଁଭଳି ଚତୁରତା ଏବଂ ବିଚକ୍ଷଣତାର ସହ ଏଡ଼ାଇଯାଇପରିଲେ ତାହା ଭାରତୀୟ ରାଜନୀତି ଇତିହାସରେ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଦାବି କରିବ । ପାର୍ଲାମେଣ୍ଟ ଭବନସ୍ଥିତ କେନ୍ଦ୍ରୀୟ ହଲ୍‌ରେ ହୋଇଥିବା ନେତା ନିର୍ବାଚନ ପୂର୍ବରୁ 'ଓଡ଼ିଶା ଭବନର' ବାର୍ତ୍ତା ଓ ସେହି ବାର୍ତ୍ତାବହ ବିଜୁପଟ୍ଟନାୟକ ବେଶ୍ ଚର୍ଚ୍ଚାର ବିଷୟ ହୋଇଉଠିଲେ। ପୁନଶ୍ଚ ଜାତୀୟ ସାମ୍ମୁଖ୍ୟ ସରକାରରେ ଭାରତୀୟ ଜନତା ପାର୍ଟି (ବି.ଜେ.ପି.) ଓ ବାମପନ୍ଥୀ ଦଳଗୁଡ଼ିକୁ ସାମିଲ୍ କରି ଏକ ମିଳିତ ସରକାର ଗଠନ ଦିଗରେ ତାଂଙ୍କର ଉଦ୍ୟମକୁ ତାରିଫ୍ କରିବାର କଥା । ଦଳର ଜଣେ ବରିଷ୍ଠ ସଦସ୍ୟ ଭାବରେ ବିଜୁବାବୁ ସମଗ୍ର ଭାରତବର୍ଷରେ 'ଓଡ଼ିଶା'ର ମର୍ଯ୍ୟାଦାକୁ ବହୁ ଗୁଣିତ କରିଛନ୍ତି ।

୧୯୮୯ ମସିହା ନଭେମ୍ବର ୨୨ ତାରିଖ ଅଷ୍ଟମ ଲୋକସଭା ନିର୍ବାଚନ, ଡ଼ିସେମ୍ବର ପହିଲା ତାରିଖରେ ମିଳିତ ସାମ୍ମୁଖ୍ୟର ନେତା ଭାବେ ଶ୍ରୀ ଭି.ପି.ସିଂହ ସର୍ବସମ୍ମତ ନେତା ନିର୍ବାଚନ, ପୁଣି ୨ ତାରିଖରେ ପ୍ରଧାନମନ୍ତ୍ରୀଭାବେ ଶ୍ରୀ ସିଂହଙ୍କ ଶପଥ ଗ୍ରହଣ, ଛଅ ତାରିଖରେ ୧୭ ଜଣିଆ କେନ୍ଦ୍ରମନ୍ତ୍ରିମଣ୍ଡଳ ଗଠନ ଓ ସପଥ ଗ୍ରହଣ ସାଙ୍ଗକୁ ୧୯୯୦ ଫେବୃଆରୀ ୨୭ ତାରିଖରେ ଓଡ଼ିଶା ବିଧାସଭା ନିର୍ବାଚନ, ମାର୍ଚ୍ଚ ୫ ତାରିଖ ବିଜୁବାବୁଙ୍କ ୭୫ତମ ଜୟନ୍ତୀରେ ମୁଖ୍ୟମନ୍ତ୍ରୀଭାବରେ ଶ୍ରୀ ପଟ୍ଟନାୟକଙ୍କ ଶପଥ ଗ୍ରହଣ ଏବଂ ୧୪ ତାରିଖରେ ଓଡ଼ିଶାରେ ୧୫ ଜଣିଆ ମନ୍ତ୍ରିମଣ୍ଡଳ ଗଠନ ସମଗ୍ର ଭାରତବର୍ଷ ଓ ଓଡ଼ିଶାରାଜ୍ୟ ପାଇଁ ଏକ ଆଶ୍ୱସ୍ତିକର ବାର୍ତ୍ତା ନିଶ୍ଚିତ ।

ଶ୍ରୀ ଭି.ପି. ସିଂହଙ୍କ ନେତା ନିର୍ବାଚନ ମୂଳରେ ବିଜୁବାବୁଙ୍କର କୌଶଳ

ପୂର୍ଣ୍ଣ, ଚତୁର ଭୂମିକା ସମ୍ପର୍କରେ ଯେତେ କୁହାଗଲେ ବି ବାସ୍ତବପକ୍ଷେ ତାହା ଖୁବ୍ ଅଳ୍ପହେବ, ନେତା ନିର୍ବାଚନର ଅବ୍ୟବହିତ ପୂର୍ବରୁ ସମଗ୍ର ଭାରତବାସୀଙ୍କ ମନରେ ଯେଉଁ ଆଶଙ୍କା ତଥା ସମ୍ଭାବନାର ଘନ କୁହେଳି ସୃଷ୍ଟି ହୋଇଥିଲା ତାହା ବିଜୁବାବୁଙ୍କର ତେଜୋଦୀପ୍ତ ଭୂମିକାର କିରଣ ଛାପାରେ ଚୁନି ଚୁନି ହୋଇ ବିକ୍ଷିପ୍ତ ହୋଇଯାଇଥିଲା । ନେତା ନିର୍ବାଚନର ଛାନାବଛା, ଶ୍ରୀ ଚନ୍ଦ୍ରଶେଖରଙ୍କ ନେତା ହେବାର ଜିଦ୍, ଶ୍ରୀ ଦେବୀ ଲାଲ୍‌ଙ୍କର ଆସ୍ଫାଳନ, ଶ୍ରୀ ଅଜିତ୍ ସିଂହଙ୍କର ଲାଳସା ତଥା ଜନମାନସର ପ୍ରତୀକ, ଶ୍ରୀ ଭି.ପି.ସିଂହଙ୍କର ଭାବମୂର୍ତ୍ତି ସବୁ ମିଶି ଲୋକଙ୍କ ମନରେ କିପରି ଏକ ଅସ୍ୱାଭାବିକ ଅବସ୍ଥା ସୃଷ୍ଟି କରିଥିଲା । ପ୍ରବଳ ଝଡ଼ପୂର୍ବରୁ ଚତୁର୍ଦ୍ଦିଗ ଯେପରି ନିବିଡ଼ ନିରବତାର ଘନ ଅଞ୍ଚଳରେ ଆବଦ୍ଧହୋଇ ପଡ଼ିଥାଏ, ଠିକ୍ ସେହିଭଳି ନିବିଡ଼ ଝଡ଼ର ସୂଚନା, ସବୁ ନିରବ, ସମସ୍ତେ ବିଚଳିତ, ସବୁଆଡ଼େ ନିରାଶାର ଘନଘୋର ଅନ୍ଧକାର । କିଏ ଆଶା ସୂର୍ଯ୍ୟର ବାର୍ତ୍ତାବହହେବ ? କି'ଏ ଏହି ଅସ୍ୱଭାବିକ ପରିସ୍ଥିତିରୁ ଦେଶବାସୀଙ୍କୁ ନୂତନ ସୂର୍ଯ୍ୟୋଦୟ ଦର୍ଶନ କରାଇବ ? ମାତ୍ର 'ଗୀତା'ର ସେଇ ଶାଶ୍ୱତ ବାଣୀ 'ଯଦା ଯଦାହି ଧର୍ମସ୍ୟ, ଗ୍ଲାନିର୍‌ଭବତି ଭାରତ, ଅଭ୍ୟୁଥାନମଧର୍ମସ୍ୟ ତଦାତ୍ମନଂସୃଜାମ୍ୟହମ୍'' ଭଳି ଏହି ଘଡ଼ିସନ୍ଧି ମୁହୂର୍ତ୍ତରେ ଦିଲ୍ଲୀ ଚାଣକ୍ୟ ପୁରୀସ୍ଥ ଓଡ଼ିଶା ଭବନରେ ଏକ ଅଭୂତପୂର୍ବ ନାଟକର ସୃଷ୍ଟି- ନାୟକ ଶ୍ରୀ ବିଜୁ ପଟ୍ଟନାୟକ-ଓଡ଼ିଶା ଦଳ-ମାନସର ଅପ୍ରତିଦ୍ୱନ୍ଦୀ ନେତା, ଡ଼ିସେମ୍ବର ପହିଲା, ୧୯୮୯ ମସିହା ଭାରତର ରାଜନୈତିକ ଇତିହାସରେ ଏକ ଉଲ୍ଲେଖନୀୟ ଘଟଣା ବିଶେଷକରି ଓଡ଼ିଶା ଭବନର ରୁମ୍ ନମ୍ବର ୩୦୩ ଭାରତର ନୂତନ ସରକାର ଗଠନର ଯେଉଁ ହୃଦୟସ୍ପର୍ଶୀ ନାଟକର ଅଭିନୟ ପାଇଁ ଆଧୁନିକ ରଙ୍ଗମଞ୍ଚରୂପେ ଲିପିବଦ୍ଧ ହୋଇରହିଲା ।

ସେ ଯାହା ହେଉ, କେନ୍ଦ୍ରମନ୍ତ୍ରିମଣ୍ଡଳ ଗଠନରେ ନିଜର ଗୁରୁତ୍ୱପୂର୍ଣ୍ଣ ଭୂମିକା ନିମନ୍ତେ ଶ୍ରୀ ପଟ୍ଟନାୟକ ସର୍ବଭାରତ ସ୍ତରରେ ସମ୍ମାନିତ ହୋଇଛନ୍ତି । ଓଡ଼ିଶାର ଜନ ସାଧାରଣ କେନ୍ଦ୍ରୀୟ ସ୍ତରରେ ବିଜୁବାବୁଙ୍କର ଏଭଳି ସମ୍ମାଜନକ ଭୂମିକାକୁ କେବଳ ଯେ ଭୂୟସୀ ପ୍ରଶଂସା କଲେ ଏକଥା ନୁହେଁ, ପରବର୍ତ୍ତୀ

ଅବସ୍ଥାରେ ୧୯୯୦ ମସିହା ଫେବୃଆରୀ ୨୭ ତାରିଖରେ ହୋଇଥିବା ବିଧାନସଭା ନିର୍ବାଚନରେ ତାଙ୍କ ନେତୃତ୍ୱ ପ୍ରତି ବିପୁଳ ସମର୍ଥନ ଜଣାଇଲେ । ଏହି ବିଧାନ ସଭା ନିର୍ବାଚନ ଇତିହାସରେ ଏଭଳି ଅଭୂତପୂର୍ବ ସଫଳତା କେହି କେବେ ହାସଲ କରିନଥିଲେ ।

ଦୀର୍ଘ ୨୭ ବର୍ଷ ୫ ମାସର ବ୍ୟବଧାନ ପରେ ନିଜର ୭୫ତମ ଜନ୍ମ ଜୟନ୍ତୀରେ ୧୯୯୦ ମସିହାର ମାର୍ଚ୍ଚ ମାସ ୫ ତାରିଖରେ ବିଜୁବାବୁ ଦ୍ୱିତୀୟଥର ପାଇଁ ଜନସମୁଦ୍ରର ଜୟ ଜୟ ଧ୍ୱନିରେ ମୁଖ୍ୟମନ୍ତ୍ରୀଭାବେ ଶପଥ ଗ୍ରହଣ କଲେ । ତାଙ୍କର ସୁଦୀର୍ଘ ରାଜନୈତିକ ଦିବସ କାଳ ମଧ୍ୟରେ ସେ ୭ଥର ବିଧାନ ସଭାକୁ, ୩ଥର ଲୋକ ସଭାକୁ ଓ ସ୍ୱଳ୍ପ ସମୟପାଇଁ ରାଜ୍ୟ ସଭାକୁ ନିର୍ବାଚିତ ହୋଇଛନ୍ତି । ପରାଜୟର ଗ୍ଲାନିରେ ମଧ୍ୟ ସେ କେଭେ ଭାଙ୍ଗିପଡ଼ି ନାହାନ୍ତି ବ୍ରଂ ଗ୍ରୀକ୍ ଉପକଥାର ସ୍ପିଙ୍କିସ୍‌ଭଳି ବାରମ୍ବାର ମୁକ୍ତ ଆକାଶକୁ ଲମ୍ଫ ପ୍ରଦାନ କରିଛନ୍ତି । ନିଜେ ଶପଥ ନେବାର ୮ ଦିନ ପରେ ନିଜର ଏକ ଛୋଟ ମନ୍ତ୍ରିମଣ୍ଡଳର ଶପଥ ଗ୍ରହଣ କରାଇଲେ । ଓଡ଼ିଶାରେ ସେ ବହୁ ନେତା ସୃଷ୍ଟି କରିଛନ୍ତି । ସେହିଭଳି ଏଥର ବହୁ ନବୀନ ବିଧାୟକଙ୍କୁ ମନ୍ତ୍ରିମଣ୍ଡଳରେ ସ୍ଥାନ ଦେଇଛନ୍ତି । ତାଙ୍କର ଏହି ପରୀକ୍ଷା ନିରୀକ୍ଷା କେତେଦୂର ସଫଳ ହେବ ତା'ହା ଦେଖିବାକୁ ଓଡ଼ିଶାର ଲୋକେ ଉଦ୍‌ଗ୍ରୀବ ହୋଇ ଚାହିଁଛନ୍ତି । ବହୁ ପ୍ରାଚୀନ ଅଭିଜ୍ଞଙ୍କ ମନରେ ମନ୍ତ୍ରିମଣ୍ଡଳ ଗଠନରେ କ୍ଷୋଭ ରହିବା ସ୍ୱଭାବିକ କଥା । ମାତ୍ର ବିଜୁବାବୁଙ୍କ ଦୃଢ଼ ନେତୃତ୍ୱ ପ୍ରତି ବିଶେଷକରି ତାଙ୍କର କାର୍ଯ୍ୟ ପ୍ରଣାଳୀ ପ୍ରତି କେହିହେଲେ ବିରୋଧ କରିବାର ସାହସ କରିପାରିବେ ନାହିଁ।

ଆଜି ସେ ୭୫ ବର୍ଷରେ ପହଞ୍ଚିଲେଣି ତଥାପି ସେ ଯୁବସୁଲଭ ଚଞ୍ଚଳତାରେ ଚିର ଉତ୍‌ଫୁଲ୍ଲ- କର୍ମଚଞ୍ଚଳ- ସତେକି ବାର୍ଦ୍ଧକ୍ୟ ତାଙ୍କୁ ସ୍ପର୍ଶ କରିନାହିଁ- ଆଳସ୍ୟ ତାଙ୍କ ପାଖରେ ପାଖ ମାଡ଼ି ନାହିଁ ।

କବି ନଜ୍‌ରୁଲଙ୍କ ଭାଷାରେ ,:

'ମୁଁ ସେହି ଦିନ ହେବି ଶାନ୍ତ-
ଯେବେ ଉତ୍‌ପୀଡିତର କ୍ରନ୍ଦନରୋଳ
ଆକାଶେ ବତାଶେ ଧ୍ୱନିବନି
ଅତ୍ୟାଚାରୀର ଖଡ୍‌ଗ କୃପାଣ
ଭୀମ ରଣ ଭୂମେ ରଣିବନି
ବିଦ୍ରୋହୀ ରଣକ୍ଳାନ୍ତ
ମୁଁ ସେହିଦିନ ହେବି ଶାନ୍ତ ।।'

ସତରେ ମନରେ ତାଙ୍କର ବହୁ ଯୋଜନା- ବହୁ କାର୍ଯ୍ୟ କର୍ମ- ଗରିବଙ୍କ ଥଇଥାନ - ଦ୍ୱିତୀୟ ଇସ୍ପାତ କାରଖାନା - ଶିଳ୍ପ ସମୃଦ୍ଧ ଓଡିଶା - ତାଙ୍କ ସମୟ ତାଙ୍କ ସମୟ କାହିଁ ? କର୍ମ- କର୍ମ- କର୍ମ-

ଓଡ଼ିଶାର ପ୍ରଗତି ତଥା ଶିଳ୍ପୋନ୍ନତି ଓଡ଼ିଶା ଗଠନରେ ପ୍ରଭୁ ତାଙ୍କୁ ସହାୟ ହୁଅନ୍ତୁ, ଏହା ଆଜିର କାମନା ।

# ଉତ୍କଳ ଜୁଡୋର୍କ ଶିଖା ଜଳୁ ପ୍ରାଣେ ମନେ

## ଲୋକରତ୍ନ ଡକ୍ଟର କୁଞ୍ଜବିହାରୀ ଦାଶ

କୋଣାର୍କ ଅଶ୍ୱର
ବେଗ ନେବା ପ୍ରସ୍ତୁତିରୁ
କର ତୁମେ ବେଗବାନ୍ ଜାତିର କଳନା
ଇଣ୍ଡୋନେସିଆ ସଭାପତିଙ୍କୁ
ହାଣମୁହଁରୁ ମୁକୁଳାଇ
ଯେ ଭାବେ ଉଡ଼ାଇ ଆଣିଲ
ଭାରତୀୟ ବୀର ପରମ୍ପରାରେ
ତୁମ ନାମ ମୁଦ୍ରିତ କରିବାକୁ
ମନେ ମୋର ଜାଗେ ଉଦ୍ଦୀପନା ।

କଳିଙ୍ଗର ବୀର ଭାବରେ
ଯେମିତି ତୁମର ଛାତି ଫୁଲେ
ସେଇ ଭାବେ ଫୁଲେଇବାକୁ
ଏ ଜାତିର ଛାତି
ଇଛେ ମୋର ପ୍ରାଣ
କଳିଙ୍ଗର ନାମେ ଦିଅ
ଯେଉଁ ବିଶ୍ୱ ପୁରସ୍କାର
ଜଗାଏ ଜାଗୃତି ଲାଗି ଜାତି ଅଭିମାନ ।

ପାରାଦ୍ୱୀପ ବନ୍ଦର ଗଢ଼ିବା ଲାଗି
ଯେତେ ଛାତି ଲୋଡ଼ା
ଖଞ୍ଜିଥିଲେ ଭଗବାନ୍ ତୁମରି ଦେହରେ
ଓଡ଼ିଆ କବି ଲେଖକଙ୍କୁ ଡ଼ାକି
ସମୁଦ୍ର ତରଙ୍ଗ ସଙ୍ଗେ ଖେଳାଇଥିଲ
କେତିକି ସ୍ନେହରେ !

ବୁଝେ ନାହିଁ ରାଜନୀତି,
ଜାତିର ଉନ୍ନତି ଲାଗି
କିଏ କେତେ ମହାକୀର୍ତ୍ତି କରେ
ମର୍ମେ ମର୍ମେ ଗଣେ
ବିଜୁ ହେ ସାହସେ ତୁମ ଶାଣିଦିଅ ଜାତୀୟ ଜୀବନ
ଉଜ୍ଜ୍ୱଳ ବୀରତ୍ୱ ଶିଖା ଜଳୁ ପ୍ରାଣେ ମନେ ।

# ସଂଗ୍ରାମ ଓ ସୂର୍ଯ୍ୟଦ୍ରଷ୍ଟାର ଅଗ୍ରଲେଖ ତୁମେ

**ଜେନାମଣି ଲକ୍ଷ୍ମୀକାନ୍ତ**

ଓଡ଼ିଶା ଓ ଓଡ଼ିଆର ପ୍ରତିବସ୍ତୁ-
ପ୍ରତି ମଣିଷ ଓ ପ୍ରତିଟି ଚିନ୍ତାରେ ତୁମେ ସଂଜୀବିତ
ମଲା ବିଶ୍ୱାସର ଜିଇଁଲା ଆତ୍ମପ୍ରତ୍ୟୟରେ ।
ହେ ବିଜୟୀ ତମର ବିକଳ୍ପ କାହିଁ-
ଉତ୍କଳ ସଂପ୍ରୀତି ଯା'ର ଅସ୍ତ୍ରରେ ଛିଡ଼େନାହିଁ,
ଜାଗୃତିର ଗୀତି ଯା'ର ଅଗ୍ନିରେ ପୋଡ଼େ ନାହିଁ
କୃତିର ଡ଼ିପଢ଼ାଲୁ ଯା'ର ବୁଡ଼େ ନାହିଁ ବନ୍ୟାର ଜଳରେ
ନିଦାଘେ ମଳୟ ଯା'ର ଶୁଖେ ନାହିଁ ତାତିପବନରେ ॥

ବିଜୟ ଆନନ୍ଦେ ଏଣୁ ଓଡ଼ିଆର ବିଜୁ ହୋଇ
ତୁମେ ସ୍ୱୟଂ ଖାରବେଳ ଜୟର ମଉଡ଼ମଣି
ଘାତ ପ୍ରତିଘାତ ସତ୍ତ୍ୱେ ତୁମ ଚଲାପଥେ-
ମୁଖରିତ ସମୟର ଗ୍ରସ୍ତଭିକ୍ଷା ଏବଂ ଜୟଧ୍ୱନି...
ଏକଥା କି ତୁମେ ଜାଣ ନାହିଁ ???

ବେଦବ୍ୟାସ ସମ ତୁମରି ସ୍ୱପ୍ନର ଉଦୟନ,
ରାଉରକେଲାରେ ଲୌହ ଅଭିଛାର ମୃତ୍ୟନ ।
ହୀରାକୁଦର ସେତୁବନ୍ଧ ପ୍ରତ୍ୟାଶାର ରୂପାୟନ
ଏଠି ସେଠି ରୂପାୟିତ ଯେତେ ଶିଳ୍ପାୟନ
ତମେ ତା'ର ସ୍ୱପ୍ନ ଦ୍ରଷ୍ଟା ବିଶ୍ୱକର୍ମା ଉତ୍କଳର
ଭାଗ୍ୟୋଦୟ ନବ ଦଶନ୍ଧିର...
ତମ ବିନା ଓଡ଼ିଶା ଓ ଓଡ଼ିଆର ଯଶ ମୁକ୍ତି କାହିଁ
ଏକଥା କି ତମେ ଜାଣ ନାହିଁ ??

କଦଳୀ ବାହୁଙ୍ଗା ଡ଼ଙ୍ଗା ବଦଳରେ
ମେଲିବାକୁ ଯବ, ସ୍ୱର୍ଣ୍ଣ, ବଳୀ ଦ୍ୱୀପେ....
ଅବଲୁପ୍ତ ଓଡ଼ିଶାର ଜଳଯାତ୍ରା-ବାଣିଜ୍ୟ ପସରା...
ପାରାଦ୍ୱୀପ ତୁମ ଅବଦାନ-
କବଳିତ ବିକାଶ ବଳୟେ ପ୍ରତ୍ୟାଶାର ଆଶା ଓ ଇସାରା
ତୁମ ବିନା ଆମେ ବେସାହାରା ॥

ଓଡ଼ିଶାର ବିଲୁପ୍ତ ଗୌରବ ଏବଂ ଓଡ଼ିଆର-
ଆଭିଜାତ୍ୟ ଆଉ ସ୍ୱାଭିମାନର ପୁନରୁଦ୍ଧାର ପାଇଁ;
ସ୍ୱପ୍ନ ଓ ସୂର୍ଯ୍ୟତୃଷ୍ଣାର ହେ ସଂଗ୍ରାମୀ ତୁମକୁ ବଧାଇ ।

ବିଶେଷରେ ତୁମେ ବିଶେଷଣ-
ଉପମାର ଉପମେୟ: ତୁମେ ନିଜେ ତୁମ ସମୟର
ଓଡ଼ିଆର ଅଭ୍ୟୁତ୍‌ଥାନ ଉଜ୍ଜୀବନ ଘେନି....
ମୁକ୍ତିବେଦ ଓ ସ୍ୱପ୍ନ ଓ ସୂର୍ଯ୍ୟତୃଷ୍ଣାର-
ଆଇନାରେ ବିମ୍ବିତ ନିଜସ୍ୱ ରୂପ: ଲହୁଆ ଅକ୍ଷର
ତୁମେ ସ୍ୱୟଂ ଧ୍ରୁବପତ୍ନୀ ଇଲାର ପ୍ରଥମ ପୁତ୍ର
ଆପଣାର ଶୋଣିତ ଓ ପ୍ରଶ୍ୱାସରେ-
କ୍ଷୋଳଅଣା ହେ ଉତକଳ!
ତୁମ ପ୍ରାଣେ ପାଇକର ସାହସ ଓ ବଳ
ବାରଶହ ବଢ଼େଇର ସେନାପତି ବିଶୁ ମହାରଣା !
ତୁମେ ସ୍ୱୟଂ ବିଜୟାଭିଳାଷା ଖାରବେଳ
ସାକ୍ଷୀ ତୁମ ଇତିହାସ: ଦ୍ରୁତଗାମୀ କାଳ ।

ମିଶିଅଛ ଅର୍ଦ୍ଧେକ ଶତାବ୍ଦୀ ଧରି
ତୁମେ ଆମ ମନପ୍ରାଣେ-
ପ୍ରତିହତ ପ୍ରଗତିର ସମ୍ଭାବନା ସତ୍ତ୍ୱେ...

ତୁମ ଖୋଜା ଓଡ଼ିଶାର ପୁର ଓ ପ୍ରାଙ୍ଗଣେ ।।

ତୁମ ନିଃସଙ୍ଗ ସଂଗ୍ରାମର ଏଠାରେ ବିକଳ୍ପ କାହିଁ-
ଓଡ଼ିଶାର ନବୋଦୟ: ଓଡ଼ିଆର ଉଜ୍ଜୀବନ ପାଇଁ
ଓଡ଼ିଆର ସଂସ୍କୃତି ଓ ତ୍ୟାଗପ୍ଳୁତ ବଂଶାନୁକ୍ରମର
ହେ ନିର୍ଯ୍ୟାସ ! ସମୟର ହେ ପ୍ରିୟ ରୂପକାର !

ମଧୁସ୍ମୃତି ଜାଗରଣର ହେ ନବବାର୍ତ୍ତାବହ
ଗୋପବନ୍ଧୁଙ୍କର ହେ ଦାୟାଦ ଦରଦୀହୃଦୟ
ଆପଣାର ରଜଗୁଣେ ତୁମେ ସ୍ୱୟଂ
ଆପଣାର ଉପକଳ୍ପ ଏବଂ ଉପମେୟ ।।

କେଉଁଥିରେ ନିଉନ ବା କେଉଁ ଗୁଣେ ଊଣା ତବ -
ଆଉ କେ ଗୌରବ ହେଲେ ତୁମେ ତ ଗରବ !
ଆନ କେ ମଣି ହେଲେ ତୁମେ ତ ମଉଡ଼ମଣି
ଆନ କେ କେଶରୀ ହେଲେ ତୁମେ ତ ଶାର୍ଦ୍ଦୂଳ
ଆନ କେ ବଲ୍ଲଭ ହେଲେ ତୁମେ ସହୋଦର
ତମ ପ୍ରତି ଓଡିଆର ପ୍ରୀତି ଏଣୁ ସ୍ୱତନ୍ତ୍ର ଅତୁଳ ।।

ତମ ନିଃସଙ୍ଗ ସଂଗ୍ରାମର ପ୍ରତିଦାନ ଅଥବା ବିକଳ୍ପ ନାହିଁ
ଓଡିଶାର ନବୋଦୟ : ଓଡିଆର ଉଜ୍ଜୀବନ ପାଇଁ
ସ୍ୱପ୍ନ ଓ ସୂର୍ଯ୍ୟତୃଷାର ତୁମେ ଆମ ଅଭିଳାଷ
ଜ୍ୟୋତ୍ସ୍ନାୟିତ ନିଶୀଥରେ ଚନ୍ଦ୍ରସମ ମିଶିଅଛ-
ତୁମେ ସ୍ୱୟଂ କ୍ରାନ୍ତିଦ୍ରଷ୍ଟା ଯେଉଁଭଳି ସାରଳା ଦାସ
ଅଳଙ୍କରଣର ତୁମେ ସ୍ୱୟଂ ଆପଣାର ଯମକ ଓ ଶ୍ଳେଷ ।।

ଅର୍ଦ୍ଧେକ ଶତାବ୍ଦୀ ଧରି ଓଡିଶା ଓ ଓଡିଆର ରକ୍ତ ନିଃଶ୍ୱାସରେ

ଅବଲୁପ୍ତ ଗୌରବ ଓ ଐତିହ୍ୟର ପୁନରୁଦ୍ଧାରରେ;
ନ ମଜ୍ଜି ମଜ୍ଜିଛ ତୁମେ ଓଡିଆର ଅସ୍ଥି ଓ ମଜ୍ଜାରେ-
ନ ଖୋଜି ଖୋଜିଛ ତୁମେ-
ଦୁର୍ଦ୍ଦିନ, ପର୍ବାଣି ଆଉ ରାଜଦ୍ୱାରେ ପୁଣି ଶ୍ମଶାନରେ ।।

ଅଳ୍ପ ପଥ ଅତିକ୍ରାନ୍ତ: ବାକି ବହୁ ପଥ
ସ୍ୱାଭିମାନ ବିବର୍ଜିତ ଓଡ଼ିଆର ଅମାରାତି ପାହିନାହିଁ
ଆତ୍ମଘାତୀ ଆମେ ଏତେ
ତୁମ କଥା ହେଜିବାକୁ ବେଳ ମିଳୁ ନାହିଁ-

''ଏକ ହାତେ ଲକ୍ଷ୍ମୀଙ୍କର ବାସ-
ଆନ ହାତେ ବିଜେ ସରସ୍ୱତୀ....
ରେ ଓଡ଼ିଆ ତୁ ତୋହର ହସ୍ତରେଖା
ତୁହିଁ ନିଜେ ପ୍ରସ୍ଫୁଟନର ନୂତନ ପ୍ରଭାତୀ !
ବିଜୟ ତ ସବୁ ଋତୁର ଫଳ ନୁହେଁ ହାତ ପାଆନ୍ତାର
ଏଥିପାଇଁ ବେଳ ଥାଉଁ ଥାଉଁ-
ପ୍ରସ୍ତୁତି ସଂଗ୍ରାମ ଏକା ତୋର ସାଥୀ ସହୋଦର ।।

ତୋତେ ତୁହି ରକ୍ଷାକର-
ମୁଁ ହୁଏତ ସଖା, ମାର୍ଗ ପ୍ରଦର୍ଶକ ଓ
ତୋର ସାମୟିକ ଦାର୍ଶନିକ...
ହେଲେ କିନ୍ତୁ ମୁଁ ଛାର ମନୁଷ୍ୟ ମାତର
ନୂଆ କିଛି କର ଭାଇ ! ଭୋକେ ଆଉ ଶୁଅ ନାହିଁ
ଉଠ ଜାଗ ଟାଣ ସବୁ ପ୍ରଗତିର ନନ୍ଦିଘୋଷ
କର ଅବା ମର ଏହା ସମୟର ଚରମ ନିର୍ଘୋଷ'' ।।

ହେ ପ୍ରିୟ ସ୍ୱପ୍ନ ଓ ସୂର୍ଯ୍ୟତୃଷ୍ଣାର ବିସ୍ଫୋରଣ
ତୁମ ପାଇଁ ହା ହତୋସ୍ମି ଓଡ଼ିଆର ପ୍ରାଣେ ଉଜ୍ଜୀବନ
ତୁମ ପାଇଁ ଉଦ୍ଧଳିତ ପ୍ରତିହତର ନବଜାଗରଣ
ତୁମର ପ୍ରାସଙ୍ଗିକତା-
ଏବେ ମଧ୍ୟ ଅପେକ୍ଷିତ, ଅମ୍ଲାନ, ଅକ୍ଷୁର୍ଣ୍ଣ...
ଏତେ ପାଇଁ ପ୍ରତିଦାନେ ଦେଇନାହୁଁ ସମତୁଲ ଉପହାର
କ୍ଷମାକର ହେ ବିଜେତା ବିଜୁ-
ଆଉ କିଛି ବାଢୁନାହୁଁ ଆପତ୍ତି ଓଜର-

ମାଫ୍‌କର ଆମକୁ ଓ ଓଡ଼ିଶାକୁ ଏତିକି ମିନତି-
ସଂଜୀବନୀ ମନ୍ତ୍ରେ ତବ ସଂଜୀବିତ କର....
ଜଡ଼ପ୍ରାଣେ ଆଣିବାକୁ ଉଦୟ ପ୍ରଭାତୀ...
କଳିଙ୍ଗର ହେ ପ୍ରିୟ ମୁକ୍ତିସୂର୍ଯ୍ୟ ଏକୋଇ ଓଜର
ଦୀପ୍ତି ତବ ଏ ମାଟିରେ ନିତ୍ୟ ହେଉ-
ସୂର୍ଯ୍ୟମୁଖୀ ଓଡ଼ିଆର ଏ ପ୍ରସ୍ଫୁଟନ ପ୍ରୟାସୀ ପ୍ରତି ପ୍ରାଣେ
ସତ୍ୟ ହେଉ ହେ ସୂର୍ଯ୍ୟ ପ୍ରାତ୍ୟହିକ ତବ ଉଦୟନ ॥

ଉଦ୍ଧଳିତ ତବ ସୌର ଚେତନାରେ-
ଓଡ଼ିଆର ଜଡ଼ତା ଅଚିରେ ହଜୁ...
ଓଡ଼ିଶାର ପୁର ଓ ପଲ୍ଲୀର ତିମିରିତ ପ୍ରତି ଘରେ
ଚେତନା ଓ ଆଶାର ଦୀପାଳି ଜଳୁ
ଆଲୋକିତ ବିଜୟାନନ୍ଦରେ ॥

ଅଗ୍ରଜାୟା ହେ, ସେନାପତି ହେ ବିଜୟୀ
ତମର ବିକଳ୍ପ କାହିଁ-
ତମସାର ଅର୍ଦ୍ଧେକ ଶତାବ୍ଦୀ ଧରି ହେ ସାଥୀ ହେ ସାରଥି
ତୁମେ ଆମ ମୁକ୍ତି ଗୀତି...

ତୁମେ ତୁମ କୃତି ଚିତ୍ର ବିଥି ॥

ସ୍ୱପ୍ନ ଓ ସୂର୍ଯ୍ୟତୃଷ୍ଣାର ହେ ପ୍ରିୟ ଅଗ୍ରଲେଖ: ବିସ୍ଫୋରଣ
ତୁମ ପାଇଁ ଆମ ଗର୍ବ ଉଚ୍ଛକିତ ସ୍ୱପ୍ନ ମନ ପ୍ରାଣ
କୂଳଦିଅଁ କାଳିଆକୁ ଏକୋଇ ଜଣାଣ-
ତମର ବିଜୟ ଆଉ ଆମ ପାଇଁ ପରାଜୟ ନେଇ
ହୀରାନୀଳା ଲୋଡ଼ା ନାହିଁ ଆଉ-
ବର୍ଷୀୟାନ ଜୀବନରେ ଆମ ପାଇଁ ତୁମ ଚଲାପଥେ
ଅବିରାମ ଅବିରତ ଫୁଲ ଓ ଚନ୍ଦନର ଝଡ଼ ବହୁ
ପ୍ରତି ଋତୁ ହେଉ ନିୟମିତ-
ମହାନଦୀ ମହୋଦଧି ସଲିଳା ଓ ସୁମଧୁରା ହେଉ
ଏ କଳିଙ୍ଗ ନୀଳାଚଳେ ସତତ ମଳୟ ବହୁ
ଓଡ଼ିଶା ଓ ଓଡ଼ିଆର ପ୍ରାତ୍ୟହିକ ଜୀବନ ଓ ଚେତନାରେ
ସଂଗ୍ରାମ ଓ ସୂର୍ଯ୍ୟତୃଷ୍ଣାର ହେ ପ୍ରିୟ ଅଗ୍ରଲେଖ !
ଅଭିଜ୍ଞାନ ଓ ଅନୁପ୍ରାସର ଅଳି କିଛି ନାହିଁ ଆଉ
ତୁମ ସ୍ଥିତି ଦୀର୍ଘଜୀବୀ ହେଉ ଶରତ ଶତାୟୁ ॥

# ଦ୍ୱିତୀୟ ଖାରବେଳ

**ଶ୍ରୀ ବସନ୍ତ କୁମାର ମନ୍ତ୍ରୀ**

ଇଣ୍ଡୋନେସିଆର ଭୂମିପୁତ୍ର ହେ ଦ୍ୱିତୀୟ ଖାରବେଳ,
ସୁକର୍ଣ୍ଣ ଦିନେ ବଞ୍ଚି ଯାଇଥିଲେ ତୁମରି ବୁଦ୍ଧି ବଳେ ।
ଭୌଗୋଳିକ ସୀମା ଲଘିଂ ଦେଶୁ ଯାଇଛନ୍ତି ଯେତେ ବୀର
ସଭିଙ୍କ ମଧ୍ୟରେ ଖ୍ୟାତିସମ୍ପନ୍ନ ଅଟଇ ତୁମରି ଶିର ।
ସାହସ ମଧ୍ୟେ ଥିଲା ତୁମର ଯୌବନର ଚାବିକାଠି,
ସ୍ୱଶରୀରେ ସହିଅଛ କେତେ ଇଂରେଜ ଗୋଲାମ ଲାଠି
ଓଡ଼ିଆ ଜାତି ମଉଡ଼ମଣି ହେ ଦ୍ୱିତୀୟ ଖାରବେଳ
କଳା, ସାହିତ୍ୟ, ବାଣିଜ୍ୟ, ଶିଳ୍ପ ଗଢ଼ିଥିଲ କେତେ କଳ ।
ତୁମରି ବୟସ ଉନ୍ମାଦନା ଆଦ୍ୟ ଯୌବନ କାଳରେ
କଟକ ଠାରୁ ପେଶ୍ୱାର ଯାଇଥିଲ ଶୂନ୍ୟ ଗାଡ଼ିରେ ।
ଚାବୁକ ମାଡ଼ ଖାଇଥିଲ ମିଶନ ସ୍କୁଲରେ
ବ୍ରିଟିଶ୍ ବିମାନ ଅଧ୍ୟକ୍ଷ ହୋଇଥିଲ ପରକାଳରେ ।
ଖାରବେଳର ଦାୟାଦ ତୁମେ ହେ ଦ୍ୱିତୀୟ ଖାରବେଳ
କଳିଙ୍ଗର ବୀର ଯୋଦ୍ଧା ହେ ଗଢ଼ିଛ କେତେ ପ୍ରକଳ୍ପ ।
ରାଉରକେଲା, ପାରାଦ୍ୱୀପ, ସୁନାବେଡ଼ା ଯାହାର ଦାନ
ଆମ ଜାତି ଆଜି ଭ୍ରମେ ବୁଝି ନି ସେହି ବୀରର ମନ ।
ଯାହାର ଅବଦାନେ ବିଶ୍ୱେ ଆଜି କଳିଙ୍ଗ ପୁରସ୍କାର
କହନ୍ତି ନାହିଁ କାହାକୁ କେବେ ଆତ୍ମାବଡ଼ିମା ତାଙ୍କର ।
ଜନ ନାୟକ ଜୟପ୍ରକାଶ ବଞ୍ଚି ଯାଇଥିଲେ ଦିନେ
କଉଶଳ କ୍ରମେ ବ୍ୟମୋଜାନରେ ଉଡ଼ାଇ ନେଲ ତାନେ ।
ଫେବୃଆରୀ ତେଇଶ ତାରିଖେ ଆପଣଙ୍କ ରଣ ହୁଙ୍କାରେ
କୃଷକ, ଶ୍ରମିକ, ଛାତ୍ର ଆସୁଥିଲେ ତୋଫାନ ବେଗରେ ।
ଆଜ ତେସ୍ତରୀ ବର୍ଷରେ, ଆପଣଙ୍କ କାନ୍ତି ବିରାଜଇ
ଉଦୀୟମାନ ଭାସ୍କର ରୂପେ ଉତ୍କଳ ଆକାଶରେ ।

ଖାରବେଳ ଥିଲେ ମହାବୀର ଇତିହାସ ତା'ର ସାକ୍ଷୀ
ତୁମେ ମହାବୀର ଏ ଉତ୍କଳ ଦେଶେ ରଖୁଅଛୁ ଆମ୍ଭେ ଲେଖି ।
କଳିଙ୍ଗ କେଶରୀ ସମ ନେତା ଏ ଦେଶେ ବିରଳ
ଧନ୍ୟ, ଧନ୍ୟ ବିଜୁବାବୁ ଦ୍ୱିତୀୟ ଖାରବେଳ ।।

# ତାଙ୍କୁ ଯେ ଯେମିତି ବୁଝୁ ପଛେ

**ରମେଶ ଅଲି ବେସାନ୍ତ**

ଜୀବନ ଆସେ ଯାଏ
ବସ୍ତୁ ରୂପାନ୍ତରେ ।
ବାରମ୍ବାର ରୂପାନ୍ତରିତ ବସ୍ତୁ
ବେଳେ ବେଳେ,ଠାଏ ଠାଏ
ନିଜ ଚିହ୍ନ ରଖିଯାଏ । ଯାହା-
କାଳକ୍ରମେ ଇତିହାସ ପୃଷ୍ଠେ
ବିସ୍ତୀର୍ଣ୍ଣରୁ ସଂକୀର୍ଣ୍ଣ ହୋଇ ହୋଇ ଯାଏ ॥

ଯେମିତି ଯୀଶୁ, ଗୌତମ, ମାର୍ଟିନ ଲୁଥର
ମାର୍କସ, ଏଙ୍ଗେଲସ୍, ଗାନ୍ଧୀ, ସୁଭାଷ
ଆଉ, ଆମ ରାଇଜରେ ମଧୁବାବୁ, ଗୋପବାବୁ ଭଳି ଲୋକେ
କ୍ରମଶଃ ସଂକୁଚିତ ହୋଇ ଯାଉଚନ୍ତି-
ମହନୀୟତାର ସଙ୍କେତ ଭାବରେ ॥

ସମୟ ଥିଲା ସେମାନଙ୍କ ଗୁଣଗାରିମା ନେଇ
ଅନେକ ବଡ ବଡ ପୁସ୍ତକ ପ୍ରଣୟନ, ସଭା, ସଂପାନ ହୋଇଛି ।
ଆଜି କିନ୍ତୁ ସେମାନେ
ଅଳ୍ପ କେତୋଟି ପୃଷ୍ଠା ଅବା ଆବକ୍ଷରେ ସମୀମ ପ୍ରତିଫଳିତ ॥

ବସ୍ତୁର ଏଇ କ୍ରମସଂକୋଚନ ପ୍ରତିଫଳନ ହିଁ ବସ୍ତୁର ସାରବତ୍ତା,
ଜୀବନ ସାଧନାର ଅତି ଭୌତିକ ସ୍ତର,
ସମସ୍ତ ସୁଗୁଣାବଳୀର ଶେଷ ନିର୍ଯ୍ୟାସ ॥

ତାହାହିଁ ବିଶ୍ୱ-ଉତ୍ତରପୁରୁଷର ଦର୍ଶନ

ଆଗାମୀ କାଲିର ପାଥେୟ ।
ମଣିଷ ଆସେ ଯାଏ,
ତା'ସମାଜ, ଜୁଆର ଓ ଭଟ୍ଟା ମଧ୍ୟେ ।
ଜଣଜଣଙ୍କର ମୁହଁ କୋଟିକେ ଗୋଟିଏ ଚିହ୍ନା ହୋଇ ରହିଯାଏ ।
ସେଇମିତି ଏକ ମୁହଁ-'ଆମ ବିଜୁବାବୁ' ।
ଆମ ଉତ୍କଳ, ଆମ ଭାରତବର୍ଷ ଟପି ସେ
ଆଜି ବିଶ୍ୱ ପରିଚିତ ॥

ସେ ପ୍ରତିଭା ବର୍ଦ୍ଧିତ-ଦୀର୍ଘକାୟ-ଦୀର୍ଘାୟୁ ।
ଜଗତର ମଙ୍ଗଳରେ, ଜାଗତିକ ନିୟମ ବସ୍ତୁ ରୂପାନ୍ତରେ-
ସେ ଯେବେ ବି ରୂପାନ୍ତରିତ ହୁଅନ୍ତୁ ପଛେ,
ସେ ଗୁଣାତ୍ମକ ଉନ୍ନତ ବସ୍ତୁ, ଜ୍ୟୋତି ବିତରକ
କାଳଜୟୀ ଚିହ୍ନ ।
ତାହା ଅଲିଭା । ଅମାପ ସମୟ ଯାଏ ତାର ନାହିଁ ଅବସାନ ॥

ତାଙ୍କ ଅବଦାନ-
ଦେଶ ଗଠନ , ଜନକଲ୍ୟାଣର ଯାହା ଯାହାବି ସାଧନ,
ଶିକ୍ଷା, ବିଜ୍ଞାନ , କଳା ନିର୍ମାଣ,
ସକଳ କ୍ଷେତ୍ରର ଟିକିନିଖି ବିବରଣ ଏବଂ
ଭାଟମାନଙ୍କର ତୋଷାମଦୀ ସଂଭାଷଣ;
ଯାହା ଯେମିତି ପ୍ରଚାରିତ ହେଉ ପଛେ, ସେ କିନ୍ତୁ
ସବୁରି ଉର୍ଦ୍ଧ୍ୱରେ ମୁକ୍ତ ଆକାଶ ଚଢେଇ ।
ସେ ହେବ, ବସ୍ତୁ ରୂପାନ୍ତର ଇତିହାସ ସ୍ରୋତରେ ବି
ମହାନ୍ ବାକ୍ୟଟିଏ-
'ଭଲ ମଣିଷ,ଉତ୍ତମ ମଣିଷ ଅବା ସର୍ବୋତ୍ତମ ମଣିଷ ଭାବରେ ॥

ସେ ସୁପୁରୁଷ ।

ମହୀମନିଷୀର ଚିନ୍ତା-ଦୁଃଖ-କ୍ଲେଶ ବହି
ସେ ତାଙ୍କ ଡାକ୍ତରୀ ଯୋଡ଼ା ବୃଦ୍ଧ ହୃଦୟଟାକୁ ବି
କରିଛନ୍ତି ଆହୁରି ଗଭୀର, ଆହୁରି ପ୍ରଶସ୍ତ ॥

ଏବେ ତାଙ୍କର ସେ ଗଭୀର ବିସ୍ତାରିତ ହୃଦୟ ଦିଗନ୍ତକୁ
ଆଉ ଆଖି ପାଉନାହିଁ ॥
ମୁହଁକୁ ତାଙ୍କର ମୁଣ୍ଡଟେକି ଅନାଇବାକୁ ହେଉଚି
ଯେପରି କରାଯାଏ ସୂର୍ଯ୍ୟ ପ୍ରଣାମ ॥

କଳିଙ୍ଗ ସୂର୍ଯ୍ୟ-ବିଜୁ ପଟ୍ଟନାୟକ !
ତାଙ୍କୁ ଆଜି ଅନାଇ ରହିଛନ୍ତି
ଅଗଣିତ ଓଡ଼ିଆ ପୁଅ ଝିଅ । ଯେ ଯେମିତି ବୁଝୁ ପଛେ,
ସମସ୍ତ ସମାଲୋଚନା ପଛରେ ସେ ଏବେ ବି
କୋଟି କୋଟି ଓଡ଼ିଶାବାସୀଙ୍କର-
ଆଶା ଭରସାର ଅପ୍ରତିଦ୍ୱନ୍ଦୀ ପୁରୁଷ ॥
ସେ ଅମର,
ଆମ ସ୍ୱାଭିମାନର ନମସ୍ୟ ॥

# ଶ୍ରଦ୍ଧାଞ୍ଜଳି

## ଅଧ୍ୟାପକ ଅକ୍ଷୟ୍ କୁମାର ମହାପାତ୍ର

'ମଧୁବାବୁ' ପରେ ଶୁଭେ 'ବିଜୁବାବୁ' ନାମ
କୋଳେ ଧରି ଧନ୍ୟ ସତେ ଏ ଉତ୍କଳଧାମ-
ଆଦର୍ଶ ପୁରୁଷ କର୍ମୀ ନେତା ଜନତାର,
ଘେନି ଜାତି ସନମାନ ପ୍ରୀତି ଉପହାର.....।

ମଣିଷର ସଖା ସାଥୀ ହେ ଚିର ସଂଗ୍ରାମୀ
ସତ୍ୟ-ଶାନ୍ତ ପ୍ରତିଷ୍ଠାରେ ନିୟତ ଅଗ୍ରଣୀ
ଦୀନ ଦଳିତର ସାହା-ମନ୍ତ୍ର ସମତାର;
ଘେନି ଜାତି ସନମାନ ପ୍ରୀତି ଉପହାର.....।

ସେବା-ତ୍ୟାଗ-ସାହସର ମୂର୍ତ୍ତିମନ୍ତ ଛବି
ବିପ୍ଳବର ବହ୍ନିଶିଖା ଦୀପ୍ତିମାନ ରବି-
ରାଜନୀତି-ନଭେ ସୋଭା ସିନା ଓଡ଼ିଶାର,
ଘେନ ଜାତି ସନ୍‌ମାନ ପ୍ରୀତି ଉପହାର.....।

ବିଶାଳ ବ୍ୟକ୍ତିତ୍ୱ ସଦା ପ୍ରେରଣାଦାୟକ
ଏକସ୍ତରୀ ଅତିକ୍ରମି ତଥାପି ନାୟକ
ପାଦେ ଚାଲି ବୁଲି ନୀତି କରୁଛ ପ୍ରଚାର;
ଘେନ ଜାତି ସନମାନ ପ୍ରୀତି ଉପହାର.....।

ପରିଣତ ବୟସରେ ଧୂଳି ଚରଣରେ
କୁଣ୍ଠା ନାହିଁ ଦୁଃଖ ଯେତେ ବାଧା ବରଣରେ
ସପନ କଳିକା ପରା କୀଟର ଆହାର !
କାହିଁ ବା ବିଶ୍ରାମ-ଘେନ ପ୍ରୀତି ଉପହାର.....।

ଲକ୍ଷ୍ୟ ଦୂରେ ବହୁ ଦୂରେ ବାଟ ତ ଅସରା
ଚାଲିଥାଅ ନେତା ବହି ସମାଜ-ପସରା
ଜୀବନର ଜୟଗାନେ ହୁଅ ଦୁର୍ନିବାର-
ଘେନ ଜାତି ସନମାନ ପ୍ରୀତି ଉପହାର.....।

# କଳିଙ୍ଗର 'ବିଜୁ' ଉଠ

**ନାରାୟଣ ବୀରବର ସାମନ୍ତ**

ଅନ୍ତର୍ଜାତୀୟତା ସ୍ତର
ଆଧୁନିକ ଜଗତରେ ଉର୍ବରୁଁ ଉର୍ବର
ହେବାକୁ ଉଦ୍ୟତ ଆଜି, ଅବ୍ୟାହତ ଅଟେ,
ଦେଶେ ଦେଶେ ପ୍ରାଣେ ପ୍ରାଣେ ପ୍ରଗତି ପ୍ରକଟେ
ସଂଗ୍ରାମାଦି ବିଗ୍ରହକୁ ଦେବାପାଇଁ ବଳି
ଚିତ୍ତ ଚିନ୍ତେ ଚିନ୍ତା ଭଳି ଭଳି ।

ଏକ ମାତ୍ର ବିଶ୍ୱ ମୈତ୍ରୀ ଛନ୍ଦ
ତୁଟାଇବ ଦ୍ୱନ୍ଦ୍ୱ ଆଦି ଆବର୍ଜନା ଗନ୍ଧ ।

ଶ୍ୱେତ, ପୀତ, କୃଷ୍ଣ, ବର୍ଣ୍ଣ ଭେଦ
ଅଦ୍ୟାବଧି ଯେତେ ଯାହା ଖେଦ
ମାନବ ବର୍ଣ୍ଣ ବୈଷମ୍ୟ କରି ଅଙ୍ଗିକାର
ଘୋଷି ବିଶ୍ୱ ଜଗତର ପୂର୍ଣ୍ଣ ଅଧିକାର
ଭିଆଇଛି ମାନବ ସମାଜ
ଧୈର୍ଯ୍ୟ କନ୍ତୁ ଗ୍ଲାନି ମଧ୍ୟ ଆଜ ।

ଏକତାର ଅମୋଘ ପ୍ରତିଷ୍ଠା
ଯେତେ ଯାହା ନିଷ୍ଠା
ବିତରଇ ଅବ୍ୟର୍ଥ ସନ୍ଧାନ
ମାନବିକତାର ଦିବ୍ୟଜ୍ଞାନ
ଏକମାତ୍ର ପନ୍ଥା ଯେଣୁ ତ୍ୟାଗ ପରେ ତ୍ୟାଗ
ଆହ୍ୱାନଇ "ଜାଗ, ବେଗେ ଜାଗ" ।

କଳିଙ୍ଗର ଅନୁପମ ତପସ୍ୟା ଆରମ୍ଭ
ରଖିଛି ସେ ଦମ୍ଭ·
ଶତାବ୍ଦୀ ବ୍ୟାପି ହଟିନାହିଁ କେବେ
ଜୟ ଯାତ୍ରା ଏବେ ।

ମନ୍ଦ୍ର ଆହ୍ୱାନରେ ଧ୍ୱନି ଶୁଭେ କର୍ଣ୍ଣେ କର୍ଣ୍ଣେ
ତିଳେ ଭେଦ ନାହିଁ ବର୍ଣ୍ଣେ ବର୍ଣ୍ଣେ ।
ଶ୍ୱେତ, ପୀତ, କୃଷ୍ଣ, ମୂର୍ତ୍ତି ତ୍ରୟ
ସିଂହାସନେ ବିରାଜନ୍ତି, କଳିଙ୍ଗ ବିଜୟ
ଘୋଷୁଛନ୍ତି ବିଶ୍ୱ ପାଇଁ ସଂସ୍କୃତି ପରମ,
ତଥାପି ଅକ୍ଷମ ଏହି ସଭ୍ୟତା ଚରମ
ଲଭିବାକୁ ମିଳନ ଆସ୍ୱାଦ
ପ୍ରବର୍ତ୍ତାଏ ଯାହା, ଆହା କଳିଙ୍ଗର
'ଶ୍ରୀ ମହାପ୍ରସାଦ' ।

ଶକ୍ତି, ବିଦ୍ୟା, ଧନ
ସେ ସୌରଭେ ସେ ଗୌରବେ
ସବୁ ମ୍ଳାନ, ସବୁ ଅକିଞ୍ଚନ ।
ବିମଳା ଓ ଲକ୍ଷ୍ମୀ, ସରସ୍ୱତୀ
ଗଣ୍ୟ ନୋହି ଗୌଣଭାବେ କାହିଁ ପଡ଼ିଛନ୍ତି ।

'କଳିଙ୍ଗ' 'କଳିଙ୍ଗ' ରବେ ବିହଙ୍ଗମ ସମ
ଜଣେ ମାତ୍ର ଜନ୍ମ ଲଭି ରାବିବାକୁ କ୍ଷମ ।
ନୋବେଲଙ୍କ ଜୟଧ୍ୱନି ପୁରସ୍କୃତ ବର୍ଗ
ରଟୁଛନ୍ତି ପ୍ରକମ୍ପାଇ ମର୍ତ୍ତ୍ୟ ସହ
ପାତାଳ ଓ ସ୍ୱର୍ଗ
କିନ୍ତୁ 'ଡ଼ିନାମାଇଟ'ର ଗନ୍ଧେ

ବୀଭତ୍ସର ବିଭୀଷିକା, ପୂର୍ଣ୍ଣ ରନ୍ଧ୍ରେ ରନ୍ଧ୍ରେ
ହତ୍ୟା ଛନ୍ଦୁ ଉଦ୍ଭବ ସେ ଜ୍ଞାନ
ଦାନ ନୁହେଁ ସର୍ବଥା ଅଦାନ ।

ନିଷ୍କଳଙ୍କ କଳିଙ୍ଗ ସମ୍ପଦ
ନାହିଁ ଯହିଁ କଲୁଷ ବା ଦ୍ୱନ୍ଦ୍ୱ ଆଦି ମଦ
ବିଶ୍ୱପାଇଁ ଉତ୍ସର୍ଗେ ବିରାଜି
ଗର୍ବିତ ଯା ପାଇଁ
ସର୍ବେ ଭାରତୀୟ ଆଜି ।

ହୋଇଯାଏ ସବୁ ଯଥା ଜ୍ୱଳନେ ବିବର୍ଣ୍ଣ
ମାତ୍ର ସ୍ୱର୍ଣ୍ଣ
ବିକାଶେ ସ୍ୱରୂପ ଯଥା,
ଯେତେ ଯାହା ବ୍ୟଥା
ଆସୁ ଯେତେ ଆସୁ
ଏପରିକି ମୃତ୍ୟୁ ମହାଗ୍ରାସୁଁ
ରଖିଥିବ କଳିଙ୍ଗର କୀର୍ତ୍ତି ଅନିର୍ବାର
ସ୍ୱର୍ଣ୍ଣସମ, ତବ ନାମ ତାହା ସଙ୍ଗେ
ଦଗ୍‌ଧ ବାରମ୍ବାର ।

ଜାଭା ଦ୍ୱୀପ ପୂଜ୍ୟ ଅତିଥିଙ୍କ ତ୍ରାଣ
ସାଧି ବଞ୍ଚାଇଲ ଯେହ୍ନେ ନେହେରୁଙ୍କ ପ୍ରାଣ
ଅବିରତ ଛଟପଟ ହେଉଥିଲା ଆହା !
କି ଭାଷାରେ କେ ବର୍ଣ୍ଣିବ ତାହା ?
ଧନ୍ୟ ସେ ସୁକୃତ ତବ ସୁବର୍ଣ୍ଣ ଅକ୍ଷରେ
ଲେଖା ରହିଗଲା ବିଶ୍ୱ ଐତିହ୍ୟ ବକ୍ଷରେ ।
ବିଶ୍ୱର ଯା' ବିରୁଦ୍ଧ ଆକ୍ରୋଶ

କରିପାରିବ କି କେବେ
ସେ ଗରିମା ଲୋପ ?

ଆଜି ତବ କର୍ତ୍ତବ୍ୟ ଅପାର
ଆହ୍ୱାନଇ ବସୁମତୀ ମାତା ବାରମ୍ବାର
କଳିଙ୍ଗର ସାଧନା ଓ ସିଦ୍ଧି
ଅଭିନବ ସିଦ୍ଧାନ୍ତ ଯା' କରିଛନ୍ତି ବିଧି ।
'ଭ୍ରାତା ଭଗ୍ନୀ' ଛନ୍ଦେ ଆଜି ଲଭିବ ଏକତା ।
ଏ ସଂସ୍କୃତି,ଏ ସଭ୍ୟତା, ଏ ମାନବିକତା ।
ତହିଁ ମଧ୍ୟେ ହିମାଳୟ ସମ
ପ୍ରକଟିବ ତବ ଯୋଗ ଜ୍ଞାନ, ଭକ୍ତି କର୍ମ ।

ସାରା ବିଶ୍ୱ ରହିଛି ଚାହିଁ
କଳିଙ୍ଗର ଏ ଛନ୍ଦରେ ଏକାଗ୍ରତା ପାଇଁ ।
ବିଧି ନିର୍ଦ୍ଦେଶରେ ଯେହୁ ଲଭିଅଛି ଜନ୍ମ
ସେ ମହାତ୍ମ୍ୟ ତିଳେ କାହୁଁ ହେବ ବା ବିଭ୍ରମ
'ଶ୍ରୀ ପୁରୁଷୋତ୍ତମ'ଙ୍କର ନୀତି ପରିସ୍ଫୁଟ
କରିବାକୁ ଧରା ଧାମେ,
ଉଠ କଳିଙ୍ଗର 'ବିଜୁ' ଉଠ ।

ଶ୍ରୀ ପୁରୁଷୋତ୍ତମର ମାନବିକତା ବା
ଶ୍ରୀ ଜଗନ୍ନାଥ ବା
ଜଗତର ଚରମ ଓ
ପରମ ଅଭିବ୍ୟକ୍ତି ।

Sri Biju Patnaik with his Childhood bossom friend



Late Bhramarabar Sahu



Sri Biju Patnaik with the members of his family.

The dedicated twin genius:

To build the nation translating their dreams with conviction.



Biju Patnaik with his wife Smt. Jnana Patnaik



Sri Biju Patnaik as the Chief guest in the Annual Day function of St. Mary School, Sundargarh in 1961.



Sri Biju Patnaik with Sri P.C. Sen and Sri Atulya Ghosh.

Toward Peshawar to explore new horizons in a cycle.



Sri Biju Patnaik (middle) as a student of first year Science class in Ravenshaw College with friends.

# A MAN OF PATRIOTIC ADVENTURE

**Prof. Samar Guha**

**(Ex-M.P.)**

It is indeed befitting that the people of Orissa would celebrate the 72nd birth anniversary of Shri Biju Patnaik. Shri Patnaik has been ceaselessly working for his country for the last 45 years and is now quite understandably acknowledged as the most popular leader of Orissa. After independence, he entered into the field of industrial development of the economically backward Orissa and made his mark in it quite admirably. For a short period, he ruled the state of Orissa as its Chief Minister and in this job he was hailed not only as a very imaginative administrator but also as one who became a symbol of aspiration for building up a 'New Orissa' Since 1953, he had always been either in the Orissa Assembly or in the Parliament where his presence was quite perceptibly felt. Biju Patnaik is not known as any eminent orator or a debator of exceptional talent, but he has an amazing aptitude to go straight into the core of a political problem and tackle it with the keenness of real politic. He does not like to dabble with any metaphysics of politics but is gifted with an innate capability to easily understand its practical implications.

Biju Patnaik is no doubt a front-rank politician of the present time but his real distinction lies somewhere else in his other achievements.

'Biju', as he is endearingly called by his older or younger friends alike, has always been a man of exceptional courage and bravery. He is built up in the cast of a Kashtriya of the heritage of the past history of Orissa, who created many examples of patriotic adventures. This is the special feature

of his life for which he will be recognised as a political leader with a different colour.

Biju was a navigator of the British airforce during the days of the last world war who succeeded to make many daring sorties to Moscow, Chunking and other important headquarters of war while commanding one of its transport units. Naturally, the British could hardly suspect that such a trustfully efficient pilot of their transport unit could have established any secret liaison with the most 'dangerous' underground revolutionaries like Jayaprakash Narayan and Rammonohar Lohia. After his escape from the Hazaribagh jail in late 1942, J.P. was leading the Augusters from underground. For all his revolutionary activities, he was looked upon as an extremely dreaded man by the British police for whose arrest they spared no means nor any effort. Such a frantically sought-after fugitive found in Biju his most reliable escort in giving him hidden air-lifts from one place of India to others in his transport plane. J.P. was in those days very eager to establish contact with Netaji Subhas Chandra Bose in Burma and chose Biju to make a desperate air-dash to Akyab for the purpose. But before he could execute this plan as the emissary of J.P., he was suddenly arrested and thrown into the hard rigour of a solitary cell in a British prison where he was kept enchained for many days. He was not allowed to be unchained even at night. He had to face brutal tortures at the hands of the British but remained defiantly unyielding.

A fresh opportunity came to Biju after his release from jail to throw himself again into another rare feat of revolutionary adventure. In 1946 an Asian Conference was being held in Delhi in support of the freedom struggle of Indonesia. Biju took upon himself a daring assignment of contacting the Indonesian leaders and air-lifting them to Delhi. Java was

